# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**January- 2017**

**୭୩ ଭାଗ ୬ଷ୍ଠ ସଂଖ୍ୟା ପୌଷ-ମାଘ ଜାନୁଆରୀ - ୨୦୧୭**





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**




**ଜାନୁଆରୀ-୨୦୧୭**

# ଜାତୀୟ ସଙ୍ଗୀତ



ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

*– ରବୀନ୍ଦ୍ରନାଥ ଠାକୁର*



# ବନ୍ଦେ ମାତରମ୍

ସୁଜଲାମ୍, ସୁଫଲାମ୍, ମଳୟଜ ଶୀତଲାମ୍
ଶସ୍ୟ ଶ୍ୟାମଲାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ।।
ବନ୍ଦେ ମାତରମ୍ ।।।

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଶ୍ରଦ୍ଧାଞ୍ଜଳି



ବୀର ସୁରେନ୍ଦ୍ର ସାଏ



ବକ୍ସି ଜଗବନ୍ଧୁ






ଚାଖି ଖୁଣ୍ଟିଆ



ନେତାଜୀ ସୁଭାଷ ବୋଷ

# ଶ୍ରଦ୍ଧାଞ୍ଜଳି



ବ୍ୟାସକବି ଫକୀର ମୋହନ ସେନାପତି

# THE CONSTITUTION OF INDIA

## PREAMBLE

WE, THE PEOPLE OF INDIA, having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity and integrity of the Nation;

IN OUR CONSTITUENT ASSEMBLY this twenty - sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

*ସାଧାରଣତନ୍ତ୍ର ଦିବସ -୨୦୧୭ ଅବସରରେ*

## ଓଡ଼ିଶାର ମାନ୍ୟବର ରାଜ୍ୟପାଳ

## **ଡକ୍ଟର ଏସ୍.ସି. ଜମିର୍‌ଙ୍କ**

## **ବାର୍ତ୍ତା**



ମୋର ପ୍ରିୟ ଭଉଣୀ ଓ ଭାଇମାନେ,

ସାଧାରଣତନ୍ତ୍ର ଦିବସ ପାଳନର ପବିତ୍ର ଅବସରରେ ମୁଁ ଆପଣମାନଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି । ଏହି ଐତିହାସିକ ମୁହୂର୍ତ୍ତରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏବଂ ଅନ୍ୟାନ୍ୟ ନେତୃବୃନ୍ଦଙ୍କ ପରି ମହାନ୍ ଜନନେତାମାନଙ୍କ ଆଦର୍ଶଭିତ୍ତିକ ନେତୃତ୍ୱ ଅଧୀନରେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବା ସଂଗ୍ରାମୀମାନଙ୍କ ପ୍ରତି ଆସନ୍ତୁ ଆମେ ଆମର ସମ୍ମାନ ପ୍ରଦର୍ଶନ କରିବା । ଆମ ବରପୁତ୍ରମାନଙ୍କ ଉତ୍ସର୍ଗୀକୃତ ଦେଶପ୍ରେମ ଏବଂ ଜାତୀୟତାବୋଧ ଆଗାମୀ ପିଢିଙ୍କ ମନରେ ସବୁଦିନ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ଏହି ପବିତ୍ର ଦିବସ ଅବସରରେ ଦେଶ ପାଇଁ ବଳିଦାନ ଦେଇଥିବା ଅମର ଶହୀଦ୍‌ମାନଙ୍କ ପ୍ରତି ମୁଁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଭାରତୀୟ ସମ୍ବିଧାନର ପ୍ରଣେତା ବାବା ସାହେବ ଡକ୍ଟର ଭୀମରାଓ ଆମ୍ବେଦକରଙ୍କ ପ୍ରତି ମଧ୍ୟ ଆମେ ଆମର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ । ଆଜିର ଏହି ପବିତ୍ର ଦିବସରେ ଆମର ଭାରତୀୟ ସମ୍ବିଧାନ କାର୍ଯ୍ୟକ୍ଷମ ହୋଇଥିଲା । ଭାରତବର୍ଷକୁ ଏକ ସାର୍ବଭୌମ, ସମାଜବାଦ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ, ସାଧାରଣତନ୍ତ୍ର ରୂପେ ଅଭିହିତ କରି ଆମେ ଆମ ନିଜ ପାଇଁ ଏକ ସମ୍ବିଧାନ ପ୍ରଣୟନ କରିଥିଲେ । ଭାରତୀୟ ସମ୍ବିଧାନ ୨୬ ନଭେମ୍ବର ୧୯୪୯ ମସିହାରେ ସମ୍ବିଧାନ ପ୍ରଣୟନ ସଭା ଦ୍ୱାରା ଗୃହୀତ ହୋଇଥିଲା ଏବଂ ୨୬ ଜାନୁଆରୀ ୧୯୫୦ ମସିହାରେ ଏହା କାର୍ଯ୍ୟକ୍ଷମ ହୋଇଥିଲା । ଆମ ସମ୍ବିଧାନର ମୁଖବନ୍ଧ ଏହାର ସ୍ୱତନ୍ତ୍ରତା ଦୃଷ୍ଟିରୁ ଆମକୁ ଅନ୍ୟମାନଙ୍କଠାରୁ ପୃଥକ୍ କରିଥାଏ । ଆମ ଜାତୀୟ ପତାକା ଏବଂ ଜାତୀୟ ସଙ୍ଗୀତ ଏହି ମହାନ୍ ରାଷ୍ଟ୍ରର ପ୍ରତ୍ୟେକ ନାଗରିକ ପାଇଁ ଗର୍ବ ଏବଂ ଆତ୍ମସମ୍ମାନର ପରିଚିତି ବହନ କରିଥାଏ । ଆମ ଭାରତୀୟ ସମ୍ବିଧାନର ମହନୀୟ ଗୁଣବତ୍ତା ଏବଂ ନୈତିକତାବୋଧ ପ୍ରତି ଆମର ଆନୁଗତ୍ୟ ପ୍ରକାଶ କରିବା ଦ୍ୱାରା ଆମ ଦେଶର ଏକତା ଏବଂ ଅଖଣ୍ଡତା ବଜାୟ ରହିପାରିବ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବକ୍ସି ଜଗବନ୍ଧୁ, ଶହୀଦ୍ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ମା' ରମାଦେବୀ, ଡକ୍ଟର ହରେକୃଷ୍ଣ ମହତାବ ଏବଂ ବିଜୁ ପଟ୍ଟନାୟକଙ୍କ ପରି ଅଗଣିତ ବୀର ପୁରୋଧାମାନଙ୍କ ଦ୍ୱାରା ଅବିଶ୍ରାନ୍ତ ସଂଗ୍ରାମ ଏବଂ ନିଃସ୍ୱାର୍ଥପର ସେବା ଆମର ବହୁ ପ୍ରତୀକ୍ଷିତ ସ୍ୱପ୍ନକୁ ସାକାର କରିବାରେ ସହାୟକ ହୋଇଥିଲା । ବିପୁଳ ପ୍ରାକୃତିକ ଏବଂ ଦକ୍ଷ ମାନବ ସମ୍ବଳରେ ଭରପୂର ଓଡ଼ିଶା ରାଜ୍ୟ ଏହାର ଜନସାଧାରଣଙ୍କ ଜୀବନ ନିର୍ବାହରେ ଉନ୍ନତି ଆଣି ସେମାନଙ୍କୁ ଜାତୀୟ ମହାସ୍ରୋତରେ ସାମିଲ କରିପାରିଛି ।

ଅହିଂସା, ଶାନ୍ତି ଏବଂ ବିଶ୍ୱଭ୍ରାତୃତ୍ୱର ବାର୍ତ୍ତା ପ୍ରଚାର କରୁଥିବା ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅପୂର୍ବ ଗାଥା ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ୨୬ ଜାନୁଆରୀ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଗର୍ବ, ଗୌରବ ଓ ଅଫୁରନ୍ତ ଉଲ୍ଲାସର ଏକ ମହାନ୍ ଦିବସ । ଆସନ୍ତୁ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସଂକଳ୍ପବଦ୍ଧ ହୋଇ ଏକ ସମୃଦ୍ଧ ଏବଂ ବିକଶିତ ରାଷ୍ଟ୍ର ନିର୍ମାଣରେ ଆଗେଇ ଯିବା ।

ଜୟହିନ୍ଦ ।

*ସାଧାରଣତନ୍ତ୍ର ଦିବସ -୨୦୧୭ ଅବସରରେ*

# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ

# **ଶ୍ରୀ ନବୀନ ପଟ୍ଟନାୟକଙ୍କ**

# **ବାର୍ତ୍ତା**

ସାଧାରଣତନ୍ତ୍ର ଦିବସ ଅବସରରେ ଆପଣମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି । ଏହି ପବିତ୍ର ଦିବସ ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଆଜାଦ, ଡଃ ରାଜେନ୍ଦ୍ର ପ୍ରସାଦ, ଡଃ ବି.ଆର୍. ଆମ୍ବେଦକର, ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ସହିଦ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମା ଦେବୀ, ମାଳତୀ ଚୌଧୁରୀ, ପାର୍ବତୀ ଗିରି, ଡଃ ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଭାରତର ସ୍ୱାଧୀନତା ଏବଂ ରାଷ୍ଟ୍ର ଗଠନରେ ଏହି ମହାନ୍ ବରପୁତ୍ରମାନଙ୍କର ତ୍ୟାଗ, ସଂଗ୍ରାମ ଓ ଦେଶଭକ୍ତି ଆମ ପାଇଁ ପ୍ରେରଣା ।

ଦେଶର ସୁରକ୍ଷା ଓ ଏକତା ପାଇଁ ବଳିଦାନ ଦେଇଥିବା ଅମର ଶହୀଦ୍‌ମାନଙ୍କ ପ୍ରତି ମଧ୍ୟ ଏହି ଅବସରରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

୨୬ ଜାନୁଆରୀ ଭାରତ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଦିସବ । ୧୯୫୦ ଆଜିର ଦିନରେ ଭାରତ ଏକ ସ୍ୱାଧୀନ, ସାର୍ବଭୌମ, ସମାଜବାଦ, ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଭାବରେ ତା'ର ଗୌରବମୟ ଯାତ୍ରା ଆରମ୍ଭ କରିଥିଲା । ଏହିଦିନ ଆମର ନୂଆ ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ବହୁ ଭାଷା, ଜାତି ଓ ଧର୍ମର ଲୋକ ବାସ କରୁଥିବା ଆମ ଦେଶ ଭାରତକୁ ଏକାଠି ରଖିବାରେ ଆମ ସମ୍ବିଧାନ ସଫଳ ହୋଇପାରିଛି । ଏକ ଆଦର୍ଶ ଶାସନ ବ୍ୟବସ୍ଥା ଓ ଏକ ବିକଶିତ ଭାରତ ଗଠନର ସଂକଳ୍ପ ହେଉଛି ଆମ ସମ୍ବିଧାନ । ଆମ ସ୍ୱାଧୀନତା ସଂଗ୍ରାମର ମହାନ୍ ଲକ୍ଷ୍ୟ ଓ କୋଟି କୋଟି ଭାରତୀୟଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ଆମ ସମ୍ବିଧାନ ବାଟ ଦେଖାଇଛି ।

ଗଣତନ୍ତ୍ର, ସମାଜବାଦ ଓ ଧର୍ମନିରପେକ୍ଷତାବାଦ ଆଦର୍ଶ ହେଉଛି ଆମ ସମ୍ବିଧାନର ଆତ୍ମା । ସବୁ ନାଗରିକଙ୍କ ଦାୟିତ୍ୱ ଓ ଅଧିକାର ଉପରେ ମଧ୍ୟ ଏଥିରେ ଗୁରୁତ୍ୱ ଦିଆଯାଇଛି । ସମାଜର ଅବହେଳିତ ଓ ଦୁର୍ବଳ ଶ୍ରେଣୀର ଲୋକଙ୍କ ବିକାଶ, ସମସ୍ତଙ୍କ ପାଇଁ ନ୍ୟାୟ ଓ ସମାନ ସୁଯୋଗ ଆମ ସମ୍ବିଧାନର ଗୁରୁତ୍ୱ ବଢାଇଛି ।

ଯୋଗୀ ଶ୍ରୀ ଅରବିନ୍ଦଙ୍କ ଭାଷାରେ 'India is rising not to become a powerful and aggressive Nation, but to help and guide the mankind through her spiritual wisdom to attain a life of perfection, fullness, equality and unity'.

ଗଣତନ୍ତ୍ର ଆଜି ଭାରତରେ ମଜବୁତ ହୋଇଛି । ଏହା କେବଳ ଏକ ଶାସନ ବ୍ୟବସ୍ଥା ନୁହେଁ, ଆମ ସମସ୍ତଙ୍କ ପାଇଁ ଏହା ଏକ ଜୀବନଧାରା ହୋଇଯାଇଛି । ବିକାଶ ହିଁ ଗଣତନ୍ତ୍ରକୁ ମଜବୁତ କରିଥାଏ ଏବଂ ବ୍ୟବସ୍ଥା ପ୍ରତି ଜନତାଙ୍କ ଆସ୍ଥା ଓ ବିଶ୍ୱାସ ବୃଦ୍ଧିରେ ସହାୟକ ହୋଇଥାଏ । ଦାୟିତ୍ୱ ଓ ଅଧିକାର ଗଣତନ୍ତ୍ର ପାଇଁ ସମାନ ଭାବରେ ଗୁରୁତ୍ୱପୂର୍ଣ୍ଣ । ଆମେ ନିଜ ଅଧିକାର ସହିତ ଦାୟିତ୍ୱ ପ୍ରତି ମଧ୍ୟ ସଚେତନ ରହିବା ଜରୁରୀ ।

ଗାନ୍ଧିଜୀ କହୁଥିଲେ ଯେ ଗାଁରେ ରହିଛି ଭାରତର ଆତ୍ମା । ଗାଁରେ ରହୁଥିବା କୋଟି କୋଟି ଜନତା ହେଉଛନ୍ତି ଭାରତୀୟ ଗଣତନ୍ତ୍ରର ସବୁଠାରୁ ଶକ୍ତିଶାଳୀ ସ୍ତମ୍ଭ । ଦେଶର ବିକାଶ ଯାତ୍ରାରେ ସେମାନଙ୍କ ସକ୍ରିୟ ଅଂଶଗ୍ରହଣ ସମୃଦ୍ଧ ଭାରତ ଓ ବିକଶିତ ଓଡ଼ିଶାର ଚିତ୍ରକୁ ଆହୁରି ଉଜ୍ଜ୍ୱଳ କରିବ ।

ଶାନ୍ତି ଓ ଅହିଂସାର ପବିତ୍ର ଭୂମି ଆମର ପ୍ରିୟ ଓଡ଼ିଶା । ଦେଶର ବିକାଶ ଧାରାରେ ଓଡ଼ିଶା ଆଜି ସଫଳ ଭାବରେ ସାମିଲ ହୋଇପାରିଛି । ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ ଅଧିକ ଶକ୍ତିଶାଳୀ କରିଛି । ବିକାଶ ଆଜି ସବୁଠାରୁ ବଡ ପ୍ରାଧାନ୍ୟତା । ଆମର ଦକ୍ଷ ମାନବ ସମ୍ବଳ ଓ ପ୍ରାକୃତିକ ସମ୍ବଳ ବିକାଶ ପାଇଁ ଅନେକ ସୁଯୋଗ ସୃଷ୍ଟି କରିଛି । ଗଣତନ୍ତ୍ର, ଧର୍ମନିରପେକ୍ଷବାଦର ଭିତ୍ତି ଅଧିକ ମଜବୁତ ହୋଇଛି । ସ୍ୱାଭିମାନ ସହିତ ବଞ୍ଚିବା ପାଇଁ ଗରିବ ଲୋକର ଆତ୍ମ ବିଶ୍ୱାସ ବଢିଛି । ଚାଷୀଠାରୁ ଆରମ୍ଭ କରି ଶ୍ରମିକ, ମହିଳା, ଆଦିବାସୀ, ଦଳିତ, ଯୁବକଯୁବତୀ, ଛାତ୍ରଛାତ୍ରୀ ସମସ୍ତଙ୍କ ଉନ୍ନତି ଓ କଲ୍ୟାଣ ସାମାଜିକ ଓ ଅର୍ଥନୈତିକ ସଶକ୍ତିକରଣ କ୍ଷେତ୍ରରେ ଆଜି ଏକ ନୂଆ ଯୁଗର ଆରମ୍ଭ ହୋଇଛି । ପଞ୍ଚସଖାଙ୍କ ସେହି ସଂକଳ୍ପ ଆଜି ଆମ ସମସ୍ତଙ୍କ ପାଇଁ ପ୍ରେରଣା ହେଉ । ମୁଁ ଏଠାରେ ଉଲ୍ଲେଖ କରିବାକୁ ଚାହେଁ ଯେ, 'ଦେଶ ପାଇଁ କିଛି କରିବା, ଜନ୍ମ ବେଳେ ଦେଶକୁ ଯାହା ଦେଖିଛୁ, ତା'ଠାରୁ ଉନ୍ନତ ଦେଖି ମରିବା' । ଶାନ୍ତି, ବିକାଶ ଓ ମୂଲ୍ୟବୋଧର ପ୍ରସାର ଜରିଆରେ ଏକ ଶକ୍ତିଶାଳୀ ଭାରତ ଓ ସମୃଦ୍ଧ ଓଡ଼ିଶା ଆମ ସମସ୍ତଙ୍କ ଲକ୍ଷ୍ୟ ହେଉ । ଆଜିର ଦିବସରେ ଏହା ହିଁ କାମନା ।

ଜୟହିନ୍ଦ୍ ।

*ସାଧାରଣତନ୍ତ୍ର ଦିବସ -୨୦୧୭ ଅବସରରେ*

ଓଡ଼ିଶାର ମାନ୍ୟବର ଜଙ୍ଗଲ ଓ ପରିବେଶ, ସଂସଦୀୟ ବ୍ୟାପାର ଏବଂ

ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ

## ଶ୍ରୀ ବିକ୍ରମ କେଶରୀ ଆରୁଖଙ୍କ

## ବାର୍ତ୍ତା

ପବିତ୍ର ସାଧାରଣତନ୍ତ୍ର ଦିବସ ଅବସରରେ ମୁଁ ଓଡ଼ିଶାର ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

ଜାନୁଆରୀ ୨୬ ତାରିଖ ଆମ ସମସ୍ତଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଆଜିର ଏହି ପବିତ୍ର ଦିବସରେ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଭାବେ ଘୋଷଣା କରୁଥିବା ଏକ ସମ୍ବିଧାନ ଆମେ ନିଜ ପାଇଁ ପ୍ରଣୟନ କରିଥିଲେ । ଏହି ସମ୍ବିଧାନ ବିଶ୍ୱର ଏକ ଆଦର୍ଶ ସମ୍ବିଧାନ ଭାବରେ ପରିଗଣିତ । ସମ୍ବିଧାନରେ ଭାରତୀୟମାନଙ୍କର ସ୍ୱପ୍ନ ଓ ଅଭୀପ୍ସା ଯଥାର୍ଥ ରୂପେ ପ୍ରତିଫଳିତ ହୋଇଛି । ଆଜିର ଏହି ପୁଣ୍ୟ ତିଥିରେ ଆମର ବୀର ସ୍ୱାଧୀନତା ସଂଗ୍ରାମୀ ତଥା ସମ୍ବିଧାନ ପ୍ରଣେତାମାନଙ୍କୁ ଶ୍ରଦ୍ଧା ଓ ସମ୍ମାନର ସହ ସ୍ମରଣ କରୁଛୁ । ଆଜି ଦିବସଟି ହେଉଛି ଆତ୍ମ ସମୀକ୍ଷା ଓ ସଙ୍କଳ୍ପର ଦିନ ।

ଯେଉଁମାନଙ୍କ ସଂଗ୍ରାମ, ତ୍ୟାଗ ଓ ବଳିଦାନ ଫଳରେ ଆମକୁ ସ୍ୱାଧୀନତା ମିଳିଛି, ସେହି ପ୍ରାତଃ ସ୍ମରଣୀୟ ସ୍ୱାଧୀନତା ସଂଗ୍ରାମୀ ତଥା ରାଷ୍ଟ୍ର ନିର୍ମାତାମାନଙ୍କୁ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଷ୍ଟ୍ର ନିର୍ମାଣରେ ନିଜକୁ ସମର୍ପଣ କରିବା ହିଁ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଇତିହାସରେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ବୀରତ୍ୱର ଗାଥା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ସେମାନଙ୍କ ସଂଗ୍ରାମ, ସାଧନା ଓ ସିଦ୍ଧି ଚିରକାଳ ପ୍ରେରଣାର ଉତ୍ସ ହୋଇ ରହିବ । ସବୁଠାରୁ ଉଲ୍ଲେଖନୀୟ ଉପଲବ୍ଧି ଏହି ଯେ ଭାରତରେ ଗଣତନ୍ତ୍ର ସୁଦୃଢ ହୋଇଛି । ପଡୋଶୀ ରାଷ୍ଟ୍ରମାନଙ୍କରେ ଗଣତନ୍ତ୍ର ଭୁଷୁଡି ପଡୁଥିଲା ବେଳେ ଭାରତରେ ଯେ ଗଣତନ୍ତ୍ର ଶକ୍ତିଶାଳୀ ହୋଇଛି, ଏହା କମ୍ ଗୌରବର କଥା ନୁହେଁ । ବିଭିନ୍ନତା ମଧ୍ୟରେ ଏକତା ହେଉଛି ଆମର ପରମ୍ପରା । ଏହି ପରମ୍ପରାକୁ ଆଗେଇ ନେବା ଆମର ପରମ କର୍ତ୍ତବ୍ୟ ।

ସାଧାରଣତନ୍ତ୍ର ଦିବସ ସଙ୍କଳ୍ପର ଦିବସ । ଆସନ୍ତୁ, ଆଜିର ଦିନରେ ରାଜ୍ୟ ତଥା ଦେଶର ଉନ୍ନତିରେ ନିଜକୁ ଉତ୍ସର୍ଗ କରି ଆମ ରାଜ୍ୟ ତଥା ଦେଶକୁ ସଫଳତାର ଶୀର୍ଷକୁ ନେବା । ଏହା ହିଁ ହେଉ ଆଜିର ସଙ୍କଳ୍ପ ।

**ଜୟ ହିନ୍ଦ** ।

# ସମ୍ପାଦକୀୟ



ହୀରାଖଣ୍ଡ ଏକ୍ସପ୍ରେସ୍ ମର୍ମନ୍ତୁଦ ଦୁର୍ଘଟଣାରେ ମୃତ୍ୟୁବରଣ କରିଥିବା ବ୍ୟକ୍ତିବିଶେଷଙ୍କ ପ୍ରତି ଗଭୀର ସମବେଦନା ଜଣାଇ ସେମାନଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଏହି ସମ୍ପାଦକୀୟ ପୃଷ୍ଠାଟି ଉତ୍ସର୍ଗୀକୃତ ।

ସମ୍ପାଦକ

# ଗଣତନ୍ତ୍ର ଓ ସାମ୍ବିଧାନିକ ଅଧିକାର

ଶୁଭଶ୍ରୀ ନନ୍ଦ

ଦେଶପ୍ରେମୀ ଓ ବୀର ଶହୀଦମାନଙ୍କର ବର୍ଷ ବର୍ଷର ସଂଗ୍ରାମ, ଆତ୍ମୋତ୍ସର୍ଗ, ନିଃସ୍ୱାର୍ଥପର ଦେଶସେବା ଓ ସ୍ୱାଧୀନତା ଲାଭର ଅଦମ୍ୟ ଅଭୀପ୍ସା, ତ୍ୟାଗ ଓ ତିତିକ୍ଷାର ଫଳଶ୍ରୁତି ରୂପେ ଭାରତବର୍ଷ ଦୀର୍ଘ ଦିନର ସାମ୍ରାଜ୍ୟବାଦରୁ ମୁକ୍ତିଲାଭ କଲା । ଇଂରେଜ ଶାସକମାନଙ୍କର ଶାସନର ଶୋଷଣ ଓ ନିର୍ଯାତନାର ଚକ୍ରବ୍ୟୂହ ମଧ୍ୟରୁ ମୁକ୍ତିଲାଭ କରି, ଭାରତ ୧୯୪୭ ମସିହାରେ ସ୍ୱାଧୀନତାର ସୂର୍ଯ୍ୟୋଦୟର ଅରୁଣ କିରଣରେ ଉଦ୍ଭାସିତ ହେଲା । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ସତ୍ୟ, ଅହିଂସା ଓ ସତ୍ୟାଗ୍ରହର ବିଜୟ ଉଲ୍ଲାସରେ ଭାରତର ଗଗନ ପବନ ପ୍ରକମ୍ପିତ ହେଲା । ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍, ବାଲ୍ ଗଙ୍ଗାଧର ତିଳକ, ଲାଲା ଲଜପତ୍ ରାୟ, ଚନ୍ଦ୍ରଶେଖର ଆଜାଦ୍, ଭଗତ୍‌ସିଂହ, ଖୁଦିରାମ, ଜୟପ୍ରକାଶ ନାରାୟଣଙ୍କଠାରୁ ଆରମ୍ଭ କରି ଓଡ଼ିଶାର ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନ, କବିବର ରାଧାନାଥ, ଶହୀଦ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ଲକ୍ଷ୍ମଣ ନାଏକଙ୍କ ପର୍ଯ୍ୟନ୍ତ ଅନେକ ସ୍ୱାଧୀନତା ସଂଗ୍ରାମୀ, ଦେଶପ୍ରେମୀଙ୍କର ବୀରତ୍ୱ, ସାହସ ଓ ଅକୁଣ୍ଠ ଆତ୍ମତ୍ୟାଗ ଦ୍ୱାରା ଇଂରେଜ ରାଜତ୍ୱର ଦୁର୍ଗ ପତନ କରି ସ୍ୱାଧୀନୋତ୍ତର ଭାରତରେ ଏକ ନବଜାଗରଣ ଓ ନୂତନ ସକାଳର ଅଭ୍ୟୁଦୟ ହେଲା ।

ଜାନୁଆରୀ ୨୬ ତାରିଖ ୧୯୫୦ ମସିହା । ଭାରତ ଇତିହାସରେ ଏକ ସ୍ୱର୍ଣ୍ଣିମ ଦିବସ । ଏହି ଦିନ ଭାରତବର୍ଷ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେଲା । କାରଣ ୧୯୪୯ ମସିହା ଜାନୁଆରୀ ୨୬ ତାରିଖ ଦିନ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିରେ ଗୃହୀତ ସମ୍ବିଧାନ, ୧୯୫୦ ମସିହା ଜାନୁଆରୀ ୨୬ ତାରିଖରୁ କାର୍ଯ୍ୟକାରୀ ହେଲା । ଭାରତବର୍ଷର ଜନସାଧାରଣଙ୍କୁ ନ୍ୟାୟ, ସମାନତା ଓ ସ୍ୱାଧୀନତା ପ୍ରଦାନ କରିବା ସହିତ ସମସ୍ତଙ୍କ ମଧ୍ୟରେ ଭ୍ରାତୃଭାବର ସୃଷ୍ଟି ସମ୍ବିଧାନର ମୁଖ୍ୟ ଉଦ୍ଦେଶ୍ୟ ।

ଭାରତୀୟ ସମ୍ବିଧାନ ଭାରତବର୍ଷର ସର୍ବଶ୍ରେଷ୍ଠ ଆଇନ୍ । ଏହି ସମ୍ବିଧାନ ବିଶ୍ୱର ସର୍ବବୃହତ୍ ସମ୍ବିଧାନ । ଭାରତୀୟ ସମ୍ବିଧାନ ପ୍ରଣୟନ ନିମନ୍ତେ ଡକ୍ଟର ବି.ଆର୍. ଆମ୍ବେଦକରଙ୍କର ସଭାପତିତ୍ୱରେ ଗଠିତ କମିଟିରେ ଥିବା ଛଅଜଣ ସଦସ୍ୟମାନଙ୍କ ସହିତ ବି.ନରସିଂହ ରାଓ (ଇଣ୍ଟରନ୍ୟାସନାଲ୍ କୋର୍ଟ ଅଫ୍ ଜଷ୍ଟିସ୍‌ର ପ୍ରଥମ ଭାରତୀୟ ବିଚାରପତି ୧୯୫୦–୫୪) ସାମ୍ବିଧାନିକ ପରାମର୍ଶଦାତା ରହିଥିଲେ । ଅନ୍ୟ ଛଅଜଣ ସଦସ୍ୟ ଥିଲେ– ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ, କନ୍ହେୟାଲାଲ ମାନେକ୍‌ଲାଲ୍ ମୁନ୍‌ସି (କେ.ଏମ୍.ମୁନ୍‌ସି, ବମ୍ବେର ପୂର୍ବତନ ଘରୋଇ ବିଭାଗ ମନ୍ତ୍ରୀ), ଆଲ୍ଲାଦି କ୍ରିଷ୍ଣାସ୍ୱାମୀ ଆୟାର୍ (ପୂର୍ବତନ ଆଡ୍‌ଭୋକେଟ୍ ଜେନେରାଲ୍, ମାଡ୍ରାସ୍), ଏନ୍. ଗୋପାଳସ୍ୱାମୀ ଆୟାଙ୍ଗାର୍ (ପୂର୍ବତନ ପ୍ରଧାନମନ୍ତ୍ରୀ, ଜମ୍ମୁ ଓ କାଶ୍ମୀର, ଯେକି ପରବର୍ତ୍ତୀ ସମୟରେ ନେହେରୁଙ୍କ କ୍ୟାବିନେଟ୍‌ର ସଦସ୍ୟ ଥିଲେ, ବି.ଏଲ୍.ମିଟର (ପୂର୍ବତନ ଆଡ୍‌ଭୋକେଟ୍ ଜେନେରାଲ୍, ଭାରତ), ମହମ୍ମଦ ସାଦୁଲା (ପୂର୍ବତନ–ମୁଖ୍ୟମନ୍ତ୍ରୀ ଆସାମ, ମୁସ୍‌ଲିମ୍ ଲିଗ୍ ସଦସ୍ୟ) ଏବଂ ଡି.ପି. ଖୈତାନ (ବିଶିଷ୍ଟ ଆଇନଜୀବୀ) । ବିଧାନସଭା ଡ୍ରାଫ୍‌ଟିଂ କମିଟିର କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିରେ ଥିବା ୩୮୯ ଜଣ ସଦସ୍ୟଙ୍କୁ ଏହି ଭାରତୀୟ ସମ୍ବିଧାନ ପ୍ରଣୟନ କାର୍ଯ୍ୟ ଶେଷ କରିବା ନିମନ୍ତେ ପାଖାପାଖି ୩ବର୍ଷ ଅର୍ଥାତ୍ ଦୁଇବର୍ଷ ଏଗାର ମାସ ୧୮ଦିନ ସମୟ

ଲାଗିଥିଲା । ଏଥିପାଇଁ ୧୬୫ ଦିନ ଧରି ୧୧ଟି ଅଧିବେଶନରେ ଆଲୋଚନା କରାଯାଇଥିଲା । ୧୯୪୭ ମସିହା ଅଗଷ୍ଟ ମାସ ୨୯ ତାରିଖ ଦିନ ସମ୍ବିଧାନ ପ୍ରଣୟନ କମିଟି ଡକ୍ଟର ବି.ଆର୍. ଆମ୍ବେଦକରଙ୍କର ଅଧକ୍ଷତାରେ ଗଠିତ ହୋଇଥିଲା । ଏହି କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିର ପ୍ରମୁଖ ସଦସ୍ୟମାନେ ଥିଲେ– ସି.ରାଜଗୋପାଲାଚାରୀ, ପଣ୍ଡିତ ଜବାହରଲାଲ ନେହେରୁ, ସଞ୍ଜୟ ଫାକେ, ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, କହ୍ନେୟାଲାଲ୍ ମୁନ୍‌ସି, ଗଣେଶ ଭାସୁଦେବ ମାଭାଲଙ୍କର, ସନ୍ଦିପ୍ କୁମାର ପଟେଲ୍, ମୌଲାନା ଆବୁଲ କାଲାମ ଆଜାଦ୍, ଶ୍ୟାମା ପ୍ରସାଦ ମୁଖାର୍ଜୀ, ନଳିନୀ ରଞ୍ଜନ ଘୋଷ, ବଲୱନ୍ତ ରାଓ ମେହେଟ୍ଟା । ଏହାର ଅନ୍ୟାନ୍ୟ ବର୍ଗର ସଦସ୍ୟମାନଙ୍କ ମଧ୍ୟରେ ୩୦ ଜଣ ଅନୁସୂଚିତ ବର୍ଗର ସଦସ୍ୟ ଥିଲେ । ଫାଙ୍କ୍ ଆଣ୍ଟୋନି (ଆଙ୍ଗ୍ଲୋଇଣ୍ଡିଆନ୍), ଏଚ୍.ପି. ମୋଦି (ପାର୍ସୀ), ଅରି ବାହାଦୂର ଗୁରୁଙ୍ଗ (ଗୋର୍ଖା) ବିଭିନ୍ନ ବର୍ଗର ପ୍ରତିନିଧିତ୍ୱ କରିଥିଲେ । ସରୋଜିନୀ ନାଇଡୁ, ହଂସା ମେହେଟ୍ଟା, ଦୁର୍ଗାବାଇ ଦେଶମୁଖ, ରାଜକୁମାରୀ ଅମ୍ରିତା କାଉର୍, ବିଜୟଲକ୍ଷ୍ମୀ ପଣ୍ଡିତ ପ୍ରମୁଖ ମହିଳା ସଦସ୍ୟମାନଙ୍କର ଅବଦାନ ମଧ୍ୟ ସମ୍ବିଧାନ ପ୍ରଣୟନ କ୍ଷେତ୍ରରେ ସୁସ୍ୱୀକୃତ । ଏହି କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିରେ ପ୍ରଥମ ଦୁଇଦିନ ଡକ୍ଟର ସଚ୍ଚିଦାନନ୍ଦ ସିହ୍ନା ସଭାପତିତ୍ୱ କରିଥିଲେ । ପରବର୍ତ୍ତୀ ସମୟତକ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କର ଅଧକ୍ଷତାରେ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ପ୍ରଥମ ଥର ପାଇଁ ୧୯୪୬ ମସିହା ଡିସେମ୍ବର ୯ ତାରିଖରେ ପ୍ରଥମ ଅଧିବେଶନରେ ସମସ୍ତ ସଦସ୍ୟ ସମ୍ବିଧାନ ପ୍ରଣୟନ ନିମନ୍ତେ ଆଲୋଚନା କରିଥିଲେ । ଏହି ଅଧିବେଶନଗୁଡିକରେ ପୂର୍ବରୁ ପ୍ରଣୀତ ହୋଇଥିବା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ୧୮୫୮, ଇଣ୍ଡିଆନ୍ କାଉନ୍‌ସିଲ୍‌ସ ଆକ୍ଟ ୧୮୬୧,୧୮୯୨ ଓ ୧୯୦୯ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ୧୯୧୯ ଓ ୧୯୩୫ ଓ ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍‌ସ୍ ଆକ୍ଟ ୧୯୪୭କୁ ପର୍ଯ୍ୟାଲୋଚନା କରାଯାଇ ଏହାର ଭିତ୍ତିଭୂମି ଉପରେ ଭାରତୀୟ ସମ୍ବିଧାନର ନୀତି ନିର୍ଦ୍ଧାରଣ କରାଯାଇଥିଲା ।

ଭାରତୀୟ ଜାତୀୟ କଂଗ୍ରେସ ୧୯୨୯ ମସିହା ଡିସେମ୍ବର ୧୯ ତାରିଖରେ 'ପୂର୍ଣ୍ଣ ସ୍ୱରାଜ'ର ଆହ୍ୱାନ୍ ଦେଇଥିଲେ ଏବଂ ଏହିବର୍ଷ ଡିସେମ୍ବର ୩୧ ତାରିଖରେ, ମହାତ୍ମା ଗାନ୍ଧୀ 'ଲାହୋର'ରେ (ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଭୁକ୍ତ) ଭାରତର ଜାତୀୟ ପତାକା ଉତ୍ତୋଳନ କରିଥିଲେ ଏବଂ ୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ଭାରତର ସ୍ୱାଧୀନତା ଦିବସ ପାଳନ କରିବାକୁ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ । ଏହାର ସ୍ମୃତି ଉଦ୍ଦେଶ୍ୟରେ ଜାନୁଆରୀ ୨୬ ତାରିଖକୁ 'ଗଣତନ୍ତ୍ର ଦିବସ' ରୂପେ ଅଭିହିତ କରାଗଲା ।

ଭାରତୀୟ ସମ୍ବିଧାନ ପ୍ରଣୟନ ସମୟରେ ଏଥିରେ ୩୯୫ଟି ଆର୍ଟିକିଲ୍ ୨୨ଟି ଭାଗରେ ପ୍ରଣୟନ କରାଯାଇଥିଲା, ଯେଉଁଥିରେ ୮ଟି ସିଡୁଲ୍ ଥିଲା । ଏଥିରେ ସମୁଦାୟ ୮୦,୦୦୦ଟି ଶବ୍ଦ ରହିଥିଲା । ସେପ୍ଟେମ୍ବର ମାସ ୨୦୧୨ ମସିହାରେ ଭାରତୀୟ ସମ୍ବିଧାନରେ ପ୍ରିୟାମ୍ବଲ୍୨୫ଟି ଭାଗରେ ୪୪୮ଟି ଆର୍ଟିକଲ୍, ୧୨ଟି ସିଡୁଲ, ୫ଟି ଆପେଣ୍ଡିକ୍ସ ଓ ୧୦୦ଟି ଆମେଣ୍ଡମେଣ୍ଟ ସ୍ଥାନିତ ହୋଇଛି । ଏହି ସମ୍ବିଧାନର ଶେଷ ଆମେଣ୍ଡମେଣ୍ଟ ବା ସଂଶୋଧନ ୨୦୧୫ ମସିହା ଅଗଷ୍ଟ ମାସ ୧ ତାରିଖରେ କରାଯାଇଛି ।

ଭାରତର ସଂସଦୀୟ ଗଣତନ୍ତ୍ର, ଭାରତୀୟ ସମ୍ବିଧାନର ନୀତି ଓ ନିୟମ ଉପରେ ପର୍ଯ୍ୟବସିତ । ଆଇନର ଶାସନ ବା ରୁଲ୍ ଅଫ୍ ଲ ହିଁ ଭାରତୀୟ ଗଣତନ୍ତ୍ରର ଭିତ୍ତିଭୂମି । ବିଶେଷ କରି ଭାରତୀୟ ସମ୍ବିଧାନର ବିଭିନ୍ନ ଧାରା ଓ ଉପଧାରାର ବାସ୍ତବିକ୍ ରୂପାୟନ ନିମନ୍ତେ ନ୍ୟାୟପାଳିକା ବା ଜୁଡିସିଆରିର ମଧ୍ୟ ପ୍ରମୁଖ ଭୂମିକା ରହିଛି । ବିଶେଷତଃ ସାମ୍ବିଧାନିକ ସଂସ୍କାର ପାଇଁ 'ଆଇନ କମିଶନ' ଜାତୀୟ ସ୍ତରରେ ଗଠନ କରାଯାଇଛି । ନିର୍ବାଚିତ ଜନପ୍ରତିନିଧି ଓ ସରକାରୀ ପ୍ରତିବଦ୍ଧତା ଉଭୟଙ୍କର ସମନ୍ୱୟରେ ହିଁ ଗଣତନ୍ତ୍ରର ସଫଳତା । ବିଶେଷ କରି ରାଜନୈତିକ ଇଚ୍ଛାଶକ୍ତି, ପ୍ରଶାସନିକ ଦକ୍ଷତା, ନ୍ୟାୟପାଳିକାର ସ୍ୱଚ୍ଛତା ଓ ନିରପେକ୍ଷତା ହିଁ ଭାରତବର୍ଷର ଗଣତାନ୍ତ୍ରିକ ଶାସନର ଧାରାକୁ ଅପ୍ରତିହତ କରି ରଖିପାରିବ ।

ଭାରତୀୟ ସମ୍ବିଧାନରେ 'ସମାଜବାଦ' ଓ 'ଧର୍ମନିରପେକ୍ଷ' ଶବ୍ଦ, ୧୯୭୬ ମସିହାରେ ୪୨ତମ ସମ୍ବିଧାନ ସଂଶୋଧନ ମାଧ୍ୟମରେ ଉଲ୍ଲେଖ କରାଯାଇଛି । ବିଶେଷ କରି ସମ୍ବିଧାନର ଭାଗ ୩ରେ ଉଲ୍ଲିଖିତ ମୌଳିକ ଅଧିକାର ଓ ଭାଗ ୪ରେ ସଂଲଗ୍ନ ଥିବା ଡିରେକ୍ଟିଭ୍ ପ୍ରିନ୍‌ସିପଲ୍‌ସ ଅଫ୍ ଷ୍ଟେଟ୍

ପଲିସି ଓ ମୌଳିକ କର୍ତ୍ତବ୍ୟ ସମ୍ପର୍କରେ ନିଶ୍ଚିତ ଭାବରେ ପ୍ରତ୍ୟେକ ନାଗରିକ ଅବଗତ ହେବା ଉଚିତ୍ ।

ଭାରତୀୟ ସମ୍ବିଧାନ, ଭାରତକୁ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଅଭିହିତ କରିଛି, ଯାହାକି ଜନସାଧାରଣ ଓ ନାଗରିକମାନଙ୍କୁ ନ୍ୟାୟ ପ୍ରଦାନ, ସମାନତା ଓ ସ୍ୱାଧୀନତା ଦେବା ନିମନ୍ତେ ଉଦ୍ଦିଷ୍ଟ । ଜଷ୍ଟିସ ମାର୍ଶାଲ୍‌ଙ୍କ ମତରେ ସମ୍ବିଧାନ ଏକ ଜୀବନ୍ତ ଦସ୍ତାବିଜ୍, ଯାହାର ମୁଖ୍ୟ ଧାରାକୁ ଆଧାର କରି ଉତ୍ତର ପୁରୁଷମାନେ ମଧ୍ୟ ତଦାନୀନ୍ତନ ସାମାଜିକ ଓ ରାଜନୈତିକ ପରିସ୍ଥିତିକୁ ଦୃଷ୍ଟିରେ ରଖି ଏହାକୁ ଦେଶ ଗଠନର ମୂଳମନ୍ତ୍ର ରୂପେ ଉପଯୁକ୍ତ ଭାବରେ କାର୍ଯ୍ୟକାରୀ କରିପାରିବେ । ବିଶେଷତଃ ଭାଗ ୩ ଓ ଭାଗ ୪ରେ ଉଲ୍ଲିଖିତ ମୌଳିକ ସାମ୍ବିଧାନିକ ଅଧିକାର ଓ କର୍ତ୍ତବ୍ୟକୁ ଆଧାର କରି ବିବେକାନୁମୋଦିତ ମାର୍ଗରେ ଜନସାଧାରଣଙ୍କର ହିତ ଦୃଷ୍ଟିରୁ ଲକ୍ଷ୍ୟ ହାସଲ ନିମନ୍ତେ ସମ୍ବିଧାନକୁ ଉପଯୁକ୍ତ ଭାବରେ ରୂପାୟନ କରାଯାଇପାରେ ।

ଜଷ୍ଟିସ୍ ଖାନ୍ନା 'ମେକିଙ୍ଗ୍ ଅଫ୍ ଇଣ୍ଡିଆନ୍ ଇନ୍‌ଷ୍ଟିଟ୍ୟୁସନ୍' ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ– 'ଭାରତୀୟ ସମ୍ବିଧାନ ଆମର ଏକ ଐତିହ୍ୟ, ଯାହାକି ଆମର ପ୍ରତିଷ୍ଠାତା ଓ ପ୍ରଣେତାମାନେ ହସ୍ତାନ୍ତର କରିଛନ୍ତି । ଏହାର ପ୍ରତିଟି ଧାରାରେ ଏ ଦେଶର ମୂଲ୍ୟବୋଧର ସ୍ପନ୍ଦନ ପରିପୂର୍ଣ୍ଣ ଓ ଆମେମାନେ ଏହାର ସଯତ୍ନ ରକ୍ଷାକର୍ତ୍ତା । ସମ୍ବିଧାନ କେବଳ କାଗଜ କଲମରେ ପ୍ରଣୀତ ନୁହେଁ, ଏହା ଜୀବନର ମାର୍ଗ, ଯାହାକି ସଦା ଅନୁସରଣୀୟ ।'

ବିଶେଷ କରି ସମ୍ବିଧାନର ଧାରା ୨୧ରେ ସ୍ପଷ୍ଟ ଭାବରେ ଦେଶର ନାଗରିକମାନଙ୍କୁ ଜୀବନଧାରଣର ଏବଂ ନିୟମାନୁଯାୟୀ ବ୍ୟକ୍ତିଗତ ସ୍ୱାଧୀନତାର ଅଧିକାର ପ୍ରଦାନ କରାଯାଇଛି, ଯାହାକି ମାନବିକ ଅଧିକାରକୁ ବିଶେଷ ଗୁରୁତ୍ୱ ପ୍ରଦାନ କରିଛି । ଭାରତୀୟ ସମ୍ବିଧାନ ପ୍ରଣୟନ ସମୟରେ ମୁଖ୍ୟତଃ ସାତଗୋଟି ମୌଳିକ ଅଧିକାର ଜନସାଧାରଣଙ୍କୁ ପ୍ରଦାନ କରାଯାଇଛି । ପରବର୍ତ୍ତୀ କାଳରେ ୧୯୭୮ ମସିହାରେ ୪୪ତମ ସଂଶୋଧନରେ ସମ୍ପତ୍ତିର ଅଧିକାରକୁ ପ୍ରତ୍ୟାହାର କରିନିଆଯାଇଛି । ସମ୍ବିଧାନର ଧାରା ୧୪ରୁ ୧୬ରେ ଆଇନ ସାମ୍ନାରେ ସମସ୍ତ ନାଗରିକଙ୍କୁ ଭେଦଭାବ ନକରି ସମାନ ଅଧିକାର ପ୍ରଦାନର ବ୍ୟବସ୍ଥା କରାଯାଇଛି । ସମ୍ବିଧାନର ଧାରା ୧୫ରେ କୌଣସି ବ୍ୟକ୍ତିଙ୍କୁ ଧର୍ମ, ଭାଷା, ଜାତି, ଲିଙ୍ଗ, ବର୍ଣ୍ଣ, ଜନ୍ମସ୍ଥାନ ଭିତ୍ତିରେ ଭେଦଭାବ ନକରି ସମାନ ଅଧିକାର ପ୍ରଦାନ କରାଯାଇଛି । ଧାରା ୧୬ରେ ସମାନ ସୁଯୋଗ ପ୍ରଦାନ, ଧାରା ୧୭ରେ ଅସ୍ପୃଶ୍ୟତାକୁ ଦଣ୍ଡନୀୟ ଘୋଷଣା କରାଯାଇଛି ।

ଧାରା ୧୯ରୁ ୨୨ ସ୍ୱାଧୀନତାର ଅଧିକାର ମଧ୍ୟରେ ସମ୍ବିଧାନ ମୁଖ୍ୟତଃ ଛଅଟି ସ୍ୱାଧୀନତା–ସ୍ୱାଧୀନ ମତବ୍ୟକ୍ତ କରିବା, ଏକତ୍ରିତ ହେବା, ସଂଗଠିତ ହେବା, ସ୍ୱାଧୀନ ଭାବରେ ଚଳପ୍ରଚଳ କରିବା, ସ୍ୱାଧୀନ ଭାବରେ ବସବାସ କରିବା ଏବଂ ସ୍ୱାଧୀନ ଭାବରେ ଯେକୌଣସି କର୍ମସଂସ୍ଥାନର ଅଧିକାର ଅନ୍ତର୍ଭୁକ୍ତ ।

ଏତଦ୍‌ବ୍ୟତୀତ ଭାରତୀୟ ସମ୍ବିଧାନରେ ନିର୍ଯାତନା ବିରୋଧରେ ସ୍ୱର ଉତ୍ତୋଳନ, ଧର୍ମୀୟ ସ୍ୱାଧୀନତା, ସାଂସ୍କୃତିକ ଓ ଶିକ୍ଷାଗତ ଅଧିକାର ଏବଂ ସାମ୍ବିଧାନିକ ବିଧି ବ୍ୟବସ୍ଥାର ଉଲ୍ଲଙ୍ଘନରେ ସର୍ବୋଚ୍ଚ ନ୍ୟାୟାଳୟରେ ନିଜର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଦାବି ଉପସ୍ଥାପନ ଏହି ସାମ୍ବିଧାନିକ ଓ ମୌଳିକ ଅଧିକାର ଉଲ୍ଲିଖିତ ଅଛି ।

ସମ୍ବିଧାନର ଭାଗ–୪ରେ, ଧାରା ୩୯ରେ ବିଭିନ୍ନ ରାଜ୍ୟ ଦ୍ୱାରା ଅନୁପାଳନ କରାଯିବା ନିମନ୍ତେ କେତେକ ପଲିସି ବା ନୀତି ନିର୍ଦ୍ଧାରଣ କରାଯାଇଛି, ସମାନ କାର୍ଯ୍ୟ ପାଇଁ ସମାନ ଦରମା, ଧାରା ୪୧–୪୩ରେ ସମସ୍ତ ନାଗରିକଙ୍କୁ କାର୍ଯ୍ୟ କରିବାର ଅଧିକାର, ସାମାଜିକ ନିରାପତ୍ତା ଆଦି ପାଇଁ ରାଜ୍ୟ ଦ୍ୱାରା ସୁବ୍ୟବସ୍ଥା କରିବା ନିମନ୍ତେ ଅଭିଲିଖିତ ହୋଇଛି । ଧାରା ୪୪ରେ 'ୟୁନିଫର୍ମ ସିଭିଲ୍ କୋଡ୍' ବା ସବୁ ନାଗରିକଙ୍କ ପାଇଁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମାନ ଆଇନ ପ୍ରଣୟନ ପାଇଁ ମଧ୍ୟ ବ୍ୟବସ୍ଥା ରହିଛି ।

ଏତଦ୍ ବ୍ୟତୀତ ୧୯୭୬ ମସିହାରେ ସମ୍ବିଧାନର ୪୨ତମ ସଂଶୋଧନରେ ନାଗରିକମାନଙ୍କ ପାଇଁ ମଧ୍ୟ କେତେକ ମୌଳିକ କର୍ତ୍ତବ୍ୟ ପାଳନକୁ ଯୋଗ କରାଯାଇଛି । ନାଗରିକମାନେ ଭାରତର ଜାତୀୟ ପତାକା ଓ ଜାତୀୟ ସ୍ମାରକୀଗୁଡିକୁ ଉପଯୁକ୍ତ ସମ୍ମାନ ଦେବା, ଭାରତୀୟ ସଂସ୍କୃତିର ରକ୍ଷଣାବେକ୍ଷଣ, ୬ରୁ ୧୪ବର୍ଷ ପର୍ଯ୍ୟନ୍ତ ଶିଶୁମାନଙ୍କୁ

ପିତାମାତାଙ୍କ ଦ୍ୱାରା ଶିକ୍ଷାଲାଭର ସୁଯୋଗ ଦେବା, ଦେଶର ସୁରକ୍ଷା କାର୍ଯ୍ୟରେ ସାହାଯ୍ୟ କରିବା ଆଦି ଅନ୍ତର୍ଭୁକ୍ତ । ଦେଶର ନାଗରିକମାନେ ପରସ୍ପର ମଧ୍ୟରେ ସଦ୍‌ଭାବ ଓ ଭ୍ରାତୃଭାବ ସୃଷ୍ଟି କରିବା, ଦେଶର ସାର୍ବଜନୀନ ସମ୍ପତ୍ତି ଓ ପରିବେଶର ସୁରକ୍ଷା କରିବା, ସର୍ବୋପରି ଭାରତର ସାର୍ବଭୌମତ୍ୱ, ଏକତା ଓ ଜାତୀୟ ସଂହତିକୁ ବଜାୟ ରଖିବା ଆଦି ପ୍ରତ୍ୟେକ ଭାରତୀୟଙ୍କର ମୌଳିକ କର୍ତ୍ତବ୍ୟ ରୂପେ ପରିଗଣିତ ଓ ସମ୍ବିଧାନରେ ଲିପିବଦ୍ଧ ହୋଇଛି ।

ସମ୍ବିଧାନରେ ଏକ ସଫଳ ଗଣତନ୍ତ୍ରର ମୂଳମନ୍ତ୍ର ଅଭିଲିଖିତ । ଭାରତୀୟ ସମ୍ବିଧାନ ଦେଶର ଏକତା ଓ ସଂହତିପୂର୍ଣ୍ଣ ବାତାବରଣ ମଧ୍ୟରେ ଭାରତର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଉଦ୍ଦିଷ୍ଟ । ତେଣୁ ଭାରତବର୍ଷରେ ସବୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆକୁମାରୀ ହିମାଳୟ ଯାଏଁ ପ୍ରତ୍ୟେକ ନାଗରିକଙ୍କୁ ସମ୍ବିଧାନ ସମାନ ଅଧିକାର ପ୍ରଦାନ କରିଛି । କାରଣ–

'ମାନବ ନୋହିବ ମାନବର ଦାସ
ତୁଟିବ ଅଜ୍ଞାନ ଭୀତି
ସାମ୍ୟବାଦର ନନ୍ଦନ ବନ
ଦେବ ପାରିଜାତ ପ୍ରୀତି ।'

ଏହାହିଁ ସାମ୍ୟବାଦୀ ଚିନ୍ତାଧାରା, ଯାହାକି ଭାରତୀୟ ସମ୍ବିଧାନର ପ୍ରତିଟି ଧାରାରେ ପ୍ରତିଫଳିତ ।

ଏକ ମନ, ଏକ ପ୍ରାଣରେ ସଂଘବଦ୍ଧ ହୋଇ ଯଦି ପ୍ରତ୍ୟେକ ଭାରତୀୟ ସଂପ୍ରୀତି ଓ ସଦ୍‌ଭାବନାର ଧାରାରେ ଅଭିମନ୍ତ୍ରିତ ହେବେ, ତେବେ ସମାଜରେ ଶାନ୍ତି, ମୈତ୍ରୀ ଓ ପ୍ରୀତିର ତ୍ରିବେଣୀ ଧାରା ପ୍ରବାହିତ ହେବ ।

ମାର୍ଫତ୍– ଶୁଭେନ୍ଦୁ କୁମାର ନନ୍ଦ
ଏନ୍–୪/୩୪୯, ଆଇ.ଆର୍.ସି.ଭିଲେଜ୍
ନୟାପଲ୍ଲୀ, ଭୁବନେଶ୍ୱର–୭୫୧୦୧୫

# ବାପୁ ଆମର

ସସ୍ମିତା ସ୍ୱାଇଁ

ଶିରେ ଦେଇ କର
କରେ ନମସ୍କାର
ତୁମେ ମରଣଜୟୀ
ଚିର ଅମରବୀର
ବାପୁ ଆମର
ସତ୍ୟକୁ କରିଲ ମନ୍ତ୍ର
ଶାନ୍ତିକୁ ସାଙ୍ଗସାଥୀ
ଅହିଂସା ଶାସ୍ତ୍ର ପଢି
ତୁମେ କରୁଥିଲ ସତ୍ୟାଗ୍ରହ
ଚାଲିଗଲେ ଦେଶ ଛାଡି
ତୁମ ପାଇଁ ଗୋରା ସରକାର

ବାପୁ ଆମର
ତୁମ ବିଦେଶୀ ବର୍ଜନ ନୀତି
ମନେ ଆଣିଲା ସ୍ୱଦେଶ ପ୍ରୀତି
ତୁମେ ଦେଖାଇଲ ହେ ମହାତ୍ମା
ସ୍ୱାଧୀନତାର ଆଲୋକବର୍ତ୍ତୀକା
ସତେ ମହାନ ବାପୁଜୀ ତୁମେ
ତୁମ ଆଗେ ନଇଁ ଯାଏ ଶିର
ବାପୁ ଆମର ।

ବୋଧଖଣ୍ଡି ଜାଗିରି, ଶିଶିଲୋ, ଖୋର୍ଦ୍ଧା

# ଛବିଶ ଜାନୁଆରୀ : ଶପଥ ଓ ଆହ୍ୱାନ

ଡଃ ଅତୁଲ ଚନ୍ଦ୍ର ପ୍ରଧାନ

୧୯୫୦ ମସିହା ଜାନୁଆରୀ ମାସ ୨୬ ତାରିଖ ଦିନ ସ୍ୱାଧୀନ ଭାରତର ସମ୍ବିଧାନ କାର୍ଯ୍ୟକାରୀ ହେଲା ଏବଂ ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରୂପେ ବିଶ୍ୱ ଦରବାରରେ ନିଜର ପରିଚୟ ଘୋଷଣା କଲା । କିନ୍ତୁ ଏହାର କୋଡ଼ିଏ ବର୍ଷ ପୂର୍ବରୁ ଜାନୁଆରୀ ୨୬ ଏକ ଜାତୀୟ ଦିବସର ମାନ୍ୟତା ପାଇଥିଲା । କାରଣ ଲାହୋର କଂଗ୍ରେସ ଅଧିବେଶନର ନିଷ୍ପତ୍ତି ଅନୁସାରେ ୧୯୩୦ ମସିହା ଜାନୁଆରୀ ୨୬ ତାରିଖ ଦିନ ସାରା ଦେଶରେ ପୂର୍ଣ୍ଣ ସ୍ୱରାଜର ଦିବସ ରୂପେ ପାଳିତ ହୋଇଥିଲା । ସେଦିନ ଭାରତର ଲୋକଙ୍କୁ ନିମ୍ନଲିଖିତ ଶପଥ ନେବା ପାଇଁ ଆହ୍ୱାନ ଦିଆଯାଇଥିଲା –

'ଆମେ ବିଶ୍ୱାସ କରୁଁ ଯେ ଅନ୍ୟ ଜାତି ଭଳି ଭାରତୀୟମାନଙ୍କର ସ୍ୱାଧୀନ ହେବାର, ପରିଶ୍ରମର ଫଳ ଉପଭୋଗ କରିବାର ଏବଂ ଜୀବନର ଆବଶ୍ୟକତା ଲାଭ କରିବାର ଅଖଣ୍ଡ ଅଧିକାର ରହିଛି ଯାହାଦ୍ୱାରା ସେମାନେ ବିକାଶ ପାଇଁ ସମ୍ପୂର୍ଣ୍ଣ ସୁବିଧା ସୁଯୋଗ ପାଇପାରିବେ । ଯଦି କୌଣସି ସରକାର ଲୋକମାନଙ୍କୁ ଏହି ଅଧିକାରଗୁଡ଼ିକରୁ ବଞ୍ଚିତ କରେ ଏବଂ ସେମାନଙ୍କୁ ପୀଡ଼ନ କରେ ସେଭଳି ସରକାରକୁ ବଦଳାଇବାର କିମ୍ବା ଉଚ୍ଛେଦ କରିବାର ଅଧିକାର ଲୋକଙ୍କର ଅଛି ବୋଲି ଆମେ ବିଶ୍ୱାସ କରୁଁ । ଭାରତରେ ଇଂରେଜ ସରକାର ଭାରତୀୟମାନଙ୍କୁ ସ୍ୱାଧୀନତାରୁ ବଞ୍ଚିତ କରିବା ସଂଗେସଂଗେ ସେମାନଙ୍କୁ ଶୋଷଣ କରିଛନ୍ତି ଏବଂ ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଓ ଆତ୍ମିକ ଦୃଷ୍ଟିରୁ ଭାରତକୁ ଧ୍ୱଂସ କରିଛନ୍ତି । ତେଣୁ ଆମେ ବିଶ୍ୱାସ କରୁଁ ଯେ ଭାରତ ଇଂରେଜମାନଙ୍କ ସହିତ ସମ୍ପର୍କ ଛିନ୍ନ କରିବ ଏବଂ ପୂର୍ଣ୍ଣ ସ୍ୱରାଜ ଲାଭ କରିବ ।' ସ୍ୱାଧୀନତା ପାଇଁ ଆନ୍ଦୋଳନ ଚାଲିଥିଲା ବେଳେ ରାଜନୈତିକ ଦଳମାନେ ନିଜ ଦେଶ ପାଇଁ ଏକ ସମ୍ବିଧାନ ରଚନା କରିବାର ଅଧିକାର ପେଶ୍ କରିଥିଲେ । ୧୯୨୮ରେ ସାଇମନ୍ କମିଶନ ବୟକଟ୍ ସମୟରେ ଏକ ସମ୍ବିଧାନ ଚିଠା ପ୍ରସ୍ତୁତ କରିବା ପାଇଁ ସର୍ବଦଳୀୟ ସମ୍ମିଳନୀ ତରଫରୁ ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠିତ ହୋଇଥିଲା । ୧୯୩୪–୩୫ ମସିହାଠାରୁ ବାରମ୍ବାର ଏକ ସମ୍ବିଧାନ ସଭା ଗଠନ ପାଇଁ ଦାବୀ ହେଉଥିଲା । ୧୯୪୬ ମସିହା ଜୁଲାଇ–ଅଗଷ୍ଟ ମାସରେ ସମ୍ବିଧାନ ସଭାର ସଦସ୍ୟମାନେ ପରୋକ୍ଷ ଭାବରେ ନିର୍ବାଚିତ ହେଲେ । ମୁସଲିମ୍ ଲିଗ୍‌ର ସମ୍ବିଧାନ ସଭା ବର୍ଜନ ସତ୍ତ୍ୱେ ୧୯୪୬ ମସିହା ଡିସେମ୍ବର ୯ ତାରିଖଠାରୁ ଏହି ସଭା ନିଜର କାର୍ଯ୍ୟ ଆରମ୍ଭ କଲା । ଡିସେମ୍ବର ୧୧ ତାରିଖ ଦିନ ରାଜେନ୍ଦ୍ର ପ୍ରସାଦ ଏହାର ଅଧ୍ୟକ୍ଷ ଭାବେ ନିର୍ବାଚିତ ହେଲେ ଏବଂ ୧୩ ତାରିଖ ଦିନ ପଣ୍ଡିତ ଜବାହରଲାଲ ନେହେରୁ ସମ୍ବିଧାନର ଆଭିମୁଖ୍ୟ ଉପରେ ପ୍ରସ୍ତାବ ଆଗତ କଲେ । ୧୯୪୭ ମସିହା ଜୁଲାଇ ୨୨ ତାରିଖ ଦିନ ଅଶୋକ ଚକ୍ର ସହିତ ତ୍ରିରଙ୍ଗା ପତାକା ଭାରତର ଜାତୀୟ ପତାକା ଭାବରେ ସମ୍ବିଧାନ ସଭାରେ ଗୃହୀତ ହେଲା । ସମ୍ବିଧାନ ସଭାର କାର୍ଯ୍ୟ ଚାଲିଥିଲାବେଳେ ଇଂଲଣ୍ଡର ପାର୍ଲ୍ୟାମେଣ୍ଟରେ ଭାରତର ସ୍ୱାଧୀନତା ଆଇନ ପାଶ୍ ହେଲା ଏବଂ ଅଗଷ୍ଟ ୧୫ ତାରିଖରେ ଇଂରେଜ ସରକାର ଭାରତୀୟମାନଙ୍କୁ କ୍ଷମତା ହସ୍ତାନ୍ତର କଲେ । ୧୪ ତାରିଖ ମଧ୍ୟରାତ୍ରିରେ ସମ୍ବିଧାନ ସଭାର ଅଧିବେଶନରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ପୁଣି ଥରେ ଜାତୀୟ ଶପଥ ଘୋଷଣା କଲେ – 'ବହୁ ବର୍ଷ ପୂର୍ବେ ଆମେ ଭାଗ୍ୟ ସହିତ ଏକ ଚୁକ୍ତି କରିଥିଲୁଁ । ଏବେ ପୂର୍ଣ୍ଣମାତ୍ରାରେ ନ ହେଲେ ମଧ୍ୟ ବହୁ

ପରିମାଣରେ ସେହି ପ୍ରତିଶ୍ରୁତିକୁ ପୂରଣ କରିବା ପାଇଁ ସମୟ ଆସିଛି । ଏହି ମଧ୍ୟରାତ୍ରିରେ ବିଶ୍ୱ ସୁପ୍ତ ଥିବା ଅବସ୍ଥାରେ ଭାରତ ସ୍ୱାଧୀନତା ଓ ଜୀବନ ଲାଭ କଲା । ଇତିହାସରେ ଖୁବ୍ କ୍ୱଚିତ୍ ଏଭଳି ସମୟ ଆସେ ଯେତେବେଳେ ଆମେ ପୁରୁଣାରୁ ପାଦ କାଢ଼ି ନୂତନ ଆଡ଼କୁ ଗତି କରୁଁ, ଯେତେବେଳେ ଏକ ଯୁଗର ସମାପ୍ତି ହୁଏ ଏବଂ ଦୀର୍ଘକାଳ ଧରି ଉତ୍ପୀଡ଼ିତ ଜାତିର ଆତ୍ମା ଅଭିବ୍ୟକ୍ତି ଲାଭ କରେ । ଏହି ମୁହୂର୍ତ୍ତରେ ଭାରତ, ଭାରତବାସୀ ଏବଂ ସମଗ୍ର ମାନବ ସମାଜର ସେବା କରିବା ପାଇଁ ଆମେ ଉତ୍ସର୍ଗର ଶପଥ ନେବା ଉଚିତ ।' ଇତିମଧ୍ୟରେ ଭୀମରାଓ ରାମଜୀ ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଗଠିତ କମିଟି ଦ୍ୱାରା ସମ୍ବିଧାନର ଚିଠା ପ୍ରସ୍ତୁତ ହେଲା । ଏହି ଚିଠାରେ ଗଣତାନ୍ତ୍ରିକ ନୀତି ଓ ଆଦର୍ଶମାନ ଲିପିବଦ୍ଧ ହେଲା । ସମସ୍ତଙ୍କୁ ଭୋଟ ଅଧିକାର, ନାଗରିକମାନଙ୍କର ମୌଳିକ ଅଧିକାର, ଧର୍ମନିରପେକ୍ଷତା, ସଂସଦୀୟ ଗଣତନ୍ତ୍ର, ସୁଦୃଢ଼ କେନ୍ଦ୍ର ସରକାର ସହିତ ସଂଘୀୟ ବ୍ୟବସ୍ଥା, ସ୍ୱାଧୀନ ଓ ନିରପେକ୍ଷ ବିଚାର ବିଭାଗ ଇତ୍ୟାଦି ଚିଠାରେ ଲିପିବଦ୍ଧ ହେଲା । ୨୪୭୩ଟି ସଂଶୋଧନ ପରେ ୩୯୫ ଧାରା (Article) ଏବଂ ୮ଟି ଅନୁସୂଚୀ (Schedule) ସହ ଚିଠା ସମ୍ବିଧାନ ଗୃହୀତ ହେଲା । ସମ୍ବିଧାନର ଭୂମିକାରେ ଏହାର ଆଭିମୁଖ୍ୟମାନ ନିମ୍ନ ଭାବରେ ଉଲ୍ଲିଖିତ ହେଲା–

ସାମାଜିକ, ଆର୍ଥିକ ଓ ରାଜନୈତିକ ନ୍ୟାୟ
ଚିନ୍ତା, ଅଭିବ୍ୟକ୍ତି, ବିଶ୍ୱାସ ଓ ପୂଜାରେ ସ୍ୱାଧୀନତା
ପଦପଦବୀ ଓ ସୁବିଧା ସୁଯୋଗରେ ସାମ୍ୟ
ବ୍ୟକ୍ତିଗତ ସମ୍ମାନ ଓ ରାଷ୍ଟ୍ରୀୟ ଐକ୍ୟଭିତ୍ତିକ ଭ୍ରାତୃଭାବ ।

ସମ୍ବିଧାନ କାର୍ଯ୍ୟକାରୀ ହେଲା ପରେ ଏହାର ଆଦର୍ଶ ଓ ରାଜନୈତିକ ବାସ୍ତବତା ମଧ୍ୟରେ ବହୁତ ଫରକ ପରିଦୃଷ୍ଟ ହେଲା । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ତିଷ୍ଠି ରହିଲେ ମଧ୍ୟ ଏହା ଠିକ୍ ଭାବରେ କାର୍ଯ୍ୟ କଲା ନାହିଁ । ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ଭାରତରେ ଗଣତନ୍ତ୍ରର ଢାଞ୍ଚା ରହିଛି, କିନ୍ତୁ ମୂଳତତ୍ତ୍ୱ ନାହିଁ । ଏହାର ବିଭିନ୍ନ କାରଣ ରହିଛି । ଗୋଟିଏ ମୂଳ କାରଣ ହେଲା ଏ ଦେଶରେ ଗଣତାନ୍ତ୍ରିକ ମୂଲ୍ୟବୋଧର ଅଭାବ । ଏଥିପାଇଁ ଆମ୍ବେଦକର କହିଥିଲେ, 'ସାମ୍ବିଧାନିକ ନୈତିକତା ଏକ ସ୍ୱାଭାବିକ ଭାବ ନୁହେଁ । ଏଥିପାଇଁ ଅଭ୍ୟାସ ଓ ଚେଷ୍ଟା ଆବଶ୍ୟକ । ଲୋକେ ଏ ପର୍ଯ୍ୟନ୍ତ ଏହା ଶିଖି ନାହାନ୍ତି ବୋଲି ଆମେ ଉପଲବ୍ଧି କରିବା ଉଚିତ । ଭାରତରେ ଗଣତନ୍ତ୍ର ଏକ ଆଖିଦୃଶିଆ ଆବରଣ ମାତ୍ର, କାରଣ ଭାରତର ମାଟି ମୂଳତଃ ଅଗଣତାନ୍ତ୍ରିକ ।' ନିରକ୍ଷରତା, ଅର୍ଥନୈତିକ ବୈଷମ୍ୟ ଓ ଦାରିଦ୍ର୍ୟ ହେତୁ ଲୋକେ ଗଣତନ୍ତ୍ର କ'ଣ ବୁଝିପାରୁ ନାହାନ୍ତି ଏବଂ ଗଣତାନ୍ତ୍ରିକ ପ୍ରକ୍ରିୟାରେ ଭାଗୀଦାର ହୋଇ ପାରୁନାହାନ୍ତି । କେତେକ ସ୍ଥାନରେ ସାଧାରଣ ଲୋକେ ଉଗ୍ରବାଦୀମାନଙ୍କ ଦ୍ୱାରା ପରିଚାଳିତ ହୋଇ ବିପଥଗାମୀ ହେଉଛନ୍ତି । କେତେକ ପ୍ରଦେଶ ଯଥା– ପଶ୍ଚିମବଙ୍ଗ, ଆନ୍ଧ୍ର, ଛତିଶଗଡ଼, ଝାଡ଼ଖଣ୍ଡ ଓ ଓଡ଼ିଶାରେ ମାଓବାଦୀ ଆନ୍ଦୋଳନ ମୁଣ୍ଡ ଟେକିଛି । ଏହା ଆଇନଶୃଙ୍ଖଳାର ସମସ୍ୟା କିମ୍ବା ଆର୍ଥିକ ଅନ୍ୟାୟ ଓ ଶୋଷଣର ପରିଣତି ତାହା ଠିକ୍ ଭାବରେ ସମୀକ୍ଷା କରିବା ଆବଶ୍ୟକ । ସମ୍ବିଧାନର ରଚୟିତା ଆମ୍ବେଦକର ଅର୍ଥନୈତିକ ଓ ସାମାଜିକ ବୈଷମ୍ୟ ଦୂର ନହେଲେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଭୁଷୁଡ଼ି ପଡ଼ିବ ବୋଲି ମତ ଦେଇଥିଲେ– '୧୯୫୦ ଜାନୁଆରୀ ୨୬ ତାରିଖରେ ଆମେ ରାଜନୀତିରେ ସମତା ଓ ସାମାଜିକ ତଥା ଅର୍ଥନୈତିକ ଜୀବନରେ ବୈଷମ୍ୟ ଦେଖିବାକୁ ପାଇବୁଁ । ଯେତେ ଶୀଘ୍ର ସମ୍ଭବ ଆମକୁ ଏହି ଦ୍ୱନ୍ଦ୍ୱକୁ ଦୂର କରିବାକୁ ପଡ଼ିବ, ନଚେତ୍ ଯେଉଁମାନେ ବୈଷମ୍ୟର ଶିକାର ହେଉଛନ୍ତି ସେମାନେ ରାଜନୈତିକ ଗଣତନ୍ତ୍ରର ସୌଧକୁ ଧୂଳିସାତ କରିଦେବେ ।'

ଏ ଦେଶରେ ଦାରିଦ୍ର୍ୟ ଓ ଅର୍ଥନୈତିକ ବୈଷମ୍ୟର ମୂଳ କାରଣ କ'ଣ ? ଏଭଳି ଜନବହୁଳ ରାଷ୍ଟ୍ରରେ ସଂଖ୍ୟାଧିକ ଲୋକଙ୍କର ଦାରିଦ୍ର୍ୟ ଦୂର କରିବା ସରକାରଙ୍କ କ୍ଷମତା ରହିଛି । ସମ୍ବିଧାନ ସଭାରେ ନେହେରୁ କହିଥିଲେ – 'ଭାରତର ସେବାର ଅର୍ଥ ନିୟୁତ ନିୟୁତ ଦୁଃଖୀ ଲୋକଙ୍କର ସେବା । ଏହାର ଅର୍ଥ ଦାରିଦ୍ର୍ୟ, ଅଶିକ୍ଷା, ବ୍ୟାଧି ଓ ସୁବିଧା ସୁଯୋଗ କ୍ଷେତ୍ରରେ ବୈଷମ୍ୟର ବିନାଶ । ପ୍ରତ୍ୟେକ ଆଖିରୁ ପ୍ରତ୍ୟେକ ଲୁହ ପୋଛିବା ଆମ ଯୁଗର ଶ୍ରେଷ୍ଠ ବ୍ୟକ୍ତିଙ୍କର ଅଭିଳାଷ ଥିଲା । ଏହା ହୁଏତ ଆମ ପକ୍ଷରେ ଅସମ୍ଭବ ହୋଇପାରେ, କିନ୍ତୁ ଯେତେ ପର୍ଯ୍ୟନ୍ତ ଦୁଃଖ, କଷ୍ଟ ଓ ବ୍ୟଥା ରହିଛି ସେ ପର୍ଯ୍ୟନ୍ତ ଆମକୁ ଶ୍ରମ କରିବାକୁ ପଡ଼ିବ ।' ଏ ଦେଶର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଏହି ସେବାମୂଳକ ମନୋଭାବ ଜାଗ୍ରତ ହେବା ଉଚିତ । ତେଣୁ ଭବିଷ୍ୟତରେ ଏ ଦେଶକୁ ଆଗେଇ ନେବା ପାଇଁ ଅନେକ ସଂଗ୍ରାମ ଓ କଷ୍ଟ ସ୍ୱୀକାର ଆବଶ୍ୟକ । ଏହା ହିଁ ଜାନୁଆରୀ ଛବିଶ ତାରିଖର ଆମ ପାଇଁ ଆହ୍ୱାନ ।

ଏମ୍.ଆଇ.ଜି.–୬୮
ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ, ଭୁବନେଶ୍ୱର–୬

# ସ୍ୱାମୀ ବିବେକାନନ୍ଦ ଓ କ୍ରାନ୍ତିକାରୀ ବେଦାନ୍ତ

ଡକ୍ଟର ସୌରୀବଂଧୁ କର

ସ୍ୱାମୀ ବିବେକାନନ୍ଦଙ୍କ ବିଶ୍ୱାସ ଭାରତ ସମଗ୍ର ମାନବ ପ୍ରଜାତିର ଆଧ୍ୟାତ୍ମିକ ଗୁରୁ । ଏହାକୁ ଆମେ ଗ୍ରହଣ କରିବା ବେଳେ ବର୍ତ୍ତମାନର ଭାରତର ଅବସ୍ଥାକୁ ଲକ୍ଷ୍ୟ କଲେ ମନରେ ସନ୍ଦେହ ଜାତ ହୁଏ । ସତରେ କ'ଣ ଆମେ ମାନବ ଜାତିର ଏହି ପର୍ଯ୍ୟାୟକୁ ଉନ୍ନୀତ ହୋଇପାରିବା ? ବିଶ୍ୱର ଅନେକ ଶକ୍ତିଶାଳୀ ରାଷ୍ଟ୍ର ବିଜ୍ଞାନ, ଟେକ୍ନୋଲୋଜି ଇତ୍ୟାଦିରେ ପ୍ରଭୂତ ଉନ୍ନତି କଲେଣି । ଭାରତ କିଛିକାଂଶରେ ଉନ୍ନତିର ମାର୍ଗରେ ଅଗ୍ରସର ହୋଇଥିଲେ ଏବେ ମଧ୍ୟ ବିକାଶଶୀଳ ରାଷ୍ଟ୍ର ଭାବରେ ପରିଗଣିତ ହେଉଛି । ଦାରିଦ୍ର୍ୟ, ଶିକ୍ଷାର ଅଭାବ, ବିଶୃଙ୍ଖଳା ଇତ୍ୟାଦି ଏହାକୁ ଗ୍ରାସ କରିଛି । ଏପରି ସ୍ଥିତିରେ ବିଶ୍ୱର ନେତୃତ୍ୱ ନେବା କ'ଣ ସମ୍ଭବ ? ସ୍ୱାମୀଜୀଙ୍କ ଦୃଷ୍ଟିରୁ ଏହା ସମ୍ଭବ । ଭାରତୀୟମାନଙ୍କର ଶରୀର ଓ ମନର ବିକାଶ ହେବା ପ୍ରଥମେ ଆବଶ୍ୟକ । ଯଦି ଏହା ସଠିକ୍ ସେବା ଓ ଶିକ୍ଷା ମାଧ୍ୟମରେ ନହୁଏ, ତେବେ ଭାରତୀୟ ଆଧ୍ୟାତ୍ମିକତାର ସମ୍ଭାବନା ଜାଗ୍ରତ ହେବା ସମ୍ଭବ ନୁହେଁ । ଆଧ୍ୟାତ୍ମିକତାର ବିକାଶ ପାଇଁ କେତେଗୁଡ଼ିଏ ପ୍ରାଥମିକତାର ଆବଶ୍ୟକତା ରହିଛି ।

ତେଣୁ ସ୍ୱାମୀ ବିବେକାନନ୍ଦଙ୍କ ମଧ୍ୟରେ ଆମେ ଦେଖିବାକୁ ପାଉ ଦେଶପ୍ରେମ, ମାନବିକତା ଓ ଆଧ୍ୟାତ୍ମିକତା ଓତପ୍ରୋତ ଜଡ଼ିତ ହୋଇ ରହିଛନ୍ତି । ସେବାଭାବ – ସାଧାରଣ ଜନତାର ସେବା ଓ ଦାରିଦ୍ର୍ୟ ଦୂରୀକରଣ, ଯାହାକୁ ସେ ଉଦ୍‌ଘୋଷଣା କରିଥିଲେ ତାହାକୁ ରାଜନୈତିକ ଦୃଷ୍ଟିକୋଣରୁ ବିଚାର କରିବା ଠିକ୍ ହେବ ନାହିଁ । ସ୍ୱାମୀଜୀ କେତେକ ମୌଳିକ ନୀତିର ଉପଦେଶ ଦେଇଥିଲେ । ଭାରତୀୟ ଲୋକମାନଙ୍କୁ ଖାଦ୍ୟ, ଶିକ୍ଷା ଦେବା ସହିତ ଆଧ୍ୟାତ୍ମିକୀକରଣ କରିବାକୁ ହେବ । ଯଦି ଆଧ୍ୟାତ୍ମିକତାକୁ ଛାଡ଼ି ଦିଆଯିବ, ତେବେ ଜୀବନଧାରଣର ମାନର ଉନ୍ନତିରେ କୌଣସି ମହାନ୍ ଉଦ୍ଦେଶ୍ୟ ସାଧନ ହୋଇପାରିବ ନାହିଁ । ମନୁଷ୍ୟ ହେଉଛି ଆଧ୍ୟାତ୍ମିକ ଜୀବ ଏବଂ ଯଦି ତାହାର ପ୍ରଚେଷ୍ଟାକୁ ସେହି ଦିଗରେ ନେଇ ଆତ୍ମାର ପରିପ୍ରକାଶ କରାନଯାଏ, ତେବେ ତା'ର ପୂର୍ଣ୍ଣ ବିକାଶ ସାଧିତ ହୋଇପାରିବ ନାହିଁ ।

ସ୍ୱାମୀଜୀ ଚାହୁଁଥିଲେ ଆମ ଦେଶର ପ୍ରତିମୂର୍ତ୍ତି ମନୁଷ୍ୟ ହେବା ଦରକାର ଏବଂ ଭାରତର ସମାଜ ଆମର ସେବାର କ୍ଷେତ୍ର ହେବା ଉଚିତ୍ । ତେଣୁ ସେ କହୁଥିଲେ ଯଦି ଭାରତୀୟ ଲୋକମାନଙ୍କୁ ଖାଦ୍ୟ, ଶିକ୍ଷା ଦିଆନଯାଏ ଓ ଦାରିଦ୍ର୍ୟ ଦୂରୀକରଣ କରାନଯାଏ, ତେବେ ଭାରତର ମୁକ୍ତି ଅସମ୍ଭବ ।

ତେଣୁ ମନୁଷ୍ୟର ସେବା ମାଧ୍ୟମରେ ସେମାନଙ୍କର ଦେବତ୍ୱକୁ ଅନୁଭୂତିରେ ଆଣିବା ଉପରେ ସେ ଗୁରୁତ୍ୱ ଦେଉଥିଲେ । ଆଧୁନିକ ସମୟରେ ସେ ସେବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଏହା ଯେ ପୂର୍ବରୁ ନଥିଲା ତାହା ନୁହେଁ କିନ୍ତୁ ଲୋକମାନେ ଏହାକୁ ଭୁଲି ଯାଇଥିଲେ । ଆଧୁନିକ ମଣିଷ ବର୍ତ୍ତମାନ ଜୀବନ ସଂପର୍କରେ ବେଶୀ ଗୁରୁତ୍ୱ ଦିଏ । କାରଣ ମୃତ୍ୟୁ ପରେ କ'ଣ ହେବ, ତାହା ତାହାର ଚିନ୍ତାର ବିଷୟ ନୁହେଁ । ତେଣୁ ସେବାଭାବକୁ ଧର୍ମ ସହିତ ଯୋଡ଼ିବା ଆଧୁନିକ ବ୍ୟବହାରକୁ ନେଇ ତେବେ ଏହାର କେବଳ ଅନ୍ତନିରୀକ୍ଷଣ ମୂଲ୍ୟବୋଧ ରହିବା ନୁହେଁ ଯାହା ମନୁଷ୍ୟକୁ ଆଧ୍ୟାତ୍ମିକ ଭାବରେ ଉଚ୍ଚକୁ ନିଏ ଏବଂ ସମାଜ ଉପରେ ଏହାର ପ୍ରୟୋଗ ଏବଂ ମନୁଷ୍ୟ ଓ ତା'ର ପରିବେଶର ଉନ୍ନତି ପାଇଁ କାର୍ଯ୍ୟ କରେ । ତେଣୁ ସ୍ୱାମୀଜୀଙ୍କ ସେବା ସଂପର୍କିତ ପ୍ରୟୋଗାତ୍ମକ ବେଦାନ୍ତର ଗୁରୁତ୍ୱ ବେଶୀ ।

ସ୍ୱାମୀଜୀଙ୍କ ଅନ୍ୟ ଏକ ବିଚାର ହେଉଛି ସର୍ବମୁକ୍ତି ଅର୍ଥାତ୍ ସମସ୍ତଙ୍କର ମୁକ୍ତି । ଏହାର ଅର୍ଥ ହେଉଛି ମୁକ୍ତି ବ୍ୟକ୍ତିକୈନ୍ଦ୍ରିକ ନୁହେଁ ବରଂ ସାମୂହିକ । ସେ ତାଙ୍କର ଶିଷ୍ୟ ଶରତ ଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ସହିତ ଆଲୋଚନା କରିବା ବେଳେ କହିଛନ୍ତି ଯେ ମୁକ୍ତି ବ୍ୟକ୍ତିଗତ ନୁହେଁ ଏବଂ ଯେ ପର୍ଯ୍ୟନ୍ତ ତୁମେ ତୁମର ମୁକ୍ତି ଭୁଲିଯାଇ ନାହଁ ଏବଂ ସମସ୍ତଙ୍କ ପାଇଁ କାର୍ଯ୍ୟ କରିନାହଁ, ତୁମକୁ ମୁକ୍ତି ମିଳିବ ନାହିଁ । ତୁମେ ଯଦି ସମସ୍ତଙ୍କ ପାଇଁ କାର୍ଯ୍ୟ ନ କରୁଛ, ତେବେ ତୁମେ ମୁକ୍ତି ପାଇପାରିବ ନାହିଁ । ଆମେ କିନ୍ତୁ ବ୍ୟକ୍ତିଗତ ସମ୍ପତ୍ତି, ଚାକିରି, ମୂଲ୍ୟବାନ ବସ୍ତୁ ପରି ମୁକ୍ତିକୁ ଧରି ରଖିଛୁ ! ମୁକ୍ତିର ବାସ୍ତବ ଅର୍ଥ ହେଉଛି ନିଜର ସବୁକିଛି ଦଖଲୀକୁ ପରିତ୍ୟାଗ କରିବା ଏପରିକି ନିଜର କ୍ଷୁଦ୍ର 'ମୁଁ'ତ୍ୱକୁ । ନିଜର କ୍ଷୁଦ୍ର 'ମୁଁ'କୁ ପରିତ୍ୟାଗ କରିବା ଅର୍ଥ ହେଉଛି ନିଃସ୍ୱାର୍ଥ ସେବା । ଯେପର୍ଯ୍ୟନ୍ତ ତୁମେ ତୁମର କ୍ଷୁଦ୍ର 'ମୁଁ'କୁ ଭଲ ପାଉଥିବ, ସେତେବେଳ ପର୍ଯ୍ୟନ୍ତ ତୁମର କ୍ଷୁଦ୍ର 'ମୁଁ' କିଛି ଛାଡ଼ିବାକୁ ପ୍ରସ୍ତୁତ ହେବ ନାହିଁ । ଆମର ଆଧ୍ୟାତ୍ମିକତା ହେଉଛି ଏହି ପ୍ରକାରର, 'ମୋତେ ଦିଅ' । କିନ୍ତୁ ଯେତେବେଳେ ବାସ୍ତବ ଆଧ୍ୟାତ୍ମିକତା ଆସିବ, ବାସ୍ତବ ବେଦାନ୍ତ ପ୍ରତିଫଳିତ ହେବ, ବାସ୍ତବ ଭକ୍ତି ଆସିବ ସେତେବେଳେ ଦିଗ ବଦଳି ଯିବ, ସେତେବେଳେ 'ମୁଁ' ଦେବି ଏଥିରେ ପରିଣତ ହେବ । ଯେପର୍ଯ୍ୟନ୍ତ ସେହି ବାଟ ଯାଏ ନ ଆସିଛି, ଉନ୍ନତ ଆଧ୍ୟାତ୍ମିକତା ଜାଗ୍ରତ ହେବ ନାହିଁ । ଯେପର୍ଯ୍ୟନ୍ତ ମନୁଷ୍ୟ ମଧ୍ୟରେ ଆତ୍ମ–କୈନ୍ଦ୍ରିକ ଯାହା ବାସ୍ତବରେ ପାପର ମୂଳଦୁଆ, ଗୁରୁତ୍ୱ ବହନ କରିବ ଯାହା ଆମେ କଲେ ମଧ୍ୟ ତାହା ବିନିଷ୍ଟ ହୋଇଯିବ । ସ୍ୱାମୀଜୀ ଚାହୁଁଥିଲେ ଆମ ମଧ୍ୟରୁ ଏହି ଆତ୍ମକୈନ୍ଦ୍ରିକ ବିଚାର ଲୋପ ପାଉ । ଯେପର୍ଯ୍ୟନ୍ତ ତାହା ଦୂର ନହୋଇଛି, କିଛି ହେବ ନାହିଁ । ତେଣୁ ସେ 'ସେବା'ର ତତ୍ତ୍ୱ ଦେଇଥିଲେ, ଈଶ୍ୱରଙ୍କର ସେବା । ଏହି ତତ୍ତ୍ୱ କେବଳ ଜଂଗଲ ବା ମଠମାନଙ୍କରେ ପ୍ରୟୋଗ ହେବ ତାହା ନୁହେଁ ବରଂ ଏହା ଏହି ଜୀବନରେ ହେବ, ମନୁଷ୍ୟ ଜୀବନର ପ୍ରତ୍ୟେକ ଦିନ କାର୍ଯ୍ୟରେ ହେବ । ଆମ ଭିତରେ ସେହି ଅନୁଭୂତି ଜାଗ୍ରତ କରିବାକୁ ହେବ ଯେ ଆମେ ସେହି ଦେବତ୍ୱର ଅଂଶବିଶେଷ । ଆମେ ସେହି ବିରାଟ ଅଗ୍ନିର ସାମାନ୍ୟ ଅଗ୍ନିକଣିକା ମାତ୍ର ଯେଉଁଥିରେ ଅମାପ ସମ୍ଭାବନା ରହିଛି । ଏହି ବିଚାରକୁ ପରିବ୍ୟାପ୍ତ କରିବା ପାଇଁ ବା ବିକାଶ କରିବା ପାଇଁ ଆମକୁ ଆମ ପରିବେଶ ଯେତିକି ଗୁରୁତ୍ୱପୂର୍ଣ୍ଣ ଆମର ଅନ୍ତଃସ୍ଥ ଜୀବନ ସେତିକି ଗୁରୁତ୍ୱ ବହନ କରେ । ଏହାର କୌଣସି ଭିତର ବା ବାହାର ନାହିଁ । ତେଣୁ ଆମେ ବାହ୍ୟକୁ ଯେତିକି ଯତ୍ନବାନ ହେବା, ଅନ୍ତଃକୁ ମଧ୍ୟ ସେତିକି ଯତ୍ନବାନ୍ ହେବା । ବାହ୍ୟର ଯତ୍ନ ନେବାର ଅର୍ଥ ହେଉଛି ବାସ୍ତବରେ ଆମର ସହ ସଦସ୍ୟମାନଙ୍କର ସେବା କରିବା । କାରଣ ସମସ୍ତଙ୍କ ମଧ୍ୟରେ ସେହି ଆତ୍ମନ୍ ବିଦ୍ୟମାନ । ଯେକୌଣସି ସାହିତ୍ୟରେ ମାନବିକ ଉତ୍କର୍ଷର ଏହି ଦୃଷ୍ଟି ଦେଖିବାକୁ ମିଳେ । ଏହି ଦୃଷ୍ଟିର ଏକ ଅଭିବ୍ୟକ୍ତି ଆମେ ଶ୍ୱେତାଶ୍ୱେତ ଉପନିଷଦରେ ଦେଖିବାକୁ ପାଇବା ।

ତ୍ୱ ସ୍ତ୍ରୀ ତ୍ୱମ ପୁମାନାସି
ତ୍ୱମ କୁମାର ଉତ ଭା କୁମାରୀ
ତ୍ୱମ ଜୀର୍ଣ୍ଣୋ ଦଣ୍ଡେନ ଉଚସି
ତ୍ୱମ ଜାତୋ ଭବାସି ବିଶ୍ୱୋତମୁଖ ।

ଆତ୍ମା ହେଉଛି ଅନନ୍ତ ଓ ଅସୀମ । ତାହାକୁ ନିଜ ଭିତରେ ଅପରୋକ୍ଷାନୁଭୂତି କରିବା ପରେ ବ୍ୟକ୍ତି ତା' ସମ୍ମୁଖରେ ମହିଳା, ପୁରୁଷ, ପିଲା, ଯୁବକ ଓ ବାଡି ଧରି ଯାଉଥିବା ବୃଦ୍ଧକୁ ପାଏ । ସେ ଏହିସବୁ ସମଗ୍ର ବିଶ୍ୱରେ ପୂରି ରହିଥିବାର ଦେଖେ । ଏହି ଅନୁଭୂତି ପ୍ରଥମେ ଜଣେ ସାଧୁଙ୍କର ହୋଇଥିଲା ଏବଂ

ତା'ପରେ ଅନ୍ୟମାନଙ୍କର । ଏହା ହେଉଛି ମହାନ୍ ଉପନିଷଦୀୟ ପରଂପରା । ପ୍ରଥମ ଉପନିଷଦ ଈସାବାସ୍ୟରେ ପ୍ରଥମ ଶ୍ଳୋକରେ ଏହି ଅନୁଭୂତି କଥା କୁହାଯାଇଛି ।

ଈସା ବାସ୍ୟ ଇଦମ୍ ସର୍ବ ଯତକିଂଚ ଜଗତମ୍ ଜଗତ
ତେନ ତ୍ୱକ୍ତେନ ଭୁଞ୍ଜିଥା
ମାଗ୍ରିଥ କଶ୍ୟ ସ୍ୱିଧନମ୍ ॥

'ତୁମେ ଯାହା କିଛି ଏହି ବିଶ୍ୱରେ ଦେଖୁଛ, ଚଳମାନ ବା ଅଚଳମାନ, ତାହା ସବୁ ଈଶ୍ୱରଙ୍କ ଦ୍ୱାରା ପୂର୍ଣ୍ଣ । ସଂସାରକୁ ତ୍ୟାଗ କରି ନିଜକୁ ସାହାଯ୍ୟ କର । ଅନ୍ୟର ସମ୍ପତ୍ତିକୁ ଅପହରଣ କର ନାହିଁ ।'

ଈଶ୍ୱର ବିଚାର ସବୁଧର୍ମରେ ରହିଛି । ସବୁ ମଣିଷ ମଧ୍ୟରେ ବିଦ୍ୟମାନ । ଏହା ଉପନିଷଦ ଉଦ୍‌ଘୋଷଣା କରେ । ସ୍ୱାମୀଜୀ 'ଅଧିକାରବାଦ'କୁ ଦୃଢ ଭାବରେ ବିରୋଧ କରିଥିଲେ । ହିନ୍ଦୁ ଧର୍ମରେ ସାମାଜିକ ସ୍ତରରେ ବିଶେଷ ଅଧିକାର ରହିଛି ବୋଲି କେତେକ ଯୁକ୍ତି ବାଢୁଥିବା ବେଳେ ବିବେକାନନ୍ଦ ସେହି ବିଶେଷ ଅଧିକାରର ବିରୋଧ ହିନ୍ଦୁ ଧର୍ମ ଆଧାରରେ କରିଥିଲେ । ଏଥିରୁ ସ୍ପଷ୍ଟ ସୂଚୀତ ହୁଏ ଯେ ଧର୍ମର ପ୍ରଶ୍ନ କେବଳ ବିଶ୍ୱାସ ଓ ଆସ୍ଥା ସହିତ ଯୋଡ଼ିହୋଇ ରହିଛି ନୁହେଁ ବରଂ ଏହାକୁ କିପରି ବ୍ୟାଖ୍ୟା କରାଯାଇପାରୁଛି ଓ ଲୋକମାନଙ୍କର ହିତ ସାଧନ ପାଇଁ ଉଦ୍ଦିଷ୍ଟ, ତାହା ଉପରେ ପର୍ଯ୍ୟବସିତ । ବିଶେଷ ଅଧିକାର ବିରୋଧରେ ତାଙ୍କର ସଂଗ୍ରାମ ସମୟରେ ଯେଉଁଠାରେ ଆବଶ୍ୟକ ପଡ଼ିଲା, ସେଠାରେ ସେ ଧର୍ମଗ୍ରନ୍ଥର ଆଲୋଚନା କରିବାକୁ ପଛଘୁଞ୍ଚା ଦେଇନଥିଲେ । ସେ ବେଦାନ୍ତୀ ହୋଇ ମଧ୍ୟ ଗୀତାର ଆଲୋଚନା କରିଥିଲେ । ସ୍ୱାଧୀନତା ସଂଗ୍ରାମ ସମୟରେ ଗୀତାର ମହତ୍ତ୍ୱ ଐତିହାସିକ ଆବଶ୍ୟକତା ଭାବେ ବିଚାର କରାଯାଏ । ବିବେକାନନ୍ଦଙ୍କ ସମୟରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଲ୍ ଗଙ୍ଗାଧର ତିଳକ ଗୀତା ଉପରେ 'ଗୀତା ରହସ୍ୟ' ନାମକ ପୁସ୍ତକ ରଚନା କରିଥିଲେ ଏବଂ ଏହାକୁ ସ୍ୱାଧୀନତା ସଂଗ୍ରାମ ପାଇଁ ବ୍ୟବହୃତ କରିଥିଲେ । ଯଦିଓ ସ୍ୱାଧୀନତା ସଂଗ୍ରାମର ଅଂଶବିଶେଷ ଭାବରେ ଗୀତାକୁ ପ୍ରାଧାନ୍ୟ ଦିଆଯାଏ, କିନ୍ତୁ ଏଥିରେ ବିଶେଷ ଅଧିକାରକୁ ସମର୍ଥନ ବାଧା ସୃଷ୍ଟି କରୁଥିଲା । ବିବେକାନନ୍ଦ ଏହାର ଆଲୋଚନା କରିଥିଲେ । ସେ ଗୀତାର ମୂଳ ସ୍ତୋତ୍ରକୁ ଅନ୍ଧବିଶ୍ୱାସ ଭାବେ ବା ନିଜ ମନ ଅନୁଯାୟୀ ଗ୍ରହଣ ନକରି ଏହାର ମୂଲ୍ୟାୟନ କରିଥିଲେ । ସେହି ସମୟର ଆବଶ୍ୟକତାକୁ ଲକ୍ଷ୍ୟ ରଖି ସେ ତତ୍ତ୍ୱକୁ ବିକଶିତ କରୁଥିଲେ ଏବଂ ପ୍ରତିକୂଳ ତତ୍ତ୍ୱର ଆଲୋଚନା କରୁଥିଲେ । ତେଣୁ ସେ ଧର୍ମଗ୍ରନ୍ଥକୁ ବିକୃତ ନକରି ତାହାର ବ୍ୟାଖ୍ୟା କରୁଥିଲେ । ବିଚାରଧାରାତ୍ମକ ଆଲୋଚନା ବଦଳରେ ସେ ବିବେକ ସଂଗତ ଯୁକ୍ତିର ଅବତାରଣା କରୁଥିଲେ । ହୁଏତ ତାଙ୍କର ତର୍କ ପଦ୍ଧତିରେ ଅସଙ୍ଗତି ଥାଇପାରେ କିନ୍ତୁ ତାଙ୍କର ବିଚାର ପ୍ରଗତିଶୀଳ ଆକାଂକ୍ଷାର ପ୍ରତିବିମ୍ବିତ କରେ । କାରଣ ସେ ପରାଧୀନ ଜାତିର ଆତ୍ମଗୌରବକୁ ଉଜ୍ଜୀବୀତ କରିବା ପାଇଁ ଓ ପଦ ଦଳିତ ସମୁଦାୟକୁ ଶକ୍ତିଶାଳୀ କରିବା ପାଇଁ ତାହାକୁ ପ୍ରୟୋଗ କରୁଥିଲେ ।

ଗଜପତି ନଗର
ଭୁବନେଶ୍ୱର - ୭୫୧୦୦୫



# ଜାତୀୟତାବାଦୀ ସାହିତ୍ୟ ଓ କୁନ୍ତଳା କୁମାରୀ

ଡକ୍ଟର ସର୍ବେଶ୍ୱର ସେଣ

ଦେଶ ବା ଜାତି ସମ୍ପର୍କିତ ଅତ୍ୟୁଚ୍ଚ ଆକର୍ଷଣ, ପ୍ରୀତି, ମମତା ହିଁ ଜାତୀୟତା ଜାତିପ୍ରେମିକ, ଦେଶପ୍ରେମିକ – ଏମାନେ ଜାତୀୟତାବାଦୀ। ଜାତୀୟ, ଜାତୀୟତାବାଦର ଏଗୁଡ଼ିକ ଆଭିଧାନିକ ଅର୍ଥ। ମା'–ମାଟି–ଭାଷାକୁ ଭଲ ପାଇବା ପ୍ରତିଟି ମଣିଷର ଆତ୍ମାର କଥା। କିନ୍ତୁ ଜାତି/ ଦେଶ ଯେତେବେଳେ ଘଡ଼ିସନ୍ଧି ମୁହୂର୍ତ୍ତରେ ପହଞ୍ଚେ, ସେତେବେଳେ ଗୋଟେ ଭିନ୍ନ ସ୍ଥିତି ଉପୁଜେ। ଏ ପ୍ରକାର ସ୍ଥିତାବସ୍ଥା ପରାଧୀନ ଦେଶରେ ପରିଲକ୍ଷିତ ହୋଇଥାଏ। ସାମାଜିକ, ଆର୍ଥିକ, ରାଜନୀତିକ ସ୍ୱାଧୀନତା ପାଇଁ ସଚେତନତା ସୃଷ୍ଟି ହୁଏ । ବିଶେଷକରି ବିଦେଶୀ ଶାସକଙ୍କର ଅପଶାସନରେ ବିମର୍ଷ, ପ୍ରତାରିତ, ଶୋଷିତ, ଲୁଣ୍ଠିତ– ଜନଚେତନା ଶେଷରେ ଜ୍ୱାଳାମୁଖୀ ରୂପ ନିଏ। ଚାଲେ ସ୍ୱାଧୀନତା ପାଇଁ ଲଢ଼େଇ। ଆପଣାର ହକ୍ ଟିକକ ପାଇଁ ତନୁ–ମନ–ପ୍ରାଣ ଢାଳି ଦିଅନ୍ତି ଜନସାଧାରଣ। ଲଢ଼େଇର ନେତୃତ୍ୱ ନିଅନ୍ତି ଆଗଧାଡ଼ିର ମୁକ୍ତିସଂଗ୍ରାମୀ । ସେମାନଙ୍କ ଉଦ୍‌ବୋଧନ, ତେଜୋଦୀପ୍ତ ଭାଷଣ ଜନତାଙ୍କୁ ତତାଏ, ମତାଏ, ଉଦ୍ଦୀପିତ କରେ। ସଂଗ୍ରାମୀଟିଏ ମାଟି ମା' ପାଇଁ ଆପଣାର ପ୍ରାଣପାତ କରିବାକୁ ପଶ୍ଚାତପଦ ହୁଏନି। ସୃଷ୍ଟିହୁଏ ଜାତୀୟତାବାଦୀ ଆବହାଓ୍ୱା। ଏତାଦୃଶ ଦୃଶ୍ୟପଟ ଭାରତୀୟ ମୁକ୍ତିସଂଗ୍ରାମ କାଳରେ କେବଳ ପରିଦୃଷ୍ଟ ହୋଇନି । ଅତୀତରେ ସମାନ ଅବସ୍ଥା ସାରା ବିଶ୍ୱରେ ମଧ୍ୟ ପରିଲକ୍ଷିତ ହୋଇଥିଲା। ଫରାସୀ ରାଷ୍ଟ୍ର ବିପ୍ଳବ, ଆମେରିକାର ସିଭିଲ ଓ୍ୱାର୍, ଋଷ ଗଣ ବିପ୍ଳବ ଅବା ଇଟାଲୀର ଏକତ୍ରିକରଣ– ଏ ସମସ୍ତ ରାଷ୍ଟ୍ରରେ ମୁକ୍ତି ସଂଗ୍ରାମକାଳୀନ ସୃଷ୍ଟ ଜନଚେତନା ମାନବ ସଭ୍ୟତାକୁ ଅଭିଭୂତ କରିଥିଲା । ଏଥିରୁ ମଧ୍ୟ ଭାରତୀୟ ଶିକ୍ଷିତ ଗୋଷ୍ଠୀ ବହୁ ଉପାଦେୟ ତଥ୍ୟ ଆହରଣ କଲେ। ଆପଣାର ଅନୁଭବ, ଅନୁଭୂତିକୁ କାମରେ ଲଗାଇଲେ। ଫିରିଙ୍ଗି ଅପଶାସନ କବଳରୁ ମୁକ୍ତିପାଇଁ ଚାଲିଥିବା ଧୀର ମନ୍ଥର ଲଢ଼େଇ ଶେଷରେ ନିର୍ଣ୍ଣାୟକ ରୂପ ନେଲା। ଗାନ୍ଧିଜୀ ରାଜନୀତିକୁ ଓହ୍ଲାଇଲେ। ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ, ବ୍ୟକ୍ତିଗତ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନ– ଏ ସମସ୍ତ ଦେଶବ୍ୟାପୀ ସତ୍ୟାଗ୍ରହରେ ତାଙ୍କର ଅବଦାନ ଅବିସ୍ମରଣୀୟ। ରାଜନୀତିରେ ବାପୁଜୀ ରାଜା ମହାରାଜା, ଖଟିଖିଆ, ଦିନମଜୁରିଆଠାରୁ ଆରମ୍ଭ କରି ବୁଦ୍ଧିଜୀବୀ ପର୍ଯ୍ୟନ୍ତ ସମସ୍ତଙ୍କୁ ସଂଗ୍ରାମରେ ସାମିଲ କରିଦେଲେ। ମୁକ୍ତି ସଂଗ୍ରାମ ପରିଣତ ହେଲା ଗଣ ଆନ୍ଦୋଳନରେ। ଗାନ୍ଧୀମନ୍ତ୍ର ବିହ୍ୱଳ ସାରା



ଭାରତବର୍ଷ। ୧୯୨୦-୧୯୪୮କୁ ଗାନ୍ଧୀଯୁଗ ବିବେଚନା କରାଗଲା। ପ୍ରୋକ୍ତ କାଳରେ କାର୍ଲମାର୍କ୍ସଙ୍କ ସାମ୍ୟବାଦୀ ଚିନ୍ତା–ଆର୍ଦ୍ର ଦେଶପ୍ରେମୀ ଆପଣା ଢଙ୍ଗରେ ଲଢ଼ିଲେ ଇଂରେଜ ସଙ୍ଗେ। ଏକ ବୈପ୍ଲବିକ ସ୍ଥିତି ଉପୁଜିଲା। ଅନୁରୂପ ଭାବେ ମହାନ ଦେଶଭକ୍ତ ନେତାଜୀ ସୁଭାଷ ବୋଷଙ୍କ ମୁକ୍ତିସଂଗ୍ରାମକୁ ଅବଦାନ ଅକଳନୀୟ। ମୋଟାମୋଟି ଏ ସମସ୍ତ ଦୃଷ୍ଟିଭଙ୍ଗୀ ସମ୍ବଳିତ ଚେତନାବୋଧ ରାଜନୀତିକ ସଂଗ୍ରାମର ମୂଳଦୁଆ। ଗୋଟିଏ କଥାରେ କହିଲେ ନେତା, ଜନତା – ଉଭୟ ଇଂରେଜଙ୍କ ହୃଦ୍‌କମ୍ପ ସୃଷ୍ଟି କରିଥିଲେ। ଏ କ୍ଷେତ୍ରରେ ସାହିତ୍ୟିକର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ।

ସାହିତ୍ୟ ଜୀବନର କଥା କହେ, ଜନଜୀବନକୁ ବ୍ୟାଖ୍ୟା କରେ। ସୁ, କୁ ର ବିଚାରଭେଦ ଦର୍ଶାଏ। ଏଥି ସହିତ ଜାତିପ୍ରେମ ବହ୍ନି ସୃଷ୍ଟି କରେ। ପ୍ରାକ୍ ସ୍ୱାଧୀନତା କାଳରେ ସାହିତ୍ୟ ଗୋଟେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହେଲା। ଅତୀତର ଗାଥା, ଗୌରବ, ସଂସ୍କାର ସଂସ୍କୃତି, ବୀରତ୍ୱ, କଳାସ୍ଥାପତ୍ୟର ଉତ୍କର୍ଷ ଆଦି ନାନାଦି ଚିତ୍ର ଲୋକଲୋଚନକୁ ଆଣିଲା। ଜନତାର ଶିରା, ପ୍ରଶିରା, ଅନ୍ତର ଆତ୍ମାରେ ଉଦ୍‌ବୋଧନୀ ଗୀତିକାଗୁଡ଼ିକ ମୁକ୍ତି ଚେତନାବୋଧକୁ ସଞ୍ଚାରିତ କରିଦେଲା। ଭାରତୀୟ ସାହିତ୍ୟ ତଥା ପ୍ରାଦେଶିକ ସାହିତ୍ୟ – ଏ ପ୍ରକାର ଜାତୀୟତାବୋଧ ସୃଷ୍ଟି କରିବାରେ ଊଣା କରିନଥିଲା। ମୁକ୍ତିଯୋଦ୍ଧାମାନଙ୍କ ମଧ୍ୟରୁ ଅନେକ ଥିଲେ ସୁସାହିତ୍ୟିକ। କାରାଗାର ସେମାନଙ୍କର ସାହିତ୍ୟ–ଜନନୀ ପାଲଟିଲା। ଉତ୍କଳମଣି ଗୋପବନ୍ଧୁ ଦାସ, ଡକ୍ଟର ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ ମହାପାତ୍ର, ଗୌରୀଚନ୍ଦ୍ର ମହାପାତ୍ର, ବୀରକିଶୋର ଦାସ ତାଙ୍କ ସହ ଆହୁରି କେତେକ ବନ୍ଦୀଶାଳାରୁ ସାହିତ୍ୟ ସର୍ଜନା ଆରମ୍ଭ କରିଥିଲେ। ସେମାନେ ପ୍ରଥମେ ଦ୍ରଷ୍ଟା, ପରେ ସାଧକ ସ୍ରଷ୍ଟା। ପରାଧୀନ ଜନତାର ହା ହୁତାଶାମୟ ଜୀବନର ଦୁର୍ବିସହ ସ୍ଥିତି ସେମାନଙ୍କୁ ମ୍ରିୟମାଣ କରିଥିଲା। ଜାତୀୟତାବାଦୀ ସାହିତ୍ୟିକମାନେ, ଦଶବର୍ଷର ଓଡ଼ିଶା, ଜନଜୀବନର ନିଖୁଣ ଚିତ୍ର ପ୍ରଦାନ କରିବା ସଙ୍ଗେସଙ୍ଗେ ଦେଶପ୍ରେମର ବାର୍ତ୍ତା ପ୍ରଚାର କଲେ। ଡକ୍ଟର ମହତାବଙ୍କ 'ଚଷାଭାଇର ଶୋକ', 'ପଲାସୀ ଅବସାନେ', ନିତ୍ୟାନନ୍ଦ ମହାପାତ୍ରଙ୍କ ମାଉସୀ (ଗଳ୍ପ) ସ୍ୱରାଜ ପାଲା, ବନ୍ଦୀର ଜୀବନ–ଏସବୁକୁ ପୁଲିସ୍ ଜବତ୍ କରିନେଲା, ବାଜ୍ୟାପ୍ତ କଲା। ସେମାନଙ୍କ ପରି ଅନେକ ସଂଗ୍ରାମୀ କବି ଆପଣାର ଲେଖନୀ ଚାଳନା କଲେ। ସେମାନଙ୍କୁ କାରାରୁଦ୍ଧ କରିଦିଆଗଲା। ଜାତୀୟ କବି ବୀରକିଶୋର ଦାସ ତନ୍ମଧ୍ୟରେ ଅଗ୍ରଗଣ୍ୟ। ମୁକ୍ତିସଂଗ୍ରାମୀ ବାଞ୍ଛାନିଧି ବି ଦେଶାତ୍ମବୋଧକ କବିତା ଲେଖିଲେ। ରାଇଜସାରା ଚହଳ ପଡ଼ିଗଲା, ବାନରସେନା (ବାଳକ ସତ୍ୟାଗ୍ରହୀ)ମାନେ ଗାଁ ଗାଁ ବୁଲି ଜାତୀୟତାବାଦୀ କବିତା ଗାନକଲେ। ସେମାନଙ୍କ ସୁଲଳିତ କଣ୍ଠସ୍ୱର ସହିତ ମର୍ମସ୍ପର୍ଶୀ ଉଦାତ୍ତ ସଙ୍ଗୀତ ଜନତାଙ୍କୁ ମନ୍ତ୍ରମୁଗ୍ଧ କରିଦେଲା। ଇଂରେଜ ସରକାର ଶବଦାହ ହେବ କେବେ, ଦିନରାତି ମୋର ସେଇ ଚିନ୍ତା – ଚେତନାବୋଧ ଅନେକ ଜାତୀୟତାବାଦୀ ସାହିତ୍ୟର ଅନ୍ତଃସ୍ୱର।

କବିର ହାତରେ ବଲମ ନୁହେଁ, କଲମ। କଲମ ଚାଲିଲେ ବାଡ଼ବ ଉଠିବ, ଗିରି ଚମକିବ, ଅଦିନିଆ ଅଣଚାଶ ବହିବ, ମେରୁ ଥରିବ, ଶାସନ ତନ୍ତ୍ର ତ୍ରସ୍ତ ହେବ। ଏଇ କଥାଟି ମୁକ୍ତି ସଂଗ୍ରାମ କାଳରେ ଊଣା ଅଧିକେ ବହୁ ସାହିତ୍ୟକୃତିରେ ପରିଦୃଷ୍ଟ। ସାରା ଭାରତବର୍ଷରେ ଜାତୀୟତାବାଦୀ ସାହିତ୍ୟ ସୃଷ୍ଟି ହେଲା। ଏ କ୍ଷେତ୍ରରେ ଓଡ଼ିଶା ମଧ୍ୟ ବହୁ ଆଗରେ। କେନ୍ଦ୍ରାପଡ଼ାର ସାହିତ୍ୟିକ/ ସାହିତ୍ୟିକାମାନେ ବି ଦେଶାତ୍ମବୋଧ କବିତା, ଉପନ୍ୟାସ ଓ ନାଟକ ରଚନା କରିବାରେ ପଛରେ ପଡ଼ିନାହାନ୍ତି। ଏମାନଙ୍କ ମଧ୍ୟରେ ନାରୀକବି କୁନ୍ତଳା କୁମାରୀ ସାବତ, ବିଦ୍ୟୁତପ୍ରଭା ଦେବୀ, ବିପ୍ଳବୀ ଆନନ୍ଦ ଜେନା, ବୈକୁଣ୍ଠନାଥ ବ୍ରହ୍ମଚାରୀ, ରଘୁନାଥ ମହାନ୍ତି, ଘନଶ୍ୟାମ ମିଶ୍ର ପ୍ରମୁଖଙ୍କ ନାମୋଲ୍ଲେଖଯୋଗ୍ୟ।

ଉତ୍କଳଭାରତୀ କୁନ୍ତଳା କୁମାରୀ ସାବତ, ମଧ୍ୟପ୍ରଦେଶର ବସ୍ତର ଅନ୍ତର୍ଗତ ଜଗଦଳପୁର ତାଙ୍କ ଜନ୍ମସ୍ଥାନ, ଶାଶୁଘର କେନ୍ଦ୍ରାପଡ଼ା ନସଡ଼ିପୁର ଗ୍ରାମ। ସ୍ୱାମୀ କୃଷ୍ଣପ୍ରସାଦ ଓରଫ କୃଷ୍ଣପ୍ରସାଦ ବ୍ରହ୍ମଚାରୀ। କୁନ୍ତଳାଙ୍କ ବୃତ୍ତି ସ୍ୱାସ୍ଥ୍ୟସେବା। ମାତ୍ର ନିଶା ସାହିତ୍ୟ ସର୍ଜନା। ସ୍ୱଳ୍ପ ଜୀବନ ପରିଧି ମାତ୍ର ୩୮ ବର୍ଷ ୬ ମାସ ୧୫ ଦିନ। ରାତିର ଗଙ୍ଗଶିଉଳି ପରି ଝରି ପଡ଼ିଲେ କିନ୍ତୁ ଜଣେ ଦକ୍ଷ ଚିକିତ୍ସିକା ଭାବେ ସେ ପରିଚିତା, ସାହିତ୍ୟିକାଭାବେ ବହୁଜନ ବିଦିତା। ତାଙ୍କ ସାହିତ୍ୟକୀର୍ତ୍ତି, କୃତିତ୍ୱ ଅବିଭକ୍ତ କଟକଠାରୁ ଆରମ୍ଭ କରି ରାଜଧାନୀ ଦିଲ୍ଲୀ ଯାଏଁ ପରିବ୍ୟାପ୍ତ। ଠିକ୍ ସେମିତି ତାଙ୍କ କର୍ମମୟ ଜୀବନ। କବି, କଥାକାର, ଔପନ୍ୟାସିକା ଭାବେ ସେ ଚିର ଯଶସ୍ୱିନୀ।

କେବଳ ଫୁଲ, ଫଗୁଣ, ରହସ୍ୟ, ରୋମାଞ୍ଚର କବି କୁନ୍ତଳା ନୁହନ୍ତି, ଜଣେ ଜାତୀୟତାବାଦିନୀ ସ୍ରଷ୍ଟା ଭାବେ ମଧ୍ୟ ସୁବିଦିତା। 'ଅଞ୍ଜଳି', 'ଉଚ୍ଛ୍ୱାସ', 'ଅର୍ଚ୍ଚନା', 'ସ୍ଫୁଲିଙ୍ଗ', 'ଆହ୍ୱାନ', 'ପ୍ରେମ ଚିନ୍ତାମଣି', 'ଓଡ଼ିଆଣୀଙ୍କ କାନ୍ଦଣା', 'ଗଡ଼ଜାତ କୃଷକ' ଆଦି କବିତା ସଂକଳନ ତାଙ୍କ କୃତିତ୍ୱର ସ୍ୱାକ୍ଷର। ଅସମ୍ପୂର୍ଣ୍ଣ କାବ୍ୟ 'ମଣିକାଞ୍ଚନ', ସହ 'ଭ୍ରାନ୍ତି', 'ନଅତୁଣ୍ଡୀ', 'କାଳୀବୋହୂ', 'ପରଶମଣି', 'ରଘୁ ଅରକ୍ଷିତ' ଉପନ୍ୟାସର ସେ ରଚୟିତା। ତାଙ୍କ କବିତା ଓ ଉପନ୍ୟାସ ଆଦି ବହୁ ରଚନାରେ ନାରୀ ଜାଗରଣ, କୁସଂସ୍କାର ଦୂରୀକରଣ, ଅନ୍ୟାୟ ଅତ୍ୟାଚାର ବିରୋଧୀ ସଂଗ୍ରାମର ସ୍ୱର ଅନୁରଣିତ। ତାଙ୍କ ଦେଶ–ଜାତି–ଭାଷା–ପ୍ରୀତି ଅତୀବ ପ୍ରଶଂସନୀୟ। ପରଦାପ୍ରଥା, ବାଲ୍ୟବିବାହ ଉଚ୍ଛେଦ ତତ୍ ସହିତ ବିଧବା ବିବାହ, ନାରୀଶିକ୍ଷା ପ୍ରଚଳନ ଉପରେ ଗୁରୁତ୍ୱ ଦେଇଥିଲେ। ଓଡ଼ିଶା ଦେଶ ମିଶ୍ରଣ ଆନ୍ଦୋଳନ ସମ୍ପର୍କିତ କେତେକ ଲେଖା ତାଙ୍କ ମାତୃଭୂମି ପ୍ରୀତିର ଅମଳିନ ନମୁନା। ଦିଲ୍ଲୀ ତାଙ୍କର ମୁଖ୍ୟ କର୍ମଭୂମି କିନ୍ତୁ ମନ ଗାଁ–ମାଟି–ଜନ ସହ ସଦା ବିଜଡ଼ିତ। ଭାରତୀ, ତପୋବନ ସଂଘ ତଥା ଅନ୍ୟାନ୍ୟ ଅନୁଷ୍ଠାନର ସେ ସଦସ୍ୟା ଥିଲେ। ୧୯୩୨ ମସିହା, କୁନ୍ତଳା ବରେଲିଠାରେ ଆର୍ଯ୍ୟନାରୀ ସମାଜକୁ ଉଦ୍‌ବୋଧିତ କଲେ। ଏଇଟି ଥିଲା ହିନ୍ଦୀରେ ଲିଖିତ ଭାଷଣ। ଲେଖାଟିର ଶିରୋନାମା ନାରୀ ସ୍ୱରାଜ୍ୟ। ବିଭିନ୍ନ ପତ୍ରପତ୍ରିକାରେ ତାଙ୍କ ପ୍ରଶଂସା ଶତ ମୁଖରିତ ହେଲା। ସଂଗଠନ ଅଭିଯୋଗରେ ଫିରିଙ୍ଗି ସରକାର କୁନ୍ତଳାଙ୍କୁ ଗିରଫ କଲା। ଦିଲ୍ଲୀର ପ୍ରଭାବଶାଳୀ ମହିଳାମାନେ ତାଙ୍କୁ ପୁଲିସ କବଳରୁ ଉଦ୍ଧାର କରିଥିଲେ। ପ୍ରତ୍ୟକ୍ଷ ସ୍ୱାଧୀନତା ସଂଗ୍ରାମୀ ନହେଲେ ବି ଆପଣା ଲେଖନୀ ଚଳାଇ ଇଂରେଜ ସରକାର ବିରୋଧରେ ସେ ଦୃଢ଼ ସ୍ୱର ଉତ୍ତୋଳନ କରିଥିଲେ। ତାହା ବାସ୍ତବିକ ଅନନ୍ୟ ଏବଂ ଅସାଧାରଣ ମଧ୍ୟ।

କବି ଗୋଦାବରୀଶ ମହାପାତ୍ର, ପଣ୍ଡିତ ନୀଳକଣ୍ଠଙ୍କ ପରି ପ୍ରାଜ୍ଞ, ବିଜ୍ଞ, ଲବ୍ଧପ୍ରତିଷ୍ଠ ସାରସ୍ୱତ ସାଧକ କୁନ୍ତଳାଙ୍କ ସାହିତ୍ୟର ଉଚ୍ଚ ପ୍ରଶଂସା କରିଥିଲେ। ଏହାଦ୍ୱାରା ସେ ବହୁଭାବରେ ଉତ୍ସାହିତା ହୋଇଥିଲେ। ମୁକ୍ତିସଂଗ୍ରାମ ସାରା ଦେଶରେ ଚହଳ ପକାଇ ଥାଏ। କୁନ୍ତଳା ଗାନ୍ଧୀ ଭାବାଦର୍ଶରେ ଅନୁପ୍ରାଣିତା ହେଲେ। ଅନ୍ୟ ସତ୍ୟାଗ୍ରହୀଙ୍କ ପରି ଖଦଡ଼ ପୋଷାକ ପରିଧାନ କଲେ, ସ୍ୱଦେଶୀ ବସ୍ତୁ ବ୍ୟବହାର କଲେ। ଦେଶବାସୀଙ୍କୁ ସ୍ୱଦେଶୀ ଚିନ୍ତନରେ ଉଦ୍‌ବୁଦ୍ଧ କରିବା ପାଇଁ ଲେଖିଲେ, ସାବରମତୀର ସ୍ୱରାଜ୍ୟ ସୈନିକ/ ଉଠ ଭାରତର ଯୁବକ ନିର୍ଭୀକ/ ଉଠ ଭାରତର ବୀର ପୁତ୍ର ଯାକ / ସେନାପତି ଆଜି ଦେଇଛନ୍ତି ଡାକ। (ଆହ୍ୱାନ)

'ଆହ୍ୱାନ' କବିତା ସଂକଳନରେ ତତ୍କାଳୀନ ଇଂରାଜୀ ଶାସକଙ୍କ ଶୋଷଣ, ଲୁଣ୍ଠନ, ପୀଡ଼ନ, ଦମନ ବିରୋଧରେ କବି ଦେଇଛନ୍ତି ବଜ୍ର ଗମ୍ଭୀର ଆହ୍ୱାନ। ସମକାଳୀନ ରାଜା, ଜମିଦାର, ଗୁମାସ୍ତା, ଅର୍ଦ୍ଧଶିକ୍ଷିତଙ୍କ ମଧ୍ୟରୁ ଅନେକ ଥିଲେ ବ୍ରିଟିଶମାନଙ୍କ ପଦଲେହନକାରୀ। ଇଂରେଜମାନେ ଏହାର ଭରପୂର ଫାଇଦା ନେଲେ। ଅଧିକରୁ ଅଧିକ ତାଙ୍କ ଆଡ଼କୁ ଆକୃଷ୍ଟ କରିବାକୁ ବିଭିନ୍ନ ପ୍ରକାର ଉପାଧି ବାଣ୍ଟିଲେ। ଥୋକେ ଏହାକୁ କିଣିବାକୁ ପ୍ରତିଦ୍ୱନ୍ଦ୍ୱିତାରେ ମାତିଲେ। ଦେଶବାସୀଙ୍କର ଏ ପ୍ରକାର ରୁଗ୍‌ଣ ମାନସିକତା ସ୍ୱାଧୀନଚେତା କୁନ୍ତଳାଙ୍କୁ ବ୍ୟଥା ଦେଲା। ଏହାକୁ ବିରୋଧ କରି ବ୍ୟଙ୍ଗାତ୍ମକ କବିତାମାନ ଲେଖିଲେ, ଏଥିରେ ଥିଲା ବିଦେଶୀ ଶାସକଙ୍କ ପାଇଁ ଭୟଙ୍କର ଆକ୍ରୋଶ। 'ଆହ୍ୱାନ'ର ବିପ୍ଳବୀସ୍ୱର ଖୁବ୍ ତୀବ୍ର ଥିଲା। ଇଂରେଜ ସରକାର ତାକୁ 'ବାଜ୍ୟାପ୍ତି' କରିଦେଲେ।

ଦଳିତ, ପତିତ, ଲାଞ୍ଛିତ ପାଇଁ କୁନ୍ତଳାଙ୍କ ଦରଦୀ ହୃଦୟ କାନ୍ଦି ଉଠିଥିଲା। ସେମାନଙ୍କ ଦୁଃଖର କରୁଣ ରାଗିଣୀ ଝଙ୍କାର ତୋଳିଛି 'ସ୍ଫୁଲିଙ୍ଗ' କବିତା ସଂକଳନରେ। ତାଙ୍କ ମନୋବଳକୁ ଦୃଢ଼ କରିବାକୁ କବି ସତତ୍ ଚେଷ୍ଟିତା। ସାଧାରଣ ମଣିଷକୁ ସମାଜରେ ସର୍ବୋଚ୍ଚ ଆସନ ଦେବାକୁ ମଧ୍ୟ ଯତ୍ନଶୀଳା। ସେଇମାନଙ୍କ ଉଦ୍ଦେଶ୍ୟରେ ଲେଖିଲେ, ଶୁଣ ହେ ମଣିଷ ଭାଇ/ ଝୁରି ମରିବାକୁ / ଡରି ମରିବାକୁ, ମଣିଷ ଜନମି ନାହିଁ। କୁନ୍ତଳାଙ୍କ ମାତୃଭୂମି ଉତ୍କଳ ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା। ସେ ପ୍ରାଚୀନ ଉତ୍କଳର ଗତ ଗୌରବ, ହୃତ ଗୌରବ, ମୃତ ଗୌରବକୁ ପୁନଃ ଜନମାନସରେ ଜାଗରିତ କରିବାକୁ ଉଦ୍ୟମ କରିଛନ୍ତି। ଇଂରେଜ ଶାସକଙ୍କ ଅଧୀନସ୍ଥ ଉତ୍କଳର ଦୁର୍ଦ୍ଦଶା ତାଙ୍କୁ ମ୍ରିୟମାଣ କରିଛି, ଯଥା– ନବିଳସେ ଆଉ ଓଡ଼ିଆ ତରୀ / ଘନ ନୀଳ ନୀର ଚିଲିକା ଲହରୀ/ ଧଳାପାଗ ତୋଳି ସେ ତୋଳି / ନ ଆଣେ ରତନ ପାରାବାରେ / ଜାଭା ବାଲି ଲଙ୍କା ବୋର୍ଣ୍ଣିଓ ବିଜୟ/ ଭୁଲିତ ଗଲାଣି ଓଡ଼ିଆ ତୁମର / ହର୍ଷ ହୁଳହୁଳି ବନ୍ଦାପନା ଥାଳି/ ନଦିଏ ସାଧବ ବୋହୂ ପରଶି। (ଅର୍ଚ୍ଚନା)। ଶୋଷକ ଶୋଷିତ

ମଧ୍ୟରେ ବ୍ୟବଧାନ ସାମାଜିକ ବିଭ୍ରାଟ ସୃଷ୍ଟି କରେ । ସମାଜରେ ସମତା ଆଣିବାକୁ କବି ଲେଖନୀ ଚଳାଏ । ଏଥିରୁ ମଧ୍ୟ କୁନ୍ତଳା ବାଦ୍ ଯାଇ ନାହାନ୍ତି । ଲେଖିଛନ୍ତି, ବୋଲାଉଚ ବାବୁ ବସି ଉଚ୍ଚ ଆସନରେ / ଲାଜ ଲୁଚାଇ କିନ୍ତୁ ମୋ ଦଉ ବସନରେ / ମୋ ଦରି ଅଶନ ପୁଣି ନିୟତ ଭୋକ / ତୁଙ୍ଗ ପ୍ରାସାଦରେ ତୁମ୍ଭେ, ତଳେ ମୋ ଦରବ । ତରୁଣ କୁଳକୁ ଜାଗ୍ରତ, ଉତିଷ୍ଠ କରିବା ପାଇଁ କବି ଆପଣାର ସ୍ଫୁଲିଙ୍ଗ କବିତା ସଙ୍କଳନକୁ ସେମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି । କ୍ଷୁଦ୍ର ଏହି ସ୍ଫୁଲିଙ୍ଗ କ୍ଷୁଦ୍ର ଅନଳ କଣିକା / କ୍ଷୀଣ ପ୍ରାଣ ନାହିଁ ସୂର୍ଯ୍ୟତେଜ ଶିଖା / ତରୁଣ ଉତ୍କଳ ସୁତଙ୍କର କମଳରେ/ ଅର୍ପିଲି ଆନନ୍ଦ ଶ୍ରଦ୍ଧା ସୁଧା ସ୍ନେହଭରେ/ ହେଉ ସେହି କ୍ଷୁଦ୍ର ହେଉ ଅତି ହୀନମାନ/ ଛୁଇଁବ ଯଦି ସେ ମୋର ଭ୍ରାତା ଭଗ୍ନି ପ୍ରାଣ / ଜାଳିବ ଯଦି ସେ ଚିତ୍ତେ ଦେଶପ୍ରେମ ବହ୍ନି / ସାର୍ଥକ ମଣିବି ସୁଖେ ଅୟସ ଲେଖନୀ ।

କେବଳ କବିତାରେ ନୁହେଁ, ଗଦ୍ୟ ରଚନାରେ ବି କୁନ୍ତଳାଙ୍କର ସଂସ୍କାରବାଦୀ ତଥା ଜାତୀୟତାବାଦୀ ଚିନ୍ତନ ପ୍ରକଟିତ । ବାଲ୍ୟବିବାହ ବିରୋଧରେ ଏକ ତୀବ୍ର ପ୍ରତିବାଦ 'କାଳୀବୋହୂ' ଉପନ୍ୟାସ । ଔପନ୍ୟାସିକାଙ୍କ ଭାଷାରେ ଧୂଳିଖେଳ ଭିତରେ ଯାହାର ଜୀବନ ଗତି କରୁଛି ସେ ସମାଜ ଓ ପାରିବାରିକ ବନ୍ଧନ ବିଷୟରେ ସଚେତନ ହେବ ବା କିପରି ? କେବଳ ବାଲ୍ୟବିବାହର ବିରୋଧ ନୁହେଁ, ବିଧବା ବିବାହ ସପକ୍ଷରେ ବି ଯୁକ୍ତି ବାଢ଼ିଛନ୍ତି । 'ନଅତୁଣ୍ଡୀ' ଉପନ୍ୟାସରେ କୁନ୍ତଳାଙ୍କ ଆଦର୍ଶ, ଜାତୀୟତାବୋଧ ପ୍ରକଟିତ । ଏଥିରେ ଗାନ୍ଧିଜୀଙ୍କ ଅସ୍ପୃଶ୍ୟତା ନିବାରଣ ବାର୍ତ୍ତାଟିର ସଫଳ ରୂପାୟନ ଦେଖିବାକୁ ମିଳେ । ସମାଜର ତଥାକଥିତ ନିମ୍ନବର୍ଗର ମଣିଷଙ୍କ ଉଦ୍ଦେଶ୍ୟରେ ସେ ଲେଖିଛନ୍ତି, ହେଇତ ଦେଖ ଏ ଯେଉଁ ହାଡ଼ି, ପାଣ, କମାରକୁ ଆମେ ଛୋଟ ଜାତି କହୁଛେଁ, ତାଙ୍କୁ ଖାଲି ଛୁଇଁଲେ ମାରା ହୋଇ ଯାଉଛେ, ଭାବିଲା ବେଳକୁ ତାଙ୍କ କାମଟା କିଏ ତୁଲାନ୍ତା ? ଆମ ଏତେ ଉପକାରୀ ମଣିଷଙ୍କୁ ଜାତି ପାଟକରୁ ଅଲଗା ରଖି ଛୁଆଁ ଛୁଆଁ ରଡ଼ି ଛାଡ଼ିଲେ ହେବ ? ଏଇଟା ବିଧାତା ସହିବଟି ? କୁନ୍ତଳାଙ୍କ ଦିଲ୍ଲୀ ଚିଠିଗୁଡ଼ିକରେ ଅନେକତ୍ର ଓଡ଼ିଆ ପୁଅର ଗରିୟାନ ଅତୀତ କଥା ଚିତ୍ରିତ । ତତ୍ ସହିତ ଅଖଣ୍ଡ ଉତ୍କଳ ଗଠନ ପାଇଁ ସେ ଦେଇଛନ୍ତି ଆହ୍ୱାନ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣ ପାଇଁ ମଧ୍ୟ ବାର୍ତ୍ତା ଦେଇଛନ୍ତି । ସିଂହଭୂମି, ମେଦିନୀପୁର, ଜୟପୁର, ଫୁଲଝର, କାନ୍ଥି, ବସ୍ତର– ଏସବୁ ଖାଣ୍ଟି ଓଡ଼ିଆ ଅଞ୍ଚଳ ମିଶ୍ରଣରେ ବିଶାଳ ଓଡ଼ିଶା ଗଠନ ସମ୍ଭବ ହେବ – ଏହା ତାଙ୍କର ମତ ଥିଲା । ତାଙ୍କ ବକ୍ତବ୍ୟ ମଧ୍ୟ ଏ ଦିଗରେ ଅତି ସ୍ପଷ୍ଟ, 'ଓଡ଼ିଶା' ଶବ୍ଦ ଉଠାଇ 'ଅଙ୍ଗ କଳିଙ୍ଗ' ଲେଖିବାକୁ ପରାମର୍ଶ ଦେଇ ଲେଖିଛନ୍ତି, ଅଙ୍ଗ ବଙ୍ଗ ତୈଲଙ୍ଗ ଆଗେ/ ଉତ୍କଳର ତୂର୍ଯ୍ୟନାଦ ଶୁଣାଅ ସରାଗେ । ପ୍ରତିଟି ଜାତୀୟତାବାଦୀ ସାହିତ୍ୟିକ ସଦାସର୍ବଦା ଆଶାବାଦୀ । କୁନ୍ତଳା ମଧ୍ୟ ଆଶା ପୋଷଣ କରିଛନ୍ତି, ସେଦିନ ଶୀଘ୍ର ଆସିବ । ଉତ୍କଳ ଧନ, ଜନ, ଲକ୍ଷ୍ମୀର ଭଣ୍ଡାର ହେବ । ତାଙ୍କରି ଭାଷାରେ ଆମେ କଳିଙ୍ଗର ବୀରଶ୍ରୀ ସନ୍ତାନ / ବୀରଶ୍ରୀ ଆମର ଜାତୀୟ ସମ୍ମାନ/ ବୀରଶ୍ରୀ ଜଗତେ ଆମ ଜୟ ଧ୍ୱଜା / ଭାରତର ପ୍ରତି ପ୍ରାନ୍ତେ ପାଉ ପୂଜା ।

କୁନ୍ତଳା ଥିଲେ ସ୍ୱାଧୀନ ଚେତା ଓ ନିର୍ଭୀକା । ସେ ଜାତୀୟତାବାଦୀ କବିତା, ଗଦ୍ୟ ରଚନା ମାଧ୍ୟମରେ ହଜାର ହଜାର ଦେଶପ୍ରେମୀ ସୃଷ୍ଟି କରି ଯାଇଛନ୍ତି । ଶାସନର ନାଲିଆଖି, ଲୋକକୁହାକୁ ଭ୍ରୂକ୍ଷେପ କରିନାହାନ୍ତି, ଶୁଣାଇଛନ୍ତି ଆପଣା ଅନ୍ତର କଥା । କୋଇ ସୁନେ ଅଗର ନ ସୁନେ ୟେ ଗାନ୍ / କୋଇ କରେ ମାନ୍ ଅଥବା ଅପମାନ୍/ ମୁଝେ ଉସ୍ ମେ କ୍ୟା ହେଁ ମୈ ତୋ ମତବାଲି / ଭରିହୁଇ ଦିଲ୍‌କୀ ପାନୀ କରୁଁ ଖାଲି ।

ବାସ୍ତବିକ ସେ ଉତ୍କଳ ଭାରତୀ, 'ଓଡ଼ିଶାର ବୁଲ୍‌ବୁଲ୍' । ତାଙ୍କ ଜାତୀୟତାବାଦୀ କୀର୍ତ୍ତି ଓ କୃତିତ୍ୱ ପାଇଁ କେନ୍ଦ୍ରାପଡ଼ା କାହିଁକି ସାରା ଦେଶ ଧନ୍ୟ ନିଶ୍ଚୟ !

ସା/ପୋ: ପୁରୁଷୋତ୍ତମପୁର
କେନ୍ଦ୍ରାପଡ଼ା – ୭୫୪୨୨୩





# ମହାନ ସ୍ୱାଧୀନତା ସଂଗ୍ରାମୀ ସୁନାରାମ ସୋରେନ

**ଠାକୁରଦାସ ହାଁସଦାଃ**

ସୁନାରାମ ସୋରେନ ମୟୂରଭଞ୍ଜ ଜିଲ୍ଲା, ବାମନଘାଟି ଉପଖଣ୍ଡ ଅନ୍ତର୍ଗତ ରାଇରଙ୍ଗପୁର ସନ୍ନିକଟ ହେସ୍‌ଲା ଗ୍ରାମରେ ତା.୪–୨–୧୯୧୮ ରିଖ ସୋମବାର ଦିନ ସନ୍ଧ୍ୟା ସମୟରେ ପିତା ଚାମ୍ପାଇ ସୋରେନ ଓ ମାତା ଦୁର୍ଗୀ ସୋରେନଙ୍କ ଔରସରୁ ଭୂମିଷ୍ଠ ହୋଇଥିଲେ । ପିତା ଚାମ୍ପାଇ ସୋରେନ ସେହି ଅଂଚଳର ଜଣେ ନାମୀଦାମୀ, ଧନୀ ଓ ବଡଚାଷୀ ସହିତ ମୟୂରଭଞ୍ଜ ମହାରାଜାଙ୍କ ରାଜଦରବାର କଚେରିର ଜଣେ କର୍ମଚାରୀ ଥିଲେ । ଏହି ଦମ୍ପତିଙ୍କର ସମୁଦାୟ ୧୧ଟି ସନ୍ତାନ ଭିତରେ ୭ଟି ପୁତ୍ର ଓ ୪ ଗୋଟି ଝିଅ ମଧ୍ୟରୁ ସୁନାରାମ ସୋରେନ ହେଲେ 'ଜେଠା ହପନ୍' ତଥା ବଡପୁଅ । ବାଲ୍ୟ ସମୟରେ ସୁନାରାମ ସୋରେନଙ୍କ ଜୀବନର ଏକ ଅଲୌକିକ କାହାଣୀ ରହିଛି । ଆଷାଢ଼ ମାସରେ ମାଆ ରେଜା ମୁଲିଆଙ୍କ ସାଥୀରେ ନିଜ ବିଲ ବଛା କାମ କରୁଥିବା ସମୟରେ ସେହି ହେସ୍‌ଲା ଗ୍ରାମର ଜଣେ ମହିଳା ଏକ ଅଭୁତପୂର୍ବ ବିଶାଳକାୟ ନାଗ ସାପ ଫଣା ଟେକି ବାଳକ ସୁନାରାମକୁ ଖରାଦାଉରୁ ରକ୍ଷା କରିବାର ଦୃଶ୍ୟ ଦେଖିଥିଲେ । ପିତା ଚାମ୍ପାଇ ସୋରେନ ଏକଥା ଜାଣି କିଛି ବୃଦ୍ଧ, ପଣ୍ଡିତ ଓ ଜ୍ଞାନୀ ଲୋକମାନଙ୍କୁ ପଚାରି ବୁଝିବାରୁ ଲୋକେ କହିଲେ, ପିଲାଟି ଦିନେ ବଡ ମଣିଷ ହେବ ଏବଂ ନିଜ ଜୀବନରେ ଉନ୍ନତି କରିବା ସହିତ ଦେଶର ଯଶ ମଧ୍ୟ ରଖିବ ବୋଲି ସମସ୍ତେ ମତ ଦେଇଥିଲେ ।

ସୁନାରାମ ସୋରେନ୍ ୧୯୨୭ ମସିହାରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ, ଲାଉଜଳା (ନାଉଯୋଡା) ଗ୍ରାମଠାରେ ପାଠପଢ଼ା ଆରମ୍ଭ କରିଥିଲେ । ଏହାପରେ, ସେ ୧୯୨୯ ମସିହାରେ Bahalda M.E. Schoolଠାରେ U.P.School ଏବଂ M.E School ପାଠପଢ଼ା ଅଧ୍ୟୟନ କରି ୧୯୩୩ ମସିହାରେ ସେ ସପ୍ତମ ଶ୍ରେଣୀ ପାଠପଢ଼ା ସାରି ଥିଲେ । ସେ ସମୟରେ, ବାମନଘାଟି ଅଂଚଳରେ ଉଚ୍ଚ ବିଦ୍ୟାଳୟ ପାଠପଢ଼ା ନଥିବାରୁ ମୟୂରଭଞ୍ଜର ସଦର ମହକୁମା ବାରିପଦାକୁ ପାଠ ପଢ଼ିବା ପାଇଁ ଗଲେ । ମୟୂରଭଞ୍ଜ ସେତେବେଳେ ଏକ ରାଜ୍ୟ ଥିଲା ଏବଂ ମୟୂରଭଞ୍ଜ ରାଜ୍ୟର ରାଜା ଏହାକୁ ଶାସନ କରୁଥିଲେ । ୧୯୩୩ ମସିହାରେ ମୟୂରଭଞ୍ଜ ରାଜ୍ୟର ରାଜଧାନୀ 'ବାରିପଦା'ଠାରେ ଥିବା M.K.C. High Schoolରେ ପାଠ ପଢ଼ିଲେ ଏବଂ ୧୯୩୭ ମସିହାରେ ସୁନାରାମ ସୋରେନ ଭଲ ନମ୍ବର ରଖି ଉଚ୍ଚ ବିଦ୍ୟାଳୟ ପରୀକ୍ଷାରେ ପାଶ୍ କଲେ । ଏହାପରେ ରାଜଧାନୀ, କଟକ ସହରରେ ଅବସ୍ଥିତ ରେଭେନ୍ସା ମହାବିଦ୍ୟାଳୟରେ କଳା ଛାତ୍ର ଭାବରେ ମହାବିଦ୍ୟାଳୟ ଛାତ୍ରାବାସରେ ରହି ପାଠ ପଢ଼ିଲେ । ୧୯୪୨ ମସିହାରେ ରେଭେନ୍ସା ମହାବିଦ୍ୟାଳୟରୁ ବି.ଏ ପାଶ୍ କରିବା ପରେ ଏବଂ ୧୯୪୪ ମସିହାରେ ମଧୁସୂଦନ ଆଇନ ମହାବିଦ୍ୟାଳୟରୁ ଓକିଲାତି ଡିଗ୍ରୀ ହାସଲ କଲା ପରେ ସୁନାରାମ ସୋରେନ ପାଠପଢ଼ା ସମାପନ କରିଥିଲେ । ପାଠପଢ଼ା ସମାପ୍ତ କରି, ସୁନାରାମ ସୋରେନ୍ ବାରିପଦା ସଦରମହକୁମା କଚେରିରେ ଓକିଲାତି କଲେ । ସୁନାରାମ ସୋରେନ ଜଣେ ସାଧାରଣ ବାରିଷ୍ଟର ବ୍ୟକ୍ତିତ୍ୱ ନଥିଲେ, ସେ ବାରିପଦାରେ ବାରିଷ୍ଟର ଥିଲାବେଳେ ଆଦିବାସୀ ଲୋକମାନଙ୍କର ମାମଲା ମକଦ୍ଦମାକୁ ଲଢ଼ିବା ପାଇଁ କୌଣସି ଦେୟ ନନେଇ ସେ ବିଜୟୀ ହେଉଥିଲେ । ଏହିଠାରେ ଗୋଟିଏ ବର୍ଷ ଓକିଲାତି ଭଲଭାବରେ କଲାପରେ, ସମାଜ ମଙ୍ଗଳ କାମ ପାଇଁ ମନ ବଳାଇ ଓକିଲାତି

ବୃତ୍ତିକୁ ବର୍ଜନ କରି ଓଡିଶା ଆଦିବାସୀମାନଙ୍କର ସମାଜ ମଙ୍ଗଳ କାମରେ ନିଜକୁ ବ୍ୟକ୍ତିଗତ ଭାବରେ ସମର୍ପଣ କରି ନେତୃତ୍ୱ ନେଲେ ।

ଏହି ସମୟରେ ମୟୂରଭଞ୍ଜ ରାଜ୍ୟରେ ପଣ୍ଡିତ ରଘୁନାଥ ମୁର୍ମୁ ଓ ତାଙ୍କ ସାଥୀଙ୍କ ସହିତ ରାଜ୍ୟସାରା ଆଦିବାସୀ ସାନ୍ତାଳ ସମ୍ପ୍ରଦାୟର ନିଜସ୍ୱ ଭାଷା ଓ ଲିପି ପ୍ରଚଳନ ନିମନ୍ତେ ଦେଶସାରା 'ଲିପି ଶିକ୍ଷା ସଂଗ୍ରାମ' ଚଳେଇ ଥିଲେ । ଏହାକୁ ସାନ୍ତାଳି ଭାଷାରେ 'ଅଲ୍‌ହୁଲ୍' କୁହାଯାଏ । ୧୯୪୦ ମସିହା ଜୁନ ମାସ ୧୫ ତାରିଖ ରଜ ସଂକ୍ରାନ୍ତି ପରବର୍ତ୍ତୀ ଦିନ 'ଅଲ୍‌ସମିତି'ର ଏକ ଜନସାଧାରଣ ସଭା ରାଇରଙ୍ଗପୁର ନିକଟସ୍ଥ ଡାଣ୍ଡବୁସ୍ ଗ୍ରାମରେ ହୋଇଥିଲା । ଏହି ବୈଠକରେ ସଭାପତିତ୍ୱ କରିଥିଲେ ଶ୍ରୀଯୁକ୍ତ ସୁନ୍ଦର ମୋହନ ହେମ୍ବ୍ରମ, ମୁଖ୍ୟ ଅତିଥି ଭାବରେ ଥିଲେ– ଶ୍ରୀଯୁକ୍ତ ସମ୍ବା ଚରଣ ଟୁଡୁ ଓ ସଭାର ଅନ୍ୟାନ୍ୟ ଦାୟିତ୍ୱ ବୁଝୁଥିଲେ ନିଜେ ପଣ୍ଡିତ ରଘୁନାଥ ମୁର୍ମୁ । ଏହି ସଭାରେ ସୁନାରାମ ସୋରେନ୍ ଯୋଗଦେଇ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓ ଦେଇଥିବା ଅଲ୍‌ଚିକି ଲିପି ପ୍ରଚଳନ ଆବେଦନ ପତ୍ରର ଜବାବ୍ ସମସ୍ତ ଜନସାଧାରଣଙ୍କ ଆଗରେ ପଢି ଶୁଣାଇ ଥିଲେ । ଏହା ପରେ ସେ ନିଜ ଜାତି, ସମାଜ, ଧର୍ମ, ଭାଷା, ସଂସ୍କୃତି ଓ ଶିକ୍ଷା ଆଦିର ବିକାଶ ଓ ସୁରକ୍ଷା ଦେବା ପାଇଁ ତାଙ୍କ ଅଭିଭାଷଣରେ ସମସ୍ତଙ୍କୁ ଏକଜୁଟ ହୋଇ ଦଳବଳ ଭାବେ ସଂଗ୍ରାମ କରିବାକୁ ପଡିବ ବୋଲି କହିଥିଲେ । ଏହିଠାରେ ଶିକ୍ଷିତ ଓ ଧନୀ ଆଦିବାସୀ ଲୋକମାନଙ୍କୁ ଜାଗ୍ରତ କରିବା ପାଇଁ ସାନ୍ତାଳି ଭାଷାର ଜାଗରଣ ସଂଗୀତ (ଚିର୍‌ଗାଲ୍ ଆଳାଂ) ମଧ୍ୟ ଗାଇ ଶୁଣାଇ ଥିଲେ ।

ସେହି ଜାଗରଣ ସଂଗୀତଟି ଏହିପରି ଥିଲା –

ଧନ୍ ଦୁରିବ୍ କିଶାଣ୍ ହଲ୍ କ,
ଆକିଲ୍ ଗେୟାନ୍ ସେୟାନ୍ ହଲ୍ କ,
ନୁନାଃଚେପେ ନିର୍‌ମାୟାଃ
ଅଲ୍‌ଚିକି, ଜାତି, ଧରମ୍ ଲାଗିଦ୍ – (୧)
ଜାତି, ଧରମ୍ ଲଃ କାନା,
ସନେର୍ ଚିକି ତାବନ୍ ଲଃ କାନା,
ବାଚେପେ ଞେଜେଲ୍ କାନା, ତରଜ୍ ଚାବାଃ କାନା–(୨)

ଓଡିଆ ଅନୁବାଦ –

ଧନ ସମ୍ପତ୍ତି ଧନୀ ଲୋକମାନେ,
ବୁଦ୍ଧି, ଜ୍ଞାନୀ ଓ ଶିକ୍ଷିତ ଲୋକମାନେ,
ତୁମେ ସବୁ ଏତେ କି ନିଷ୍ଠୁର
ଅଲଚିକି, ଜାତି ଓ ଧର୍ମ ପାଇଁ– (୧)
ଜାତି, ଧର୍ମ ଜଳି ଯାଉଛି,
ସୁନାଲିପି ତମର ଜଳି ଯାଉଛି,
ଦେଖିପାରୁନ କି, ତାହା
ଜଳି ଭସ୍ମ ହୋଇଯାଉଛି – (୨)

– *ସୁନାରାମ ସୋରେନ୍*

ସୁନାରାମ ସୋରେନଙ୍କର ଏ ଥିଲା ଛାତ୍ର ତଥା ଯୁବକ ସମୟର ପ୍ରଥମ ଜନସାଧାରଣ ସଭା ଯେଉଁଠି ସେ ତାଙ୍କର ବହୁ ମୂଲ୍ୟବାନ ଜନ ଜାଗରଣ ସଂଗୀତ ଓ ଚେତନା ଆହ୍ୱାନ ବଳରେ ସାନ୍ତାଳି ସମାଜରେ ଥିବା ଧନୀ ଓ ଶିକ୍ଷିତ ଯୁବଜନତାଙ୍କୁ ଏକତ୍ରିତ ଓ ଜାଗ୍ରତ କରିପାରିଥିଲେ । ବିଂଶ ଶତାବ୍ଦୀର ଠିକ୍ ମଧ୍ୟଭାଗରେ ଓଡିଶା ସମେତ ବିହାର ଓ ପଶ୍ଚିମବଙ୍ଗ ରାଜ୍ୟରେ ଆଦିବାସୀ ଲୋକମାନେ ଏକତ୍ରିତ ହୋଇ ଆଦିବାସୀ ମହାସଭା ନାମରେ ମୁଣ୍ଡ ଟେକିଥିଲେ । ଭାରତରେ ଇଂରେଜମାନେ ଆସି ଆମ ଭାରତୀୟମାନଙ୍କ ଉପରେ ନାନା ପ୍ରକାର ଅନ୍ୟାୟ ଅତ୍ୟାଚାର କଲେ ଓ ଆମ ଦେଶକୁ ଶାସନ କଲେ, ସେତେବେଳେ ଭାରତର ପ୍ରତ୍ୟେକ ସ୍ଥାନରେ ଛୋଟବଡ ବିଦ୍ରୋହୀ ଗୋଷ୍ଠିମାନ ବିଦେଶୀ ଶାସନ ବିରୁଦ୍ଧରେ ଗଢିଉଠି ଦେଶ ସ୍ୱାଧୀନ ପାଇଁ ସଂଗ୍ରାମ କରିଥିଲେ । ସେହି ସଂଗ୍ରାମୀ ଗୋଷ୍ଠିମାନଙ୍କ ମଧ୍ୟରୁ ମୟୂରଭଞ୍ଜ ରାଜ୍ୟର 'ଓଡିଶା ଆଦିବାସୀ ମହାସଭା' ଅନ୍ୟତମ । ଓଡିଶାଠାରୁ ସେତେବେଳେ ମୟୂରଭଞ୍ଜ ଅଲଗା ଏକ ବ୍ରିଟିଶ ଶାସିତ ଦେଶ ଓ ପରେ ଗଡଜାତ ରାଜ୍ୟ ଭାବରେ ରହିଥିଲା । ଇଂରେଜ୍‌ମାନଙ୍କର ଜୁଲମ୍ ଓ ଶାସନ ଓଡିଶାରେ ଥିବା ଅଧିକାଂଶ ଗଡଜାତ ରାଜ୍ୟମାନଙ୍କରେ ଚାଲିଥିଲା । ଇଂରେଜମାନଙ୍କ ଅଧୀନରେ ଥାଇ ଗଡଜାତ ରାଜ୍ୟଗୁଡିକ ରାଜା ଓ ମହାରାଜାମାନେ ଶାସନ କରୁଥିଲେ ସତ କିନ୍ତୁ ବାସ୍ତବରେ, ନିଜର ପ୍ରିୟ ଓ ବନ୍ଧୁ ପରିଜନମାନଙ୍କର କଥାକୁ ମଧ୍ୟ ସେମାନେ ଠିକ୍ ଭାବରେ ବୁଝିପାରୁ ନଥିଲେ ।

୧୯୪୬ ମସିହାରେ 'ଓଡିଶା ଆଦିବାସୀ ମହାସଭା' ଗଠନ ହେଲା ଯାହାର ନେତୃତ୍ୱ ନେଲେ ମହାନ୍ ଆଦିବାସୀ ନେତା ଓ ସ୍ୱାଧୀନତା ସଂଗ୍ରାମୀ ବାରିଷ୍ଟର, ସୁନାରାମ ସୋରେନ୍ । ଏହାର ସଭାପତିତ୍ୱ ଓ ମୂଳ ନେତୃତ୍ୱ ଦାୟିତ୍ୱରେ ରହିଲେ ନିଜେ ସ୍ୱୟଂ ବାରିଷ୍ଟର, ସୁନାରାମ ସୋରେନ ଏବଂ ଉପ–ସଭାପତି ପଦରେ ରହିଲେ ମହେନ୍ଦ୍ରନାଥ ମୁର୍ମୁ । ଓଡ଼ିଶା ଆଦିବାସୀ ମହାସଭା ଏକ ସ୍ୱତନ୍ତ୍ର ସବୁଜ ରଙ୍ଗର ପତକା ବ୍ୟବହାର କରୁଥିଲା, ଯାହାକୁ ସାନ୍ତାଳି ଭାଷାରେ 'ଆଦିବାସୀ ଲିଲ୍ ଝାଣ୍ଡି' କୁହାଯାଏ । ୧୯୪୬ ମସିହାରୁ ୧୫–୮–୧୯୪୭ ମସିହା ପର୍ଯ୍ୟନ୍ତ ସୁନାରାମ ସୋରେନ 'ଓଡିଶା ଆଦିବାସୀ ମହାସଭା' ଜରିଆରେ ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ ଚଳାଇଥିଲେ। ସ୍ୱାଧୀନତା ପରେ ଭାରତରୁ ଇଂରେଜ ଶାସନର ଅନ୍ତ ଘଟିବା ଫଳରେ ଓଡିଶା ଆଦିବାସୀ ମହାସଭା ମୟୂରଭଞ୍ଜ ଗଡଜାତ ରାଜ୍ୟ ମହାରାଜ ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କ ରାଜ ଦରବାରରେ ଏକ ଆଦିବାସୀ ରାଜ୍ୟ ପ୍ରଦାନ କରିବାର ଦାବି ଉପସ୍ଥାପନ କରିଥିଲା । ମୟୂରଭଞ୍ଜ ଗଡଜାତ ରାଜ୍ୟର ଆଦିବାସୀ ଲୋକମାନେ ଚାହୁଁଥିଲେ ଏକ ସ୍ୱତନ୍ତ୍ର ଆଦିବାସୀ ରାଜ୍ୟ ଗଠନ ହେଉ । ଏକ ସ୍ୱତନ୍ତ୍ର ଆଦିବାସୀ ରାଜ୍ୟ ଗଠନ ହେଲେ, ସେମାନେ ସ୍ୱାଧୀନ ଭାବରେ ଜୀବନଯାପନ କରିପାରିବେ, ନିଜ ମାତୃଭୂମି, ନିଜ ଜାତିର ସମାଜ, ସଂସ୍କୃତି, ପରମ୍ପରା, ଭାଷା ଓ ଲିପି ଆଦିକୁ ରକ୍ଷା କରିବା ସହିତ ଏ ସମସ୍ତର ଉନ୍ନତି, ବିକାଶ ଓ ଅଗ୍ରଗତି ସେମାନେ କରିପାରିବେ ।

ଓଡିଶା ଆଦିବାସୀ ମହାସଭା ମାଧ୍ୟମରେ ଜନସାଧାରଣଙ୍କୁ ସଚେତନ କରାଇବା ପାଇଁ ବିଭିନ୍ନ ସଭା, ସମିତି ଆୟୋଜନ କରି ଆଦିବାସୀ ଗ୍ରାମଗୁଡିକର ମୁଖିଆ, ପାର୍ନିକ, ପାର୍ଗାନା, ଘାଟ୍ ପାର୍ଗାନା, ଦେଶ୍ ପାର୍ଗାନା, ନାୟକେ ଆଦିମାନଙ୍କର ସହଯୋଗିତାରେ ଗାଁ, ହାଟ, ସହର, ବଜାର, ମେଳା, ଯାତ୍ରା, ପର୍ବପର୍ବାଣି ଓ ପରମ୍ପରା ଆଦି ବିଭିନ୍ନ ସ୍ଥାନ ଓ ସମୟରେ ନାଚ, ଗୀତ, ନାଟକ, ପରିବେଷଣ, ଭାଷଣ ଓ ଆଲୋଚନା ସମ୍ପାଦନ କରି ସୁନାରାମ ସୋରେନ୍ ତାଙ୍କ ସାଥୀମାନଙ୍କ ସହିତ ଜନସାଧାରଣମାନଙ୍କୁ ଏକତ୍ରିତ କରି ଜନଜାଗରଣ ସୃଷ୍ଟି କରିପାରି ଥିଲେ । ସମସ୍ତ ସାନ୍ତାଳି ଯୁବକ, ଯୁବତୀ, ବୃଦ୍ଧ, ବୃଦ୍ଧା ଲୋକମାନଙ୍କ ପାଖରେ ସୁନାରାମ ସୋରେନ ପ୍ରିୟପାତ୍ର ହୋଇପାରିଥିଲେ । ନାଚ, ଗୀତ, ଗପ, କାହାଣୀ, କଥାର ନଥା ଓ ପ୍ରବଚନ ମାଧ୍ୟମରେ ଲୋକମାନେ ତାଙ୍କ କଥାର ସ୍ୱାଦ ଚାଖିପାରି ତାଙ୍କ ପଛରେ ଧାଁ ଦଉଡ଼ କରୁଥିଲେ । ସେ ତାଙ୍କର ମନ ମତାଣିଆ ଓ ମନଗଢ଼ାଣିଆ କଥା ଓ ବୋଲିଗୁଡିକ ଆଦିବାସୀ ଲୋକମାନଙ୍କୁ ବେଶ୍ ମନମୁଗ୍ଧ କରିବାରେ ସମ୍ଭବପର ହୋଇପାରୁଥିଲା ଏବଂ ଲୋକେ ତାଙ୍କୁ ଅନେକ ପସନ୍ଦ କରୁଥିଲେ । ମୟୂରଭଞ୍ଜ ରାଜ୍ୟ ସାରା ତାଙ୍କରି ଗୀତ, କଥା, କଥାର ନଥା, ବୋଲି, କାହାଣୀ ଓ ଗପ ସାନ୍ତାଳି ଲୋକମାନେ ସବୁ ଜାଗାରେ ଗାଉଥିଲେ । ରାଜ୍ୟସାରା ତାଙ୍କରି କଥାରେ ଯାଦୁ କୁହୁକ ପରି ଖୁସିର ଲହରି ଛୁଟିଥିଲା, ଯାହାଫଳରେ ଲୋକମାନେ ଦିନରାତି ସୁଖ ଶାନ୍ତିରେ କାଳାତିପାତ କରୁଥିଲେ । ସେଇଥି ପାଇଁ ଦେଶବାସୀ ମଧ୍ୟ ତାଙ୍କରି ପ୍ରିୟ ନେତାଙ୍କୁ 'ରୁସିକା ସୁନାରାମ ସୋରେନ' ବୋଲି ଶ୍ରଦ୍ଧା ନାମରେ ଡାକୁଥିଲେ ।

ସୁନାରାମ୍ ସୋରେନଙ୍କ ବ୍ୟକ୍ତିତ୍ୱ ଓ ଭାବମୂର୍ତ୍ତିକୁ ବିଚାରିଲେ ଜଣାଯାଏ, ସୁନାରାମ ସୋରେନ୍‌ଙ୍କର ଦେହର ରଙ୍ଗ ଶ୍ୟାମଳ ବର୍ଣ୍ଣ, ଦୀର୍ଘକାୟ ଉଚ୍ଚତା, ମୋଟା ଓ ହୃଷ୍ଟପୁଷ୍ଟ ଦେହ, ବାହୁ ଦ୍ୱୟ ମଜବୁତ୍ ଓ ଗୋଲାକାର ମୁହଁ ସହିତ ଲମ୍ୱାନାକ, ସୁନ୍ଦର ଚକ୍ଷୁ ଓ ମୁଖରେ ମଧୁର ବଚନଧାରୀ ଏକ ମହାମାନବ । ସେ ଯେତେବେଳେ ଚାଲୁଥିଲେ ଏକ ବିଶାଳ ହାତୀ ଚାଲିଲା ପରି ପରିଲକ୍ଷିତ ହେଉଥିଲେ । ପୋଷାକ ଥିଲା ତାଙ୍କର ଧଳାସାର୍ଟ ଓ କଳାପ୍ୟାଣ୍ଟ୍ ସହିତ ଚିତା ବାଘ ଛାଲିରେ ତିଆରି ହୋଇଥିବା ଜାକେଟ୍ ଓ ମୁନିଆ ବୁଟ୍ ଜୋତା । ଏହିପରି ଏକ ବିଶାଳ ଓ ଭୟଙ୍କର ଚିତାବାଘ ପୋଷାକଧାରୀ ଶ୍ୟାମଳ ବର୍ଣ୍ଣ ହୃଷ୍ଟପୁଷ୍ଟ ସମ୍ପନ୍ନ ଆଦିବାସୀ ଲୋକଙ୍କୁ ହଠାତ୍ ଜଣେ କେହି ଦେଖିଲା ମାତ୍ରକେ ଚମକିଯାଇ ଡରି ଯାଉଥିଲା । ଏହି ଚିତାବାଘ ପୋଷାକ ଓ ବୁଟ୍ ଜୋତାକୁ ବିଶୋଇ ବ୍ଲକ ଅନ୍ତର୍ଗତ ଛାଟାଣ୍ ଗ୍ରାମର ଜଣେ ନିପୁଣ ଚମଡା କାରିଗର ଶତ୍ରୁଘନ ମାଝି ତିଆରି କରିଥିଲେ । ଓଡ଼ିଶା ଆଦିବାସୀ ମହାସଭାର ମହାନେତା ସୁନାରାମ ସୋରେନ ବିଭିନ୍ନ ସଭା, ସମିତି ଓ ସମ୍ମିଳନୀମାନଙ୍କରେ ଅତିଥିବେଳେ ଫୁଲର ହାର ପରିବର୍ତ୍ତେ ଫଳର ହାର ଦେଇ ତାଙ୍କୁ ସ୍ୱାଗତ ସମ୍ବୋଧନା ଦିଆଯାଉଥିଲା । ଏହି 'ଫଳହାର'କୁ ସାନ୍ତାଳି ଭାଷାରେ 'ଯଓ ପଲ୍‌ହ କଲ୍ ପାକଲ୍

ହାର୍‌ମାଲା' କୁହାଯାଏ । ସୁନାରାମ ସୋରେନ ତାଙ୍କ ବ୍ୟକ୍ତିତ୍ୱରେ ସଚ୍ଚୋଟପଣିଆ ଓ ଦେବତୁଲ୍ୟ ପ୍ରତିମୂର୍ତ୍ତି ଦେଖିବାକୁ ମିଳିଥାଏ । ଦୀନ ଦୁଃଖୀନୀର ସାଥୀ ଠାରୁ ଆରମ୍ଭକରି ସୁନାରାମ୍ ସୋରେନ୍ ରାଜାରାଜୁଡା, ମନ୍ତ୍ରୀ, ମହାପୁରୁଷ, ସଖା ଓ ପଣ୍ଡିତ ସମସ୍ତଙ୍କ ପାଖରେ ସେ ପ୍ରିୟପାତ୍ର ହୋଇ ପାରିଥିଲେ ।

ମୟୂରଭଞ୍ଜର ସାନ୍ତାଳି ଲୋକମାନେ ଅନେକ ସମୟରେ ନିଜ ପରିବାର, ଜ୍ଞାତି କୁଟୁମ୍ବ, ସାଥି ଓ ସମ୍ପର୍କୀୟ ଲୋକମାନଙ୍କ ସହିତ ମଉଜ ମଜ୍‌ଲିସ୍ କରିବା ପାଇଁ ନିଜ ନିଜର ଅଂଚଳ ମାନଙ୍କରେ ଯାତ୍ରା, ପାତା(ମେଳା), ବିର୍‌ବୁରୁ ସେନ୍ଦ୍ରା, ତାମ୍‌ସା ଓ ଝାପନ ଆୟୋଜନ କରି ଆଡ଼ମ୍ବରେ ପାଳନ କରିଥାନ୍ତି । ଆଦିବାସୀ ସାନ୍ତାଳ ଲୋକମାନେ ଏପରି ସପ୍ତାହ ଯାକ ଯଦି ନାଚ ଗୀତରେ ହିଁ ବୁଡିକି ରହିବେ ତାହେଲେ ସାନ୍ତାଳି ସମାଜ ଭାସି ଯିବ ବୋଲି ସୁନାରାମ ସୋରେନ ଅନୁଭବ କଲେ ତେଣୁ, ଏହାକୁ ରୋକିବା ଉଦ୍ଦେଶ୍ୟରେ ତାଙ୍କ ନିଜ ଅନ୍ତରଙ୍ଗ କରୁଣାକର ହେମ୍ବ୍ରମ୍‌ଙ୍କ ସହିତ ୧୯୪୮ ମସିହାରେ ଯାତ୍ରା ଓ ମେଳା ବର୍ଜନ କରିବା ଉଦ୍ଦେଶ୍ୟରେ ଏକ ଆହ୍ୱାନ ଦେଲେ । ଏହାକୁ ସାନ୍ତାଳି ଭାଷାରେ 'ଯାତ୍ରା ପାତା ବାଗି ଗିରା' କୁହାଯାଏ ।

ସେହି ଆହ୍ୱାନଟି ଥିଲା –

'ଯାତ୍ରା ପାତା ବଂଗା ବୁରୁ ଦ ହୁୟୁଃ ଗେୟା, ମେନଖାନ–
ମଣେ ସଞ୍ଜି ମେଣେଞ୍ଜିଦା ପାତା ଏନେଜ,
ପାତା ଟାଣ୍ଡିରେ ପାର୍‌ୱା ଞ୍ଜୁ ଦ ମାନା ଗେୟା'

ଅର୍ଥାତ୍– 'ଯାତ୍ରା ଓ ମେଳାମାନଙ୍କରେ ପୂଜା ପାଠ କରାଯିବ, କିନ୍ତୁ ପାଂଚ ଦିନ ପାଂଚ ରାତି ମେଳା ନାଚ (ପାତା ଏନେଜ୍) ପଡିଆରେ ମଦ ପିଇବା ନିଷେଧ ଅଟେ' । ମଦ୍ୟପାନ ଓ ମାତାଲ ହୋଇ ନାଚିବା ବିରୁଦ୍ଧରେ ତାଙ୍କର ଏହି କଠୋର ନୀତି ଓ ଆହ୍ୱାନ ଅବଲମ୍ବନ କରିବା ଫଳରେ ଆଦିବାସୀମାନଙ୍କୁ ସେ ଜାଗ୍ରତ କରିପାରିଥିଲେ ଏବଂ ସେମାନେ ସୁନାରାମ ସୋରେନଙ୍କୁ ସମର୍ଥନ ଦେଇ ଦେଶ ପାଇଁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଥିଲେ । ଏହି ଆହ୍ୱାନ ଓ ମଦ ନିଷେଧ ଉପରେ ବାରିଷ୍ଟର ସୁନାରାମ ସୋରେନ୍ ଦୁଇଟି ବହି ମଧ୍ୟ ରଚନା କରିଥିଲେ, ସେ ଦୁଇଟି ପୁସ୍ତକ ହେଲା (୧) ଯାତ୍ରା ପାତା ବାଗି ଗିରା ଓ (୨) ଭଞ୍ଜ୍ କଙ୍କା କୁଙ୍କି । ତାଙ୍କରି ଆହ୍ୱାନ ଓ ବାରଣ ନୀତିକୁ ସ୍ୱାଗତ ଜଣାଇ ସାନ୍ତାଳ ସମ୍ପ୍ରଦାୟର ଲୋକମାନେ ଯାତ୍ରା ଓ ମେଳା କରିବା ବନ୍ଦ କଲେ ଏବଂ ସେମାନେ ଦେଶ ପାଇଁ ସଂଗ୍ରାମରେ ମିଶିଥିଲେ । ସମଗ୍ର ମୟୂରଭଞ୍ଜ ଦେଶରେ ଆଦିବାସୀ ସଂଗ୍ରାମ ସୁନାରାମ ସୋରେନଙ୍କ ନେତୃତ୍ୱରେ ଚାଲିଥିଲା ଏବଂ ଏହାର ପଡୋଶୀ ରାଜ୍ୟ କେନ୍ଦୁଝର, ବାଲେଶ୍ୱର, ମିଦନାପୁର, ସିଂହ୍‌ଭୁମ, ସାନ୍ତାଳ ପାର୍ଗାନା, ଡୁମ୍‌କା ଆଦି ଦେଶ ପ୍ରଦେଶରେ ତାଙ୍କ ନେତୃତ୍ୱର ସମର୍ଥନ ଓ ଭରସା ରହିଥିଲା ।

ଆଦିବାସୀ ଜାତି ଏକ ପବିତ୍ର ଜନଜାତି । ନିଜ ଧନ ଜୀବନ, ସମାଜ, ସଂସ୍କୃତି, ଭାଷା, ନାଚ, ଗୀତ, ପର୍ବ, ପର୍ବାଣି, ପରମ୍ପରା, ଚଳଣି, ପ୍ରଥା, ବେଶଭୁଷା, ଖାଦ୍ୟପେୟ, ସାମାଜିକ ନୀତି ନିୟମ ଓ ଶିକ୍ଷା ଆଦି ସହିତ ନିଜ ମାତୃଭୂମିକୁ କିଭଳି ବିଦେଶ ଗୋଲାମରୁ ମୁକ୍ତି ମିଳିପାରିବ ଏବଂ ଦେଶ ସ୍ୱାଧୀନ ହେବ । ସେଥିପାଇଁ ସମସ୍ତ ହିନ୍ଦୁ, ଖ୍ରୀଷ୍ଟିୟାନ ଓ ସାର୍ନା ସମ୍ପ୍ରଦାୟର ଆଦିବାସୀ ଓ ଅଣଆଦିବାସୀ ଲୋକମାନେ ନିଜ ଜାତି, ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ସଂଘବଦ୍ଧ ହୋଇ ମିଳିମିଶ ଏହି 'ଆଦିବାସୀ ମହାସଭାର ମହାସଂଗ୍ରାମ' ରେ ଯୋଗଦେଇ ଥିଲେ ।

ସୁନାରାମ ମୟୂରଭଞ୍ଜ ଗଡଜାତ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କ ରାଜ ଦରବାରରେ ଏକ ଆଦିବାସୀ ରାଜ୍ୟ ପ୍ରଦାନ ଦାବି ଉପସ୍ଥାପନ କରିଥିଲେ । ମୟୂରଭଞ୍ଜ ମହାରାଜ ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ଏବଂ ପ୍ରଜାମଣ୍ଡଳ ସରକାର ମୁଖ୍ୟ ଶରତ ଚନ୍ଦ୍ର ଦାସ ଦେଶ ସାମିଲ ରାଜିନାମା ସ୍ୱାକ୍ଷର ଓଡିଶା ଆଦିବାସୀ ମହାସଭାର ମହାନେତା ବାରିଷ୍ଟର ସୁନାରାମ ସୋରେନଙ୍କୁ ଅତ୍ୟନ୍ତ ନିରାଶ ଓ ହତଭାଗା କରିଦେଇଥିଲା । ସେ ଉପାୟ ଶୂନ୍ୟ ହୋଇଗଲେ କାରଣ– ସେ ମୟୂରଭଞ୍ଜ ଦେଶକୁ ଏକ ସ୍ୱତନ୍ତ୍ର ସ୍ୱାଧୀନ ଓ ସାର୍ବଭୌମ କ୍ଷମତା ପ୍ରାପ୍ତ କରାଇ ଥିବା ସ୍ୱପ୍ନ ପାଣି ଫୋଟକା ପରି କ୍ଷଣିକ ଭିତରେ ଫାଟି ଯାଇଥିଲା । ମୟୂରଭଞ୍ଜ ଦେଶକୁ ଏକ ଆଦିବାସୀ ଦେଶରେ ପରିଣତ କରିବା ସ୍ୱପ୍ନ ସାକାର ହୋଇପାରିଲା ନାହିଁ । ପ୍ରଜାମଣ୍ଡଳ ସରକାରର ଦୁର୍ନୀତିଗ୍ରସ୍ତ ଓ ଅପାରଗତା ହୋଇ ନଥିଲେ ମହାରାଜା ଏପରି କୋଠର ନୀତି ଅବଲମ୍ବନ କରିନଥାନ୍ତେ । ମହାରାଜା ପ୍ରଜା ବିରୋଧୀ ନଥିଲେ ମାତ୍ର ପ୍ରଜା

ମଣ୍ଡଳ ସରକାର ମୁଖ୍ୟ 'ଗାନ୍ଧୀ ସ୍ମାରକ ନିଧି' ହେରଫେର କରିବା ଫଳରେ ସେ ନିଜ ସରାକାରୀ ସଚିବ ଓ ଦପ୍ତରୀମାନଙ୍କୁ ବେସରକାରୀ ଓ ଅସାମାଜିକ ଲିପ୍ତ କାର୍ଯ୍ୟରୁ ଦମନ କରିପାରିଲେ ନାହିଁ, ଯାହାଫଳରେ ପ୍ରଜାମଣ୍ଡଳ ସରକାର ପ୍ରଜା ବିରୋଧୀ ହୋଇ ଏପରି ସ୍ଥିତି ହୋଇଥିଲା ।

ମୟୂରଭଞ୍ଜ ରାଜ୍ୟ କଂଗ୍ରେସ ଦଳର ବିଦ୍ରୋହ, ଓଡିଶା ଆଦିବାସୀ ମହାସଭାର ବିପ୍ଳବ ଏବଂ ପାଇକ ବିଦ୍ରୋହ ଯୋଗୁଁ ପ୍ରଜାମଣ୍ଡଳ ସରକାର ଶାସନଭାର ଦିନକୁ ଦିନ ଅତି ଖରାପ ଆଡକୁ ଗତି କରି ଅତିଷ୍ଠ ହୋଇ ଯାଇଥିଲା । ଏହାକୁ ଦେଖି ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ଓ ପ୍ରଜାମଣ୍ଡଳ ସରକାର ମୁଖ୍ୟ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସଙ୍କ ସହିତ ନୂଆଦୀଲ୍ଲିକୁ ଗସ୍ତ କଲେ ଏବଂ ତା. ୧୬–୧୦–୧୯୪୮ରିଖ ଦିନ ଭାରତ ସରକାରଙ୍କ ସହିତ ମୟୂରଭଞ୍ଜ ଦେଶ ସାମିଲ ହେବା ଚୁକ୍ତି ସ୍ୱାକ୍ଷର କରିଥିଲେ । ଏହି 'ଦେଶ ସାମିଲ ରାଜିନାମ ସ୍ୱାକ୍ଷର' ହେବା ଫଳରେ ମୟୂରଭଞ୍ଜ ଦେଶରୁ ସବୁଦିନ ପାଇଁ ପ୍ରଜାମଣ୍ଡଳର ସରକାର ଶାସନ କଳ ଅନ୍ତ ଘଟିଥିଲା ।

୧୯୪୮ ମସିହା ନଭେମ୍ବର ମାସରେ ଭାରତ ସରକାର ମୟୂରଭଞ୍ଜ ଦେଶକୁ ଏକ କମିଶନର ପଠାଇଲେ । D.V. Rege, ଏହି କମିଶନର ମୁଖ୍ୟ ଥିଲେ । ମୟୂରଭଞ୍ଜ ଦେଶର ସବିଶେଷ କମିଶନ ରିପୋର୍ଟ ଭାରତ ମନ୍ତ୍ରଣାୟକୁ ଦାଖଲ କଲା ପରେ ଭି.ପି. ମେନନ୍ Indian Civil Servant, Officer ୧୯୪୮ ମସିହା ଡିସେମ୍ବର ମାସ ୧୬ ତାରିଖ ଦିନ ମୟୂରଭଞ୍ଜ ପ୍ରଜାମଣ୍ଡଳ ବିଧାନ ସଭା, ବାରିପଦାକୁ ଆସିଲେ । ମୟୂରଭଞ୍ଜର ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ଓ ପ୍ରଜାମଣ୍ଡଳ ସରକାର ଲୋକପ୍ରତିନିଧିମାନଙ୍କ ସଭା ସମ୍ମୁଖରେ ଭି.ପି. ମେନନ୍ ଭାରତ ସରକାରଙ୍କର କମିସନର ରିପୋର୍ଟ ଉପରେ ଦେଇଥିବା ରାୟକୁ ଆନୁଷ୍ଠାନିକ ଭାବରେ ଘୋଷଣା କଲେ– 'ମୟୂରଭଞ୍ଜ ଏକ ଅଲଗା ଆଦିବାସୀ ରାଜ୍ୟ ହୋଇପାରିବ ନାହିଁ' । Menon ସମସ୍ତ ଉପସ୍ଥିତ ସଭା ମଣ୍ଡଳୀ ସମ୍ମୁଖରେ ସୁନାରାମ ସୋରେନଙ୍କୁ ଅପମାନ ଦେଇ ଇଂରାଜୀ ଭାଷାରେ ଏହିପରି କହିଥିଲେ –

"The real leader is not the man who can address large public meetings but the man who can do something for the betterment of his fellowmen. Tasted by that standard the Adivasi leaders have failed in their duties".

ଆଦିବାସୀମାନେ କାଳେ ହିଂସ୍ରହୋଇ ଆକ୍ରମଣ କରିପକାଇ ଦେବେ, ସେଥିପାଇଁ ମେନନ୍ ଡରି ଯାଇଥିଲେ ଏବଂ ଆଦିବାସୀମାନଙ୍କୁ ଖୁସି କରିବା ପାଇଁ ପୁଣି ସେ ଏହିପରି କହିଥିଲେ –

"The Government of India and the Government of Orissa will see that the lot of Adivasis have improved and every fair chance will be given to them".

ଏହିପରି ମନ୍ତବ୍ୟ ଦେଲା ପରେ, ମେନନ୍ ପରିଶେଷରେ ଘୋଷଣା କଲେ କି, ଆଗାମୀ ଜାନୁଆରୀ ମାସରେ ମୟୂରଭଞ୍ଜ ଦେଶ ଓଡିଶା ପ୍ରଦେଶରେ ମିଶିଯିବ ।

ଏହା ଘୋଷଣା କରିବା ମାତ୍ରକେ, ସୁନାରାମ ସୋରେନଙ୍କ ନେତୃତ୍ୱରେ ଥିବା ଆଦିବାସୀ ନେତାମାନେ କମ୍ପି ଉଠିଥିଲେ । ସେମାନେ ମେନନଙ୍କ ଘୋଷଣା ଉପରେ ଅସନ୍ତୋଷ ପ୍ରକାଶ କରି ବିଦ୍ରୋହୀ ହୋଇ ଉଠିଥିଲେ । ଏହାପରେ ସୁନାରାମ ସୋରେନ ବାରିପଦା ପୋଲିସ ପଡିଆଠାରେ 'ପେ–ସିଞ୍ଜ–ପେ–ଞିଦା ଆଦିବାସୀ ହୁଲ ମିଦୁନ୍' (ତିନିଦିନ–ତିନିରାତି ଆଦିବାସୀ ସଂଗ୍ରାମ ସଭା) ର ଆହ୍ୱାନ ଦେଇଥିଲେ । ଓଡିଶା ଆଦିବାସୀ ମହସଭାର ମହାନେତା ସୁନାରାମ୍ ସୋରେନ୍ ଆଦିବାସୀ ଲୋକମାନଙ୍କୁ ଆଦିବାସୀ ଯୋଦ୍ଧା 'ଖେରୱାଲ୍ ବୀର୍' ସାଜି ଦେଶ ପାଇଁ ଲଢ଼ିବାକୁ ଆହ୍ୱାନ ଦେଲେ । ଆଦିବାସୀ ନେତା ସୁନାରାମ ସୋରେନ ଓ ରାମଚନ୍ଦ୍ର ହେମ୍ବ୍ରମ୍ ଦୁହେଁ ହାତ ମିଳାଇ– 'ମୟୂରଭଞ୍ଜର ଉପଖଣ୍ଡ ବାମନଘାଟିକୁ ସବ୍–ଡିଭିଜନ ସ୍ୱାଧୀନ ଭାବରେ ରହି ଏହାର ମୁଖ୍ୟ କାର୍ଯ୍ୟାଳୟ ରାଇରଙ୍ଗପୁର ରହୁ' ବୋଲି ଦୃଢ଼ ଦାବି ଉପସ୍ଥାପନ କରି ଘୋଷଣା କରିଥିଲେ ।

ସୁନାରାମ ସୋରେନଙ୍କ ନେତୃତ୍ୱରେ 'ଭୂ ଦାବି ସଂଗ୍ରାମ'କୁ ତୀବ୍ର କଲେ ଏବଂ ଅସଂଖ୍ୟ ପରିମାଣରେ ଆଦିବାସୀମାନେ ତାଙ୍କର ପାରମ୍ପରିକ ବ୍ୟବହୃତ ଅସ୍ତ୍ରଶସ୍ତ୍ର ଧନୁତୀର, ଟାଙ୍ଗିଆ, ଦାଆ, ହାତୁଡି, କୋଦାଳ, ଶାବଳ, ଫାର୍ସା, ବର୍ଚ୍ଛା ଓ ଖଣ୍ଡା ଆଦି ସାଥିରେ ଧରି ଚାରିଆଡୁ ଅସଂଖ୍ୟ

ଆଦିବାସୀ ଲୋକମାନେ ବାରିପଦା ପୋଲିସ୍ ପଡିଆକୁ ମାଡି ଆସିଲେ । ଏତେ ପରିମାଣରେ ଲୋକ ମାରଣାସ୍ତ୍ର ଧରିଥିବାରୁ ବାରିପଦା ସହର ଜନଜୀବନ ଅସମ୍ଭାଳ ହୋଇ ପଡିଥିଲା । ଆଦିବାସୀମାନଙ୍କୁ ଆଦିବାସୀ ଯୋଦ୍ଧା 'ଖେରଓ୍ୱାଲ୍ ବୀର୍' ରୂପରେ ଦେଖି ମୟୂରଭଞ୍ଜ ସରକାର ଥରହର ହୋଇ ୧୪୪– ଧାରା ରାଜ୍ୟରେ ଜାରି କଲେ, ଫଳରେ ଆଦିବାସୀ ମହାସଭାରେ ଭୂ–ଦାବି ସଂଗ୍ରାମରେ ନେତୃତ୍ୱ ନେଉଥିବା ନେତାମାନଙ୍କୁ ବନ୍ଦୀ କରିବା ଉଦ୍ଦେଶ୍ୟରେ ସରକାର କଡା ନଜର ରଖିଲେ । ଏହିପରି ଭାବରେ ସୁନାରାମ ସୋରେନଙ୍କ ନେତୃତ୍ୱରେ ଓଡିଶା ଆଦିବାସୀ ମହାସଭାର ଭୂ–ଦାବିକୁ ମେନନ୍ ମନା କରିଦେବା ଫଳରେ 'ଆଦିବାସୀ ଭୂ–ଦାବି ମହାସଂଗ୍ରାମ' ଅନ୍ତ ଘଟି 'ଦେଶରକ୍ଷା ପାଇଁ ଲଢେଇ'ର ସୂତ୍ରପାତ ହୋଇଥିଲା । ଏହି 'ଦେଶରକ୍ଷା ପାଇଁ ଲଢେଇ'ର ମୂଳ ଉଦ୍ଦେଶ୍ୟ ରହିଥିଲା– ମୟୂରଭଞ୍ଜ ରାଜ୍ୟରୁ 'ବାମନଘାଟି ଉପଖଣ୍ଡ ଅଲଗା ଭାବରେ ରହୁ ଏବଂ ଏହାର ସଦର ମହକୁମା 'ରାଇରଙ୍ଗପୁର' ରଖାଯାଉ' ।

ରାଜ୍ୟ ସାରା ଦିନ ରାତି ଚାରିଆଡେ ଦେଶପାଇଁ ବିପ୍ଳବ ଦେଖା ଦେଲା । ଆମ୍ବାଳାକଚା ଏକ ଲୁଚା ଓ ଜଙ୍ଗଲିଆ ଜାଗା ହୋଇଥିବାରୁ ସେଠାକୁ ମିଲିଟାରୀ ସେନାମାନେ ସହଜରେ ଯାଇପାରିବେ ନାହିଁ । ତେଣୁ ସେଠାରେ ଆଦିବାସୀ ନେତାମାନେ ନିର୍ଭୟଭାବେ ବସି ସଭାକରି ଆଲୋଚନା କରିପାରିଲେ ଏହାକୁ 'ଆମ୍ବାଳାକଚା ଦିଶମ୍ ଦୁଃ ମିଦୁନ୍' ବୋଲି କୁହାଯାଏ । ଏହାପରେ, ଜାନୁମଘୁଟୁ ପଟାରୀ ପଡିଆଠାରେ ଆଦିବାସୀ ଯୋଦ୍ଧା 'ଖେରଓ୍ୱାଲ୍ ବୀର୍' ଓ ମିଲିଟାରୀ ସୈନ୍ୟଙ୍କ ମଧ୍ୟରେ ଲଢ଼େଇ ହୋଇଥିଲା । ଏହାକୁ ସାନ୍ତାଳି ଭାଷାରେ 'ଜାନୁମଘୁଟୁ ପଟାରୀ ଫାଇରିଂ' କୁହାଯାଏ । ଏହିଠାରେ ଲଢ଼େଇ କରି ଜଣେ ସାନ୍ତାଳି ଲୋକ ମିଲିଟାରୀ ଗୁଳି ବାଜି ମୃତ୍ୟୁବରଣ କରିଥିଲା । ଏଠାରେ ଥିବା ଏକ ବିରାଟ ବଡ ପୋଖରୀ କଡରେ ମିଲିଟାରୀ ସୈନ୍ୟ ଛିଡା ହୋଇଥିବାରୁ ଏହି ପୋଖରୀକୁ 'ଦିକୁ ଆହାର୍' ବୋଲି କୁହାଯାଏ । କେହି କେହି ଜାନୁମଘୁଟୁ ଗ୍ରାମକୁ 'ଫାଇରିଂ ଜାନୁମ୍ଘୁଟୁ' ବୋଲି ମଧ୍ୟ କହିଥାନ୍ତି । ଏହାପରେ, ତିରିଂ, ମାରାଂବୁଣ୍ଡୁ, ଦେଓପାଟା ଆଦି ସ୍ଥାନମାନଙ୍କରେ ସୁନାରାମ ସୋରେନ ଓ ଅନ୍ୟ ପୁରୁଖା ଆଦିବାସୀ ନେତାମାନଙ୍କ ସାଥିରେ ଦେଶ ରକ୍ଷା ସଭା 'ଦିଶମ୍ ଦୁଃ ମିଦୁନ୍' କରିଥିଲେ । ଆଦିବାସୀ ନେତାମାନେ ଯେପରି ଏକାଠି ମିଶି ନ ପାରିବେ ଏବଂ କୌଣସି ଦଳ ଗଠନ କରି ନପାରିବେ, ସେଥିପାଇଁ ସେମାନଙ୍କୁ ଦେଖିଲା ମାତ୍ରକେ ବନ୍ଦୀ କରାଯିବା ପାଇଁ ଚାରିଆଡେ ଗୋଇନ୍ଦା ବିଛେଇ ଦିଆଯାଇଥିଲା । ଏହି ଗୋପନକଥାକୁ ଆଦିବାସୀ ମହାନେତାମାନେ ଜାଣିପାରିବାରୁ ସେମାନେ ତାଙ୍କର ମୂଳ ନାମକୁ ବଦଳାଇ 'ଠାର ନାମ'ରେ ଡକାଡକି ହେଉଥିଲେ ସେତେବେଳେ ଆଦିବାସୀ ମହାନେତା (ମାରାଂ ଗମ୍‌କେ) ସୁନାରାମ ସୋରେନଙ୍କ ନାମ ଥିଲା 'ପୁଟୁକ୍ ସିଂ' ଏବଂ ସେ ଏହି ଠାର ନାମରେ ଡକା ହେଉଥିଲେ ।

ଆଦିବାସୀ ମହାସଭାରେ ଯୋଜନା ମୁତାବକ 'କୁନ୍ଦୁଲିଆ' ଗ୍ରାମଠାରେ ଏକ ସଂଗ୍ରାମ ସଭା କରିବା ପାଇଁ ଅନେକ ଆଦିବାସୀ ଲୋକମାନେ ଏକତ୍ରିତ ହେବାର କାର୍ଯ୍ୟକ୍ରମ ରହିଥିଲା । ମାତ୍ର ଏହା ଗୁଇନ୍ଦାମାନଙ୍କଠାରୁ ଖବର ପାଇ ଜିଲ୍ଲାପାଳ ଓ ଏସ୍.ପିଙ୍କ ନିର୍ଦ୍ଦେଶ କ୍ରମେ ପୋଲିସ କୌଣସିମତେ ନେତାମାନଙ୍କୁ ବନ୍ଦୀ କରିବା ପାଇଁ ଚେଷ୍ଟା ଚଳାଇଲେ । ଫଳରେ ଆଦିବାସୀମାନଙ୍କର ନେତା ସୁନାରାମ ସୋରେନଙ୍କୁ ତା.୪–୨–୧୯୪୯ରିଖ ଶୁକ୍ରବାର ଦିନ ରାତିରେ ବନ୍ଦୀ କଲେ । ଅନ୍ୟ ନେତାମାନଙ୍କୁ ସଭାସ୍ଥଳକୁ ଆସିବା ବାଟରୁ ହିଁ ଧରି ନେଲେ । ଓଡିଶା ଆଦିବାସୀ ମହାସଭାରେ ନେତାଙ୍କୁ ବନ୍ଦୀ କଲା ପରେ ମଧ୍ୟ ଆଦିବାସୀ ସଂଗ୍ରାମ ଜାରି ରହିଥିଲା । ୧୯୪୯ ମସିହା ଫେବୃଆରୀ ମାସ ୫ ତାରିଖ ଦିନ ରାଇରଙ୍ଗପୁର ସନ୍ନିକଟ 'ବାଇଦାପସି' ଗ୍ରାମ ପଡିଆରେ ପୋଲିସ ଜଗୁଆଳି ଆଉ ମିଲିଟାରୀ ଗାଡି ଚଳପ୍ରଚଳ ଦେଖି ସଭାକାର୍ଯ୍ୟକୁ 'ଗୁଣ୍ଡୁରିଆ' ଗ୍ରାମ ମଝି ବିଲକୁ ସ୍ଥାନାନ୍ତରିତ କରି ଏହାର ପରବର୍ତ୍ତୀ ତା. ୬–୨–୧୯୪୯ରିଖ ଦିନ ନିର୍ଦ୍ଧାରିତ କରାଗଲା । ଆଦିବାସୀମାନେ ନିଜର ପାରମ୍ପରିକ ସଦା ବ୍ୟବହୃତ ଅସ୍ତ୍ରଶସ୍ତ୍ର ଧନୁତୀର, ଟାଙ୍ଗିଆ, କଟୁରୀ, ଦାଆ, ଫାର୍ସା, ବର୍ଛା, ଖଣ୍ଡା, ଠେଙ୍ଗା ଆଦି ଧରି ଚାରି ଦିଗରୁ ଲୋକମାନେ ଆସି ଗୁଣ୍ଡୁରିଆ ଗ୍ରାମର ପ୍ରହ୍ଲାଦ ମହାନ୍ତ ବିଲ ପଡିଆରେ ପ୍ରାୟ ଲକ୍ଷାଧିକ ଲୋକ ଆସି ରୁଣ୍ଡ ହୋଇଥିଲେ । ରାଜ୍ୟରେ ୧୪୪– ଧାରା ଜାରି ହୋଇଥିବାରୁ ସଭାକାର୍ଯ୍ୟ କରିବାକୁ ପୋଲିସ ମନା କରୁଥିଲେ, ମାତ୍ର ଲୋକମାନେ ବିଚଳିତ ନହୋଇ

ସଭାକାର୍ଯ୍ୟ ଜାରି ରଖିବାରୁ, ପୋଲିସ ତିନିଥର ଧୁଆଁ ଫାଇରିଂ କଲାପରେ ଗୁଳିବର୍ଷଣ କରିଦେଲା, ଯାହା ଫଳରେ ଅନେକ ଲୋକମାନେ ଫାଇରିଂ ଓ ଦଳା ଚକଟାରେ ମୃତ୍ୟୁବରଣ କରିଥିଲେ । ଏହାକୁ ସାନ୍ତାଳି ଭାଷାରେ 'ଗୁଲି ଗୁଣ୍ଡୁରିଆ, ଗୁଣ୍ଡୁରିଆ ଗଜ୍‌ଟାଣ୍ଡି, ଗୁଣ୍ଡୁରିଆ ଗପଜ୍‌ଟାଣ୍ଡି ଓ ଗୁଣ୍ଡୁରିଆ ହୁଲ୍ ଡାହି' ଆଦିରେ ନାମରେ ଆଖ୍ୟାଦେଇ ଶହୀଦ୍ ଦିବସ 'ହୁଲ୍ ମାହା' ପ୍ରତିବର୍ଷ ପାଳନ କରାଯାଉଅଛି ।

ଆଦିବାସୀ ନେତା ସୁନାରାମ ସୋରେନଙ୍କୁ ବାରିପଦା କେନ୍ଦ୍ରୀୟ କାରାଗାରକୁ ମିଲିଟାରୀ ଗାଡିରେ ନିଆଯାଇ ଏକ ଅନ୍ଧାର କୋଠରି ଭିତରେ ବନ୍ଦୀ କରି ରଖାଗଲା । କାରାଗାରରେ ଥିବା ବେଳେ କୌଣସି କାରଣ ବଶତଃ ସୁନାରାମ ସୋରେନ ବିକୃତ ମସ୍ତିଷ୍କ ହେବା ଫଳରେ ତାଙ୍କୁ Central Institute of Psychiatry, Ranchi ନିଆଯାଇ ସେଠାରେ ଚିକିତ୍ସା କରାଗଲା । ସେହିଠାରୁ ଭଲ ହେଲାପରେ ତାଙ୍କୁ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଆଦିବାସୀ ନେତା ଜୁଲିୟସ୍ ତିଗା ଓ ତାଙ୍କ ସହ–ଧର୍ମିଣୀ ସୁନାରାମ ସୋରେନଙ୍କୁ ରାଂଚିରୁ ନିଜ ଘର ଗାଁ ହେସ୍‌ଲାକୁ ଆଣି ଛାଡି ଥିଲେ । ସୁନାରାମ ସୋରେନ ବାରିପଦା ସର୍କଲ ଜେଲ ଓ ରାଂଚି ପାଗଳ ଖାନାରୁ ଭଲହୋଇ ନିଜ ଗାଁ ହେସ୍‌ଲାକୁ ଫେରିଆସିଲା ଭିତରେ ପ୍ରାୟ ପାଖାପାଖି ୨ବର୍ଷ ବିତି ଯାଇଥିଲା । ଏହି ମହାନ ଆଦିବାସୀ ନେତା ସୁନାରାମ ସୋରେନ ଜେଲ ଗଲାବେଳେ ଗୋଟିଏ କଥା କହିଥିଲେ –

'ତିନ୍ ଭୁର୍ ଜିହଲ୍ ରିଞ୍ଜ୍ ତାହେଁନା, ଉନ୍ ଭୁର୍ ସେର୍ମାରେ,
ଭୁର୍କାଃ ଇପିଲ୍ ବାୟ୍ ରାକାବ୍ ଆ' ।

ଅର୍ଥାତ୍ – ମୁଁ ଯେତେଦିନ କାରାଗାରରେ ରହିବି ସେତେଦିନ ଆକାଶରେ ଶୁକ୍ରତାରା ଦେଖାଯିବ ନାହିଁ । ବାସ୍ତବରେ ଏହି ମହାନ ସ୍ୱାଧୀନତା ସଂଗ୍ରାମୀ ତଥା ନେତା ସୁନାରାମ ସୋରେନ ଜେଲ ଗଲା ବେଳେ କହିଥିବା କଥା ଅନୁସାରେ ମୟୂରଭଞ୍ଜବାସୀ ସୁନାରାମ ସୋରେନ୍ ତାଙ୍କ କାରାବାସ ସମୟ ଭିତରେ ଆକାଶରେ ଶୁକ୍ରତାରା ଦେଖାଯାଇ ନଥିଲା । ଏହା ଏକ ଅଲୌକିକ କାହାଣୀ ବୋଲି ମଧ୍ୟ ମନେ ହୁଏ । ୧୯୫୦ ମସିହା ଜାନୁଆରୀ ମାସ ୧୯ ତାରିଖ ଦିନ ରାଇରଙ୍ଗପୁର ସହର ଅନ୍ତର୍ଗତ କୁଚେଇ ବୁଡିଠାରେ ଏକ ସଭା ବସିଥିଲା । ଏହାକୁ ସାନ୍ତାଳି ଭାଷାରେ 'ସଲ୍‌ହା ମିତୁନ୍' କୁହାଯାଏ । ମହାନ ଆଦିବାସୀନେତା ସୁନାରାମ ସୋରେନଙ୍କ ସାଥୀରେ ଆଦିବାସୀ ଦେଶ ପାଇଁ ସଂଗ୍ରାମ କରି ବନ୍ଦୀ ହୋଇଥିବା ସମସ୍ତ ନେତାମାନଙ୍କୁ ଡକାଯାଇଥିଲା । ଓଡିଶାର ସେହି ସମୟରେ ମୁଖ୍ୟମନ୍ତ୍ରୀ ଥିଲେ ମାନ୍ୟବର ଡକ୍ଟର ହରେକୃଷ୍ଣ ମହତାବ, ସେ ମୟୂରଭଞ୍ଜ ଆଦିବାସୀ ଭୂ–ଦାବି ମହାସଂଗ୍ରାମୀମାନଙ୍କୁ ସାନ୍ତ୍ୱନା ଓ ଆଶ୍ୱାସନା ଦେବା ସହିତ ଆପୋଷ ଆଲୋଚନା କରିବା ପାଇଁ ଏହି ସଭାଟି ଓଡିଶା ସରକାରଙ୍କ ଜରିଆରେ ଆୟୋଜନ କରାଯାଇଥିଲା ।

୧୯୫୨ ମସିହାରେ ସାଧାରଣ ନିର୍ବାଚନରେ ସୁନାରାମ ସୋରେନ ଓଡିଶା ବିଧାନ ସଭାର ବହଳଦା ଆସନରୁ ପ୍ରତିଦ୍ୱନ୍ଦ୍ୱିତା କରି ବିଜୟୀ ହୋଇ ଆଦିବାସୀ କଲ୍ୟାଣ ବିଭାଗର ମନ୍ତ୍ରୀଭାବେ ଦାୟିତ୍ୱ ନେଲେ । ମାନ୍ୟବର ଆଦିବାସୀ କଲ୍ୟାଣ ବିଭାଗ ମନ୍ତ୍ରୀ ସୁନାରାମ ସୋରେନ୍ ଓଡିଶାର ବିଭିନ୍ନ ଜିଲ୍ଲାମାନଙ୍କରେ ପ୍ରଥମକରି କନ୍ୟା ଆଶ୍ରମମାନ ପ୍ରତିଷ୍ଠା କଲେ ଫଳରେ ଆଦିବାସୀ ଝିଅ ପିଲାମାନେ ଆବାସିକଭାବେ ଉଚ୍ଚ ବିଦ୍ୟାଳୟ ଶିକ୍ଷାଲାଭ କରିପାରିଥିଲେ । ସୁନାରାମ ସୋରେନ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଥିବା ବେଳେ ସାନ୍ତାଳି ଭାଷାରେ ଶିକ୍ଷା ଉପରେ ଏକ କଥା କହିଥିଲେ– **'ଉସୁଲଃ ରେନାଂ ଦ ସେଚେଦ୍ ଗେ ମୁଣ୍ଡୁତ୍ ଡାହାର୍ କାନା' ।**

ଅର୍ଥାତ୍ – 'ଶିକ୍ଷା ହେଉଛି ବିକାଶର ଏକ ମୁଖ୍ୟ ରାସ୍ତା' । ଏହାର ପରବର୍ତ୍ତୀ ସମୟରେ ସୁନାରାମ ସୋରେନ୍ ଓଡିଶା ଓ ଆନ୍ଧ୍ରପ୍ରଦେଶର ଆଦିବାସୀ କମିସନ୍‌ର ଥିଲେ । ପ୍ରଥମେ ଭୁବନେଶ୍ୱର କାର୍ଯ୍ୟାଳୟରେ କାମ କଲେ । ଏହାପରେ ସେ ବଦଳି ହୋଇ ଆନ୍ଧ୍ରପ୍ରଦେଶର ବିଜୟ ନଗରମ୍‌ଠାରେ କାମ କଲେ । ବଦଳି ହେଲାପରେ ତାଙ୍କୁ ନିଜ ଦେଶ ଓ ଜାତିଭାଇମାନଙ୍କୁ ଭୁଲି ନପାରିବାରୁ ସେ ଏହି ପଦବୀରୁ ଇସ୍ତଫା ଦେଇ ନିଜ ଭିଟାମାଟି ମୟୂରଭଞ୍ଜ ବାରିପଦାକୁ ଫେରି ଆସିଥିଲେ । ସନ୍ ୧୯୫୭ ମସିହାରେ ୨ୟ ଥର ପାଇଁ ଓକିଲାତିରେ ଯୋଗଦେଲେ ଓ ବାରିପଦା କଚେରିରେ ଓକିଲାତି କଲେ । 'ବାରିଷ୍ଟର ସୁନାରାମ ସୋରେନ୍ ଓକିଲାତି କରିବାର ଏକ ବିଶେଷତ୍ୱ ରହିଛି । ସେ ଆଦିବାସୀ ଲୋକଙ୍କଠାରୁ କୌଣସି ଫିସ୍ ନେଉ ନ ଥିଲେ' । ସେ ନିଜ ଜାତି

ଭାଇମାନଙ୍କଠାରୁ ମାମଲା ବିନା ଟଙ୍କା ପଇସାରେ ଲଢ଼ି ଅନେକ ସୁନାମ ଅର୍ଜନ କରିଥିଲେ ଏବଂ ସମଗ୍ର ମୟୂରଭଞ୍ଜ ଆଦିବାସୀମାନଙ୍କ ଗହଣରେ ପ୍ରିୟପାତ୍ର ହୋଇପାରିଥିଲେ ।

ଏହି ମହାନ ସ୍ୱାଧୀନତା ସଂଗ୍ରାମୀ ସୁନାରାମ ସୋରେନଙ୍କର କର୍ମଠ ଜୀବନରେ ଆଦିବାସୀ ଜାତି ପାଇଁ ସଦା ସର୍ବଦା ସେବା ଓ ତ୍ୟାଗରେ ହିଁ ସାରା ଜୀବନକାଳ ଭରି ରହିଛି । ତାଙ୍କରି ରାଜନୈତିକ କାର୍ଯ୍ୟକାଳ ମଧ୍ୟରେ 'ଭାରତୀୟ ଜାତୀୟ କଂଗ୍ରେସ' ଦଳରୁ ବହଳଦା ବିଧାନସଭା ଆସନ ୧ମ ପର୍ଯ୍ୟାୟ, ଜନ କଂଗ୍ରେସ ଦଳରୁ ୩ୟ ପର୍ଯ୍ୟାୟ ଓ ୪ର୍ଥ ପର୍ଯ୍ୟାୟ, ଜନତା ଦଳରୁ ସେହି ବହଳଦା ବିଧାନ ସଭା ଆସନରୁ ୭ମ ପର୍ଯ୍ୟାୟ, ୧୯୭୭ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ରାଜନୀତିରେ କାର୍ଯ୍ୟକରି ଜୀବନର ଅନ୍ତିମକାଳ ପର୍ଯ୍ୟନ୍ତ ଓଡ଼ିଶାବାସୀଙ୍କୁ ରାଜନୀତି କ୍ଷେତ୍ରରେ ମଧ୍ୟ ସେବା ଦେଇ ଆସିଛନ୍ତି ।

ସୁନାରାମ ସୋରେନ୍ ଥିଲେ ମୟୂରଭଞ୍ଜର ପ୍ରଥମ ଆଦିବାସୀ ଗ୍ରାଜୁଏଟ୍, ଓଡିଶା ମନ୍ତ୍ରିମଣ୍ଡଳରେ ପ୍ରଥମ ଆଦିବାସୀ କଲ୍ୟାଣ ବିଭାଗ ମନ୍ତ୍ରୀ, ଓଡିଶାରେ ପ୍ରଥମ ବାରିଷ୍ଟର ପାଶ୍ କରି ଓକିଲାତି କରିଥିବା ଏକମାତ୍ର ଆଦିବାସୀ ସନ୍ତାନ, ଓଡିଶା ଆଦିବାସୀ ମହାସଭାର ସଭାପତି ଓ ମହାନ ସ୍ୱାଧୀନତା ସଂଗ୍ରାମୀ ନେତା ଏବଂ ଆନ୍ଧ୍ରପ୍ରଦେଶ ଓ ଓଡିଶା ପ୍ରଦେଶର ପ୍ରଥମ ଆଦିବାସୀ କମିଶନରଭାବେ କାର୍ଯ୍ୟ ସମ୍ପାଦନ କରି ଦକ୍ଷତା ଅର୍ଜନ କରିଛନ୍ତି । ୧୯୪୬ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ସୁନାରାମ ସୋରେନ ଦୀର୍ଘ ୩୪ ବର୍ଷକାଳ ଏକୁଟିଆ ଏକାନ୍ତବର୍ତ୍ତୀ ସୈନିକ ଭାବେ ଓଡିଶାବାସୀଙ୍କ ସେବା କରିଛନ୍ତି । ସେ ଏକାଧାରରେ ମହାନ ସ୍ୱାଧୀନତା ସଂଗ୍ରାମୀ ନେତା, ବିଧାୟକ, ମନ୍ତ୍ରୀ, କମିଶନର ଏବଂ ବାରିଷ୍ଟର ରୂପରେ ଦେଶବାସୀଙ୍କ ପାଇଁ ନିଜର ଜୀବନ ଉତ୍ସର୍ଗ କରିଯାଇଛନ୍ତି । ସାରା ଜୀବନ ତାଙ୍କର ଛାତ୍ର ଜୀବନରୁ ଆରମ୍ଭ କରି ବୃଦ୍ଧକାଳ ପର୍ଯ୍ୟନ୍ତ ସେ ଦେଶବାସୀଙ୍କ ସେବାରେ ଲାଗିପଡିଥିଲେ ମାତ୍ର, ଏତେ ବଡ ପଦବୀରେ ରହି ସୁନାରାମ ସୋରେନ ଏକ ଛୋଟିଆ ଜାଗା କି ଜମିଟିଏ ମଧ୍ୟ ଜୀବନରେ କେବେ କିଣି ନାହାନ୍ତି ।

ଏହିପରି ଭାବରେ ସୁନାରାମ୍ ସୋରେନ ଏକ ମହାନ ସ୍ୱାଧୀନତା ସଂଗ୍ରାମୀ ଓ ଦେବତୁଲ୍ୟ ଆଦିବାସୀ ନେତା ଥିଲେ, ଯାହାଙ୍କର ସାରା ଜୀବନ କେବଳ ଆଦିବାସୀ ଦୀନ ଦୁଃଖୀନୀର ସେବାରେ ଜୀବନ ବିତେଇ ଦେଲାପରେ ତା.୧୯–୭–୧୯୮୮ରିଖ ରାତ୍ର ୧୨ଟା ବେଳକୁ ସେ ଏହି ଧରାପୃଷ୍ଠକୁ ଛାଡି ସବୁଦିନ ପାଇଁ ଚାଲିଗଲେ । ସେ ୭୦ବର୍ଷ ବୟସରେ ମୃତ୍ୟୁବରଣ କଲେ । ଆଜି ସୁନାରାମ ସୋରେନ ଆମ ଗହଣରେ ନାହାନ୍ତି ମାତ୍ର ତାଙ୍କରି କୀର୍ତ୍ତି ପାଇଁ ସେ ସବୁଦିନ ଆମ ଗହଣରେ ଅମର ହୋଇ ରହିଛନ୍ତି । ଏହା ଏକ ପରିତାପର ବିଷୟ ଯେ, ସୁନାରାମ ସୋରେନଙ୍କ ମୃତ୍ୟୁର ଆଜକୁ ପ୍ରାୟ ୨୮ବର୍ଷରୁ ଅଧିକ ହୋଇଗଲାଣି ମାତ୍ର ତାଙ୍କର ସ୍ଥାନ 'ଆଦିବାସୀ ଯୁବ ସମାଜ ମଧ୍ୟରୁ' ଏପର୍ଯ୍ୟନ୍ତ କେହି ପୂରଣ କରିପାରି ନାହାନ୍ତି । ପ୍ରକୃତରେ ସୁନାରାମ ସୋରେନ ଜଣେ 'ଓଡିଶାର ଅନ୍ୟତମ ବିପ୍ଳବୀ ପୁରୁଷ, ଗଡଜାତ ରାଜ୍ୟର ଭୂ–ଦାବୀ ଆନ୍ଦୋଳନ ନେତା, ଆଦର୍ଶବାଦୀ ରାଜନୀତିଜ୍ଞ ଏବଂ ଉପଯୁକ୍ତ ବାରିଷ୍ଟର ଯିଏ ଆମ ସମସ୍ତଙ୍କ ସମ୍ମୁଖରେ ସତତ ଉଦ୍‌ଭାସିତ ଏକ ଆଲୋକବର୍ତିକା । ଆମ ଦେଶର ଦୀନ ଦୁଃଖିନୀ, ଅବହେଳିତ ଓ ଅନୁନ୍ନତ ଆଦିବାସୀ ଜନଜାତିର ଆର୍ଥିକ, ସାମାଜିକ ଓ ରାଜନୀତିକ ବିକାଶ ପାଇଁ ତାଙ୍କ ନିରବଚ୍ଛିନ୍ନ ଉଦ୍ୟମ, ସ୍ୱାର୍ଥତ୍ୟାଗ ଓ ମହାସଂଗ୍ରାମ ଅନତିକ୍ରମ ଅଟେ' ।

ବାରିଷ୍ଟର, ସୁନାରାମ ସୋରେନ ଥିଲେ ଜଣେ ମହାନ ଜନନାୟକ, ଯୁଗସ୍ରଷ୍ଟା, ଯୁଗପୁରୁଷ, ମହାନ୍ ସଂଗ୍ରାମୀ ଓ ଜଣେ ଦୂରଦୃଷ୍ଟି ସମ୍ପନ୍ନ ଆଦିବାସୀ ନେତା । ଏହିପରି ଏକ ବିଶିଷ୍ଟ ବ୍ୟକ୍ତିତ୍ୱ ଓ ମହାମାନବ, ମହାପୁରୁଷଙ୍କୁ ଆମେ 'ଓଡିଶା ମାଟିର ଆଦିବାସୀ ବରପୁତ୍ର, ଯୁଗପରୁଷ ତଥା ମହାନ୍ ସ୍ୱାଧୀନତା ସଂଗ୍ରାମୀ ସୁନାରାମ ସୋରେନ' କହିଲେ ଅତ୍ୟୁକ୍ତିକର ହେବ ନାହିଁ ।

ବରିଷ୍ଠ ଅର୍ଥନୈତିକ ଅନୁସନ୍ଧାନକାରୀ
ଯୋଜନା ଓ ସଂଯୋଜନ ବିଭାଗ,
ରାଜ୍ୟ ସଚିବାଳୟ, ଭୁବନେଶ୍ୱର



# ଅର୍କକ୍ଷେତ୍ର ମାହାତ୍ମ୍ୟ ଓ ଶାମ୍ବଙ୍କ ସୂର୍ଯ୍ୟ ଉପାସନା

ଡକ୍ଟର ଶ୍ରୀହରି ପଣ୍ଡା

ସୂର୍ଯ୍ୟ ଉପାସନା ସନାତନ ଧର୍ମର ଏକ ବିଶେଷ ବିଭାଗ । ସୂର୍ଯ୍ୟ ହେଉଛନ୍ତି ତ୍ରିଦେବଙ୍କ ସମନ୍ୱିତ ସ୍ୱରୂପ । ସେ ସକାଳେ ବ୍ରହ୍ମା, ଦ୍ୱିପ୍ରହରରେ ବିଷ୍ଣୁ ଓ ସନ୍ଧ୍ୟା ସମୟରେ ଶିବଙ୍କ ରୂପ ଧାରଣ କରନ୍ତି । ସନାତନ ଧର୍ମରେ ଶୈବ, ଶାକ୍ତ, ଗାଣପତ୍ୟ, ସୌର ଓ ବୈଷ୍ଣବଙ୍କ ମଧ୍ୟରେ କୌଣସି ଫରକ ନାହିଁ ବା କେହି ଉଚ୍ଚ କି ନୀଚ ନୁହନ୍ତି । ସମସ୍ତେ ସମାନ ଏକ ବ୍ରହ୍ମର ଅଂଶ । କେବଳ ଭିନ୍ନଭିନ୍ନ ସମୟରେ ଭିନ୍ନଭିନ୍ନ ରୂପରେ ପୂଜା ପାଇଥାନ୍ତି ଏବଂ ଲୋକକଲ୍ୟାଣ ପାଇଁ ଅଶୀର୍ବାଦ ପ୍ରଦାନ କରିଥାନ୍ତି । ନିଜର କୃତକର୍ମ ଲାଗି ବ୍ୟାଧିଗ୍ରସ୍ତ ହୋଇ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ କିପରି ସୂର୍ଯ୍ୟଦେବଙ୍କ ଉପାସନା କରି ବ୍ୟାଧିମୁକ୍ତ ହୋଇଥିଲେ, ସେହି ପ୍ରସଙ୍ଗକୁ ଆଧାର କରି ଉକ୍ତ ବ୍ରତର ପରିକଳ୍ପନା କରାଯାଇଛି ।

ଶିବ ପାର୍ବତୀଙ୍କ କଥୋପକଥନ ଆଳରେ ସୂର୍ଯ୍ୟ ମାହାତ୍ମ୍ୟ ଆଲୋଚିତ ହୋଇଅଛି । ମାତା ପାର୍ବତୀଙ୍କ ପ୍ରଶ୍ନରେ ସଦାଶିବ କହୁଛନ୍ତି, ଯେଉଁ ଲୋକ ଶ୍ରଦ୍ଧାର ସହିତ ସୂର୍ଯ୍ୟ ମାହାତ୍ମ୍ୟ ଶ୍ରବଣ ବା ପଠନ କରିବ, ତା'ର ଆଦିବ୍ୟାଧି, ମହାବ୍ୟାଧି ସବୁ ଭଲ ହୋଇଯିବ । ଯଦି ତା' ଦେହରେ ଅଷ୍ଟକୁଷ୍ଠ ହୋଇଥିବ, ସେ ମଧ୍ୟ ଭଲ ହୋଇଯିବ । ଏହି ବ୍ରତ କେମିତି ଉପାସନା କରାଯାଏ ବୋଲି ପାର୍ବତୀ ଜାଣିବାକୁ ଚାହିଁବାରୁ ଶିବ କହିଲେ, ସୂର୍ଯ୍ୟ ଉପାସକମାନେ ରବିବାର ଦିନ ବ୍ରାହ୍ମଣ ଡାକି ହୋମ କରିବେ । ତା'ପରେ ହୋମଭସ୍ମକୁ ନେଇ ଦେହରେ ଲଗାଇଲେ ମହାବ୍ୟାଧି ଭଲ ହୋଇଯାଏ, ଅବଶ୍ୟ ଏଥି ନିମନ୍ତେ ବିଶ୍ୱାସ ଥିବା ଦରକାର । ଯାହାର ଦେହ ବିବର୍ଣ୍ଣ ଦେଖା ଯାଉଥାଏ, ସେ ଯଦି ରବିବାର ଉପବାସ ବ୍ରତକୁ ପାଳନ କରିବା ସହ ହୋମଭସ୍ମକୁ ଶରୀରରେ ବିଲୋପନ କରେ, ତା' ଦେହରୁ ବିବର୍ଣ୍ଣତା କଟିଯାଇ ସର୍ବାଙ୍ଗ ସୁନ୍ଦର ହୋଇଥାଏ । ଯେଉଁ ନାରୀମାନେ କାକବନ୍ଧ୍ୟା କିମ୍ବା ମୃତବତ୍ସା ଦୋଷରେ ପୀଡ଼ିତା, ସେମାନେ ଏହିବ୍ରତ ଆଚରଣ କଲେ ସେହି ଦୋଷରୁ ମୁକ୍ତି ପାଇଥାନ୍ତି । ପୁଣି ଯଦି କେହି ଦୃଷ୍ଟିଦୋଷର ଆକ୍ରାନ୍ତ ଥିବ, ସେ ଯଦି ଏହି ପୁରାଣ ଶ୍ରବଣ କରିବା ସହ ଆଦିତ୍ୟଙ୍କ ମନ ମଧ୍ୟରେ ସ୍ମରଣ କରି ଆଦିତ୍ୟ ନାମ ଜପ କରିବ, ସେ ସେହି ଦୋଷରୁ ମୁକ୍ତି ପାଇଯିବ । ଏଥି ନିମନ୍ତେ ରବିବାର ଦିନ ଫୁଲଚନ୍ଦନରେ ସୂର୍ଯ୍ୟ ମଣ୍ଡଳକୁ ଧଳା ଚାଉଳ ଓ ଚନ୍ଦନ ମିଶ୍ରିତ ଜଳରେ ପୂଜା କରିବା ଦରକାର । ରବିବାର ଉପବାସ ରହିବା ପୂର୍ବକ ସୂର୍ଯ୍ୟ ନାମାବଳୀ ସ୍ମରଣ ଓ ଭଜନ କରିବା ସହ ହାତ ଯୋଡ଼ି ଅର୍ଘ୍ୟ ପ୍ରଦାନ କରିବ । ଦେଇଥିବା ଅର୍ଘ୍ୟ ଜଳକୁ ଆଣି ଆଖିରେ ମାରିବ । ଏହିଭଳି ପୂଜାର୍ଚ୍ଚନା କଲେ ନିଶ୍ଚୟ ଦିବ୍ୟଦୃଷ୍ଟି ମିଳିବ । ରବି ପୂଜା କରି ରାତିରେ କୁଶାସନ ପାରି କାହା ଶଯ୍ୟାକୁ ନ ଭିଡ଼ାଇ ଶୟନ କରିବା ସହ ସୂର୍ଯ୍ୟଙ୍କ ଦ୍ୱାଦଶ ନାମକୁ ସ୍ମରଣ କରିବା ନିୟମ ।

ଶିବଙ୍କ ପାଖରୁ ସୂର୍ଯ୍ୟ ମାହାତ୍ମ୍ୟ ଶ୍ରବଣ କରି ପାର୍ବତୀ ଆନନ୍ଦିତ ହେବା ସହିତ କେଉଁ ସ୍ଥାନଟି ସୂର୍ଯ୍ୟଙ୍କ ପ୍ରିୟ ସ୍ଥାନ ବୋଲି ଜାଣିବାକୁ ଚାହିଁବାରୁ ଶିବ ପୁନର୍ବାର କହିବା ଆରମ୍ଭ କଲେ,ସୂର୍ଯ୍ୟଙ୍କର ଅତିପ୍ରିୟ ସ୍ଥାନ ହେଉଛି ଅର୍କକ୍ଷେତ୍ର । ସହସ୍ର ଯୋଜନ ସମୁଦ୍ର ତଟ ପରିବେଷ୍ଟିତ ଏହି କ୍ଷେତ୍ରର ପ୍ରତି ରେଣୁ ପବିତ୍ର ଅଟେ । ଏହି ତୀର୍ଥରେ ଯେଉଁମାନେ ପିଣ୍ଡଦାନ କରନ୍ତି ସେମାନଙ୍କ ପିତୃ ପୁରୁଷ ମୋକ୍ଷ ପାଇଯାଆନ୍ତି । ଯେଉଁମାନେ

ସଂକଳ୍ପ କରିବା ପୂର୍ବକ ସେଠାରେ ସ୍ନାନ କରନ୍ତି ସେମାନଙ୍କ ସପ୍ତପୁରୁଷ ନର୍କରୁ ଉଦ୍ଧାର ପାଇବା ସହ ସେହି ଲୋକ ଇହଲୋକରେ ବହୁ ସୁଖ ପାଇଥାଏ । ଏକଦା ସେହି ସ୍ଥାନରେ ଅର୍କ ନାମକ ଏକ ଦୈତ୍ୟ ଜନ୍ମ ହୋଇ ସ୍ନାନ କରିବାକୁ ଆସୁଥିବା ଲୋକଙ୍କୁ ଭକ୍ଷଣ କରୁଥିଲା । ଫଳରେ ଲୋକମାନେ ସ୍ନାନ ନିମନ୍ତେ ନ ଆସିବାରୁ ସେ ଦୈତ୍ୟ କୁମ୍ଭୀର ରୂପ ଧାରଣ କରି ସମୁଦ୍ରରେ ବାସ କଲା । କିଛିଦିନ ଅର୍କଦୈତ୍ୟକୁ ନ ଦେଖି ଲୋକ ସ୍ନାନ ନିମନ୍ତେ ଆସିବାରୁ ଜଳ ମଧ୍ୟରେ ଅର୍କ ସେମାନଙ୍କୁ ଧରି ଖାଇଲା । ରାତ୍ରି କାଳରେ ସେହି ଦୈତ୍ୟ ନିଜ ରୂପ ଧରି ମୁନିଋଷିମାନଙ୍କ ଆଶ୍ରମ ଭାଙ୍ଗି ଦେବା ସହ ସେମାନଙ୍କୁ ଭକ୍ଷଣ କରିବାରୁ, ଋଷିମାନେ ଶିଷ୍ୟମାନଙ୍କୁ ନେଇ ସେଠାରୁ ପଳାଇ ଯାଇ ମେରୁ ନିକଟରେ ସୂର୍ଯ୍ୟଙ୍କୁ ନିଜ ଦୁର୍ଦ୍ଦଶା ଫେଡ଼ିବା ନିମନ୍ତେ ସ୍ତୁତି କରିବାରୁ ଦୟାମୟ ଦିନମଣି ଏକ ଭୟଙ୍କର ରୂପ ଧାରଣ କରି ଜଳରେ ପ୍ରବେଶ କରି ଅର୍କଦୈତ୍ୟକୁ ବଧ କଲେ ।

କେଉଁମାନେ ଏହି ବ୍ରତ ଆଚରଣ କରି ରୋଗମୁକ୍ତ ହୋଇଛନ୍ତି ବୋଲି ପାର୍ବତୀ ପଚାରିବାରୁ ଶିବ କହିଲେ, ଏକଦା ଦ୍ୱାପର ଯୁଗର ପରମ ପ୍ରତାପୀ ଭଗବାନ ଶ୍ରୀକୃଷ୍ଣଙ୍କର ତେଜସ୍ୱୀ ପୁତ୍ର ଶାମ୍ବ ନିଜ ମାତାଙ୍କଠାରୁ ଅଭିଶାପ ପାଇ ଭୟଙ୍କର କୁଷ୍ଠ ରୋଗରେ ଆକ୍ରାନ୍ତ ହେଲେ । ଥରେ କୃଷ୍ଣ ଓ ସତ୍ୟଭାମା ଦ୍ୱାରରେ ଶାମ୍ବକୁ ବସାଇ ଭିତରେ ହାସପରିହାସରେ ଲିପ୍ତଥିବା ସମୟରେ ଦୁର୍ବାସା ଋଷି ଆସି କୃଷ୍ଣ ଦର୍ଶନାର୍ଥେ ଦ୍ୱାରରେ ପହଞ୍ଚିବାରୁ ଶାମ୍ବ ଭିତରକୁ ପ୍ରବେଶ କଲେ । ଫଳରେ ସତ୍ୟଭାମା ଓ କୃଷ୍ଣଙ୍କ କୌତୁକରେ ବ୍ୟାଘାତ ସୃଷ୍ଟି ହେବାରୁ ସତ୍ୟଭାମା କ୍ରୋଧରେ କୁଷ୍ଠ ହେବ ବୋଲି ଅଭିଶାପ ଦେଲେ । ଏହା ପରେ ସତ୍ୟଭାମା ଆସି ଦୁର୍ବାସାଙ୍କୁ ଯଥାମାନ୍ୟ ଜଣାଇବା ସହ କ୍ରୋଧବଶତଃ ଶାମ୍ବଙ୍କୁ ଦେଇଥିବା ଅଭିଶାପର ପ୍ରତିକାର ଜାଣିବାକୁ ଚାହିଁଲେ । ଋଷି ଦୁର୍ବାସା କହିଲେ ମର୍ତ୍ତ୍ୟ ବୈକୁଣ୍ଠ କଳିଙ୍ଗ ଦେଶରେ ନୀଳଗିରି ନିକଟସ୍ଥ ଅର୍କକ୍ଷେତ୍ରରେ ସୂର୍ଯ୍ୟ ଉପାସନା କଲେ ଏହି ରୋଗରୁ ମୁକ୍ତି ମିଳିପାରିବ ।

ନାରଦ ଅର୍କକ୍ଷେତ୍ରକୁ ଶାମ୍ବଙ୍କୁ ସାଥିରେ ଧରି ପହଞ୍ଚି ବିଧିବିଧାନ ବତାଇ ଦେଇ ପ୍ରସ୍ଥାନ ଅନ୍ତେ ଶାମ୍ବ ଏକାଗ୍ର ଚିତ୍ତରେ ସୂର୍ଯ୍ୟ ଉପାସନା କଲେ । ଅସହ୍ୟ ଯନ୍ତ୍ରଣାରେ ଅଧୀର ହୋଇ ପଡୁଥିବା ଶାମ୍ବଙ୍କ ଶରୀରରେ ଅର୍କକ୍ଷେତ୍ରର ବାୟୁର ସ୍ପର୍ଶ ମାତ୍ରେ କଷ୍ଟ ଦୂର ହୋଇଗଲା । ସମୁଦ୍ରରେ ସ୍ନାନ କରି ଉଠିବା ବେଳକୁ ଶରୀରରେ ଥିବା ଖଣ୍ଡିଆ ସ୍ଥାନମାନ ଶୁଖି ଯାଇଥିଲା । ରକ୍ତ ପୂଜ ଆଉ ତାଙ୍କ ଦେହରେ ନାହିଁ । ଶାମ୍ବ ହର୍ଷିତ ମନରେ ଅଞ୍ଜଳିରେ ଜଳ ଧରି ନିରଞ୍ଜନଙ୍କୁ ପ୍ରଦାନ କରିବା ସହିତ ବହୁ ସ୍ତୁତି କଲେ । ତାହାପରେ କୂଳରେ ବସି ରବିନାରାୟଣଙ୍କ ମୂର୍ତ୍ତି ବାଲିରେ ନିର୍ମାଣ କରିବା ପୂର୍ବକ ରବିନାରାୟଣ ବ୍ରତ ଆରମ୍ଭ କଲେ । ଗନ୍ଧ, ଚନ୍ଦନ, ପୁଷ୍ପ, ଧୂପ, ଦୀପ ଆଦି ଦେଇ ଷୋଡ଼ଶୋପଚାରରେ ନାରାୟଣଙ୍କ ପୂଜା ଓ ଧ୍ୟାନ କରି କୁଷ୍ଠରୋଗରୁ ମୁକ୍ତି ପାଇଲେ । ସେହିଦିନଠାରୁ ସମସ୍ତେ ରବିବାର ଦିନ ରବିନାରାୟଣ ବ୍ରତ ଆଚରଣ କରି ନିଜର ମନସ୍କାମନା ପୂର୍ଣ୍ଣ କଲେ । ଶାମ୍ବ ପୂଜା କରିଥିବା ସ୍ଥାନଟି କୋଣାର୍କ ଭାବରେ ପରିଚିତ ହେଲା । ପୁତ୍ରକାମୀ ପତିବ୍ରତା ନାରୀମାନେ ଏହି ବ୍ରତ ପାଳନ କରି ପୁତ୍ର ଲାଭ କଲେ । ଏହି ସ୍ଥାନରେ ମାଘ ସପ୍ତମୀରେ ସ୍ନାନ କଲେ ସ୍ନାନ କରୁଥିବା ଲୋକ ଦେବବନ୍ଦ୍ୟ ହୁଏ ।

ଯେଉଁମାନେ ଏହି ଗ୍ରନ୍ଥ ପଢନ୍ତି ବା ଶୁଣନ୍ତି ସେମାନଙ୍କର ସକଳ ବ୍ୟାଧି ବିନାଶ ହେବା ସହିତ ଆୟୁ ବୃଦ୍ଧି ହୋଇଥାଏ । ତା'ର ସମସ୍ତ ବିପଦ କଟି ଯାଇଥାଏ । ଅପୁତ୍ରିକର ପୁତ୍ରଜାତ ହୋଇଥାଏ । ଶ୍ରାଦ୍ଧ ଦିବସରେ ଏହା ପାଠ କଲେ ପିତୃ ପୁରୁଷ ମୁକ୍ତି ପାଇଥାଆନ୍ତି । ପରମ ପବିତ୍ର ସୂର୍ଯ୍ୟଙ୍କର କଥାମାନ ଶୁଣି ପାର୍ବତୀ ଆନନ୍ଦିତ ହେଲେ ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଂଜ



# ବିଜୁ ପଟ୍ଟନାୟକ : ଏକ ବିରଳ ବ୍ୟକ୍ତିତ୍ୱ

**ଡକ୍ଟର ସରୋଜ କୁମାର ପଟ୍ଟନାୟକ**

ମାର୍ଚ୍ଚ ୫, ୨୦୧୭ ରବିବାର ଯେଉଁ ବିଶେଷତ୍ୱ ବହନ କରେ ତାହା ହେଲା ଏକ ସ୍ୱପ୍ନ ବିଳାସୀ, ଦୂରଦ୍ରଷ୍ଟା ଓ ମୁକୁଟ ବିହୀନ ସମ୍ରାଟଙ୍କର ଶତବର୍ଷ ସ୍ୱନକ୍ଷତ୍ର ଦିବସ । ସେ ନବ ଉତ୍କଳର ପ୍ରବାଦ ପୁରୁଷ । ଦ୍ୱିତୀୟ ଖାରବେଳ ବିଜୁ ପଟ୍ଟନାୟକ । ଏକ ସ୍ୱାଭିମାନର ପ୍ରତୀକ । ଏକ ଦମ୍ଭୋକ୍ତିର ପରିଚାୟକ । ଏକ କିମ୍ବଦନ୍ତୀର ଜାଜ୍ୱଲ୍ୟମାନ ସ୍ମାରକ । ଏକ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ହୃତ ଗୌରବ, ମୃତ ଗୌରବ, ଗତ ଗୌରବର ରୋମନ୍ଥନ । ଉତ୍କଳର ନୌବାଣିଜ୍ୟ ବିଶ୍ୱବିଦିତ ଥିଲା । କଳିଙ୍ଗର ସାଧବ ପୁଅ ତା'ର ଅଦମ୍ୟ ସାହସର ଭେଳା ସାଗର ବକ୍ଷରେ ଭସାଇ ଦେଉଥିଲା । ସାତ ସମୁଦ୍ରର ଉତ୍ତାଳ ତରଙ୍ଗରାଶି ତା'ର ଗତିପଥକୁ ପ୍ରତିରୋଧ କରିପାରିନଥିଲା । ବିଜୁ ପଟ୍ଟନାୟକ ସେହି ସାହସିକ ପରମ୍ପରାର ଉପଯୁକ୍ତ ଦାୟାଦ । ଜୀବନ ଯାହାର ଦୁଃସାହସିକତା ପାଇଁ ଉଦ୍ଦିଷ୍ଟ । ସେ ଛତ୍ରେ ଛତ୍ରେ ଦୁର୍ଦ୍ଦମତାର ପରିଚୟ ଦେଇଯାଇଛନ୍ତି, ସମୁଦ୍ରର ଗଭୀରତାଠାରୁ ବିଶାଳ ଓ ଗଭୀରତର । ହିମାଳୟର ଉତ୍ତୁଙ୍ଗ ପର୍ବତମାଳାର ଉଚ୍ଚତାଠାରୁ ଆହୁରି ଉଚ୍ଚ ବ୍ୟକ୍ତିତ୍ୱ ସଂପନ୍ନ । ଅନନ୍ତ ଆକାଶ ନୀଳିମାଠାରୁ ପ୍ରଶସ୍ତ ଓ ଅସୀମତର ।



କଳିଙ୍ଗର ଗୌରବମୟ ଅତୀତ ଇତିହାସ ଓଡ଼ିଶାର ବିଭିନ୍ନ ସ୍ଥାନ ତଥା ଖଣ୍ଡଗିରି, ଉଦୟଗିରି ଗୁମ୍ଫାରେ ଖୋଦିତ । ଇତିହାସ କହେ, ଏହି ଦୁର୍ଦ୍ଧର୍ଷ, ବିଭବଶାଳୀ, ପ୍ରସିଦ୍ଧ ଶିଳ୍ପକଳା ଓଡ଼ିଆ ଜାତି ସେତେବେଳେ ବାଣିଜ୍ୟ, ନୃତ୍ୟକଳା, ଗାନ୍ଧର୍ବ ବିଦ୍ୟାରେ ପାରଙ୍ଗମ ଥିଲା । କେବଳ ଏତିକି ନୁହେଁ କଳିଙ୍ଗର ବଣିକମାନେ କେବଳ ବାଲିଦ୍ୱୀପ କାହିଁକି ସୁଦୂର ରୋମ୍‌ରେ ବାଣିଜ୍ୟ କରୁଥିଲେ ବୋଲି ଇତିହାସ ପ୍ରମାଣ ଦିଏ । କଳିଙ୍ଗର ବରପୁତ୍ର ବିଜୁ ପଟ୍ଟନାୟକ କଳିଙ୍ଗର ଅଧୋପତନ ପାଇଁ ମର୍ମାହତ ଓ ବିବ୍ରତ ହେଉଥିଲେ । କଳିଙ୍ଗର ଅତୀତ ଗୌରବ ଫେରାଇ ଆଣିବା ପାଇଁ ସେ ପ୍ରତିନିୟତ ଉଦ୍ୟମ କରିଥିଲେ । ସମଗ୍ର ଓଡ଼ିଆ ଜାତିକୁ ପୁଣି ଥରେ ଏକାଠି କରିବା ପାଇଁ ହୁଏତ ସେ ପ୍ରତ୍ୟେକ ଓଡ଼ିଆଙ୍କୁ ନିରବରେ ଆହ୍ୱାନ କରିଥିଲେ ।

'କର୍ମେଣ ବାଧିକାରସ୍ତୁ ମା ଫଳେ ଚ କଦାଚନ', ଗୀତାର ଏହି ଉକ୍ତିକୁ ସେ ତାଙ୍କର ଜୀବନର ଶ୍ରେଷ୍ଠ ମନ୍ତ୍ର ବୋଲି ଧରି ନେଇଥିଲେ । ତାଙ୍କର ଉକ୍ତି ଥିଲା – କାମ କରିବାକୁ ପଡ଼ିବ । କେହି ପ୍ରଶଂସା କଲା ବା ନକଲା ସେଟା ବଡ଼ କଥା ନୁହେଁ । ନିନ୍ଦୁକମାନେ ଯେତେ ନିନ୍ଦା କରନ୍ତୁ ବା ପ୍ରଶଂସକମାନେ

ଯେତେ ପ୍ରଶଂସା କରନ୍ତୁ । ସ୍ଥିତପ୍ରଜ୍ଞ ଲୋକ ଏ ସବୁଥିରେ ବିଚଳିତ ନହୋଇ ସର୍ବଦା ସତ୍ ମାର୍ଗରେ ଚାଲେ ।

ସେ ଜଣେ ବିରଳ ପ୍ରତିଭା ହିସାବରେ ଅର୍ଦ୍ଧଶତାବ୍ଦୀ ଧରି ଭାରତର ତଥା ଓଡ଼ିଶାର ରାଜନୀତିକୁ ଓ ଜନମାନସକୁ ଆଚ୍ଛାଦିତ କରି ରଖିଥିଲେ । ଓଡ଼ିଶା ତଥା ଜାତୀୟ ରାଜନୀତିର ମୁଖ୍ୟ ସ୍ରୋତରେ ଅନେକ ତରଙ୍ଗ ସୃଷ୍ଟି କରିଥିବା ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ବହୁଦିନ ଧରି କ୍ଷମତାରେ ନଥିଲେ ମଧ୍ୟ କ୍ଷମତାର କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲେ କେନ୍ଦ୍ରରେ ବା ରାଜ୍ୟରେ । ଅବଶ୍ୟ ତାଙ୍କ ପାଇଁ କ୍ଷମତାରେ ରହିଲେ ଯାହା ନରହିଲେ ମଧ୍ୟ ଠିକ୍ ସେୟା, ଯେପରି ହାତୀ ବଞ୍ଚିଲେ ଲକ୍ଷେ ମଲେ ଲକ୍ଷେ ।

ସେ ଓଡ଼ିଆ ଜାତିକୁ ଦେଶର ଶ୍ରେଷ୍ଠ ଜାତିରେ ପରିଣତ କରିବା ପାଇଁ ଉଦ୍ୟମ କରିଥିଲେ । ତାଙ୍କର ପ୍ରତ୍ୟେକ ମୁହୂର୍ତ୍ତ ଓ ପ୍ରତ୍ୟେକ ଦଣ୍ଡ ଓଡ଼ିଶା ପାଇଁ ବ୍ୟୟ ହୋଇଛି । ସେ ଓଡ଼ିଶାର ଯୁବକ ଯୁବତୀମାନଙ୍କ ପାଇଁ ବୀରତ୍ୱର ଉତ୍ସ ହୋଇ ସବୁଦିନ ପାଇଁ ରହିବେ ।

ଆଧୁନିକ ଓଡ଼ିଶାର ନବ ନିର୍ମାଣରେ ସେ ଥିଲେ ପୁରୋଧା ଓ କର୍ଣ୍ଣଧାର । ଓଡ଼ିଶାର ଯେଉଁ କେତେକ ପ୍ରଗତି ବିଶେଷ ଭାବେ ବାର୍ତ୍ତାବହ କରେ ମୁଖ୍ୟତଃ ତାହା ହିଁ ବିଜୁବାବୁଙ୍କର ଅବଦାନ । ପାରାଦ୍ୱୀପ ବନ୍ଦର, ହୀରାକୁଦ ବନ୍ଧ, ରାଉରକେଲା ଇସ୍ପାତ କାରଖାନା, ଚୌଦ୍ୱାର ଶିଳ୍ପାଞ୍ଚଳ, ବଡ଼ବିଲର କଳିଙ୍ଗ ଆଇରନ୍ ୱାର୍କସ୍ ସବୁ ତାଙ୍କରି ଅତୁଳନୀୟ ଅବଦାନ ।

ଘଟଣାଚକ୍ରରେ ଦେଶ ଓ ଜାତିର ଆହ୍ୱାନରେ ସେ ରାଜନୀତିରେ ଯୋଗ ଦେଇଥିଲେ ମଧ୍ୟ କୁଛ ରାଜନୀତିଠାରୁ ବହୁ ଊର୍ଦ୍ଧ୍ୱରେ ଥିଲେ । ସେ ଜଣେ ମହାନ୍ ଜନନାୟକ ଓ ରାଷ୍ଟ୍ରନୀତିଜ୍ଞ । ହୃଦୟର ବିଶାଳତା ଦ୍ୱାରା ହିଁ ସେ ଶତ୍ରୁମିତ୍ରଙ୍କୁ ସମଭାବରେ ଦେଖୁଥିଲେ । ତାଙ୍କର ପ୍ରତିଭା ଓ ପ୍ରଶସ୍ତତା ସୂର୍ଯ୍ୟପରି ତେଜୋଦୀପ୍ତ ।

ବିଜୁବାବୁ ଜୀବନସାରା ଲଢ଼ି ଆସିଥିଲେ । ରାଜନୈତିକ ନେତୃତ୍ୱ ପାଇଁ ସେ କାହାର ଦୟାରେ କ୍ଷମତାକୁ ଆସି ନଥିଲେ । ଓଡ଼ିଶାର ଜନସାଧାରଣଙ୍କର ଚିନ୍ତାଧାରାଠାରୁ ବହୁକାଳ ଆଗୁଆ ହୋଇ ରହିଥିବାରୁ ତାଙ୍କୁ ନିଜ ଲୋକ ମଧ୍ୟ ଚିହ୍ନି ପାରିନଥିଲେ । ଜୀବନସାରା ଏକ ଆଧୁନିକ ଓଡ଼ିଶାର ସ୍ୱପ୍ନ ଦେଖୁଥିବା ବିଜୁବାବୁଙ୍କର ଅବର୍ତ୍ତମାନରେ ଓଡ଼ିଶା କାହିଁକି ସାରା ଭାରତବର୍ଷରେ ଏକ ଶୂନ୍ୟସ୍ଥାନ ସୃଷ୍ଟି ହୋଇଯାଇଛି । ଭାରତବର୍ଷର ରାଜନୀତିରେ ଯଦି କୌଣସି ବ୍ୟକ୍ତି ଦଳମତ ନିର୍ବିଶେଷରେ ସମସ୍ତଙ୍କୁ ଡ଼ାକି ଦିଲ୍ଲୀର ଓଡ଼ିଶା ଭବନରେ ବସାଇବାକୁ ସକ୍ଷମ ହୋଇଥାନ୍ତି ସେ ହେଉଛନ୍ତି ବିଜୁ ପଟ୍ଟନାୟକ । ସବୁଠାରୁ ସଂକଟମୟ ରାଜନୈତିକ ପରିସ୍ଥିତିରେ ତାଙ୍କର ଅପସାରଣ ଦେଶକୁ ଏକ ବଡ଼ ଧକ୍କା ଦେଇଥିଲା ।

ସେ ଥିଲେ ଏକ ଅନନ୍ୟ ସାଧାରଣ ପୁରୁଷ । ତାଙ୍କର ଚାଲିରେ ଥିଲା ଗାମ୍ଭୀର୍ଯ୍ୟ । ମନେ ହେଉଥିଲା ସତେ ଯେପରି ପୃଥିବୀଟା ତାଙ୍କର । ପୃଥିବୀର ମାଲିକାନା ପାଇଁ ଓଡ଼ିଶାଟା ଗୋଟିଏ ଅତି ଛୋଟ ମାଲିକାନା ଥିଲା । ବୋଧେ ଏତେ ବିରାଟ ମଣିଷ ପାଇଁ କେତେ ସଙ୍କୁଚିତ ଥିଲା ଏ ରାଜ୍ୟଟା । କ୍ଷମତାରୁ ଯିବା ଓ ପୁଣି କ୍ଷମତାକୁ ଫେରିବାକୁ ଦୀର୍ଘ ୨୬ ବର୍ଷର ବ୍ୟବଧାନ । ଏହି ଦୀର୍ଘକାୟ ମାନବ ଓଡ଼ିଶାର ଜନଜୀବନରେ ଆକାଶସ୍ପର୍ଶୀ ସ୍ତମ୍ଭ ହୋଇ ସବୁଦିନ ପାଇଁ ରହିଗଲେ । ଏହି ସ୍ୱାଭିମାନୀ ମଣିଷଟି ଶେଷ ପର୍ଯ୍ୟନ୍ତ ଅଭିଯାନ ପ୍ରୟାସୀ ହୋଇ ରହିଗଲେ । ତାଙ୍କର ସ୍ଥାନ ଛୁଇଁବା ବୋଧେ ହୁଏତ କାହା ପକ୍ଷରେ ସମ୍ଭବପର ହେବ ନାହିଁ । ଶାରୀରିକ ଦୃଷ୍ଟିରୁ ଏପରି ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ପଟାନ୍ତର ନାହିଁ ।

ତାଙ୍କର ପରିଚୟର ସୀମାରେଖା ଆଙ୍କିବା ଅସମ୍ଭବ । ସେ କାହାର ଅନୁଗାମୀ ନହୋଇ ସବୁବେଳେ ନେତୃତ୍ୱ ଜାହିର କରୁଥିଲେ । ମୁରବୀପଣିଆରେ ସେ ସମସ୍ତଙ୍କୁ ଚମତ୍କୃତ କରିପାରିଥିଲେ । ପଦବୀ ବା ଭୂଷଣ ତାଙ୍କ ପାଇଁ ବଡ଼ କଥା ନଥିଲା । ମଣିଷ ମନକୁ ଚିହ୍ନିବା ବା ଛୁଇଁବା ତାଙ୍କ ନେତାପଣିଆର ଚାତୁରୀ ନଥିଲା ବରଂ ଚମତ୍କାରିତା ଥିଲା । ନିନ୍ଦା ପ୍ରଶଂସାକୁ ସେ କେବେ ଖାତିର କରୁନଥିଲେ । ସେ ଥିଲେ ଅବଦମିତ ବ୍ୟକ୍ତିତ୍ୱର ଅଧିକାରୀ । ଯାହା ତାଙ୍କର ଛାତ୍ର ଜୀବନରୁ ହିଁ ପ୍ରମାଣିତ ହୋଇଥିଲା । ଖେଳୁଆଡ଼ ମନ ଦେଇ ଜୀବନର ଝଡ଼ରେ ଉଡ଼ି ବୁଲିବା ତାଙ୍କର ଶ୍ରେଷ୍ଠ ଅଭିପ୍ସା ଥିଲା । ଯେତେବେଳେ ଯେଉଁ କଥାରେ ମନ ମାନି ଯାଉଥିଲା ତାଙ୍କୁ ସମସ୍ତଙ୍କ ବିରୋଧ ସତ୍ତ୍ୱେ ଦୃଢ଼ ପଦକ୍ଷେପରେ ସେ କାର୍ଯ୍ୟକାରୀ କରିପାରୁଥିଲେ । ସ୍ରୋତର ପ୍ରତିକୂଳରେ ଯିବା ତାଙ୍କର

ଅଭ୍ୟାସରେ ପରିଣତ ହୋଇଯାଇଥିଲା । ସେ ଏକାକୀ ଚାଲି ଅନ୍ୟମାନଙ୍କୁ ପ୍ରଭାବିତ କରିପାରୁଥିଲେ । ଜୀବନର ସମସ୍ତ ଅଧ୍ୟାୟରେ ତାଙ୍କର ଦୁର୍ବାର ବ୍ୟକ୍ତିତ୍ୱ ପ୍ରମାଣିତ ।

ତାଙ୍କର ଦୁଃସାହସିକ କାର୍ଯ୍ୟ ପାଇଁ ଇଣ୍ଡୋନେସିଆର ସର୍ବୋଚ୍ଚ ବେସାମରିକ ସମ୍ମାନ 'ଭୂମିପୁତ୍ର' ଉପାଧି ତାଙ୍କୁ ଦିଆଯାଇଥିଲା । ପୁଣି ୧୯୯୫ ମସିହା ଅଗଷ୍ଟ ମାସରେ ଏହି ଦେଶର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଜାକର୍ତ୍ତାରେ ଏକ ସ୍ୱତନ୍ତ୍ର ଉତ୍ସବରେ ସମ୍ମାନିତ କରାଯାଇଥିଲା । ଇଣ୍ଡୋନେସିଆର ତତ୍‌କାଳୀନ ରାଷ୍ଟ୍ରପତି ସୁକର୍ଣ୍ଣଙ୍କ ସହ ତାଙ୍କର ଘନିଷ୍ଠ ସଂପର୍କ ଥିଲା ଏବଂ ସେ ସୁକର୍ଣ୍ଣଙ୍କର କନ୍ୟା ମେଘାବତୀଙ୍କର ନାମକରଣ କରିଥିଲେ । ସେ ଇଣ୍ଡୋନେସିଆର ପ୍ରଧାନ ବିରୋଧୀ ଦଳ ନେତା ଥିବା ସମୟରେ ବିଜୁବାବୁଙ୍କର ମୃତ୍ୟୁର କିଛି ଦିନ ପୂର୍ବରୁ ତାଙ୍କୁ ଦେଖା କରିବାକୁ ଭୁବନେଶ୍ୱର ଆସିଥିଲେ ।

ଜଣେ ଇଂରାଜୀ କବିଙ୍କ ଭାଷାରେ, 'ମତେ ସ୍ୱାସ୍ଥ୍ୟ ଆଉ ସମୟ ଦିଅ ମୁଁ ରାଜାମାନଙ୍କର ଭାଗ୍ୟକୁ ଉପହାସ କରିବି' ଏକଥା ବିଜୁବାବୁଙ୍କର ଜୀବନରେ ପ୍ରମାଣିତ ଓ ପ୍ରତିଫଳିତ । ଏକ ସାର୍ଥକ ପୁରୁଷାକାରର ବ୍ୟକ୍ତିତ୍ୱ, ସମ୍ରାଟତ୍ତ୍ୱରେ ଦେଶ ଜାତିର ସ୍ୱାଭିମାନର ପ୍ରତୀକଭାବେ ଦରିଦ୍ର ଜନସାଧାରଣଙ୍କଠାରୁ ଆରମ୍ଭ କରି ଉଦ୍‌ଯୋଗୀ, ଉଦ୍ୟମୀ, ପ୍ରଭାବଶାଳୀ ସବୁଶ୍ରେଣୀର ଲୋକଙ୍କୁ ପ୍ରେରଣା ଦେଉଥିଲେ ଓ ପୃଷ୍ଠପୋଷକତା କରୁଥିଲେ ରାଜ୍ୟକୁ ମିଳିତଭାବେ ଉଠାଇ ସୁବର୍ଣ୍ଣ ଇତିହାସ ସୃଷ୍ଟି କରିବାକୁ । ଏଭଳି ଜୀବନସାରା ସମସ୍ତଙ୍କର ଆକର୍ଷଣର ଧ୍ରୁବତାରା ହୋଇ ସାଧାରଣ ଜନତାର ପ୍ରିୟ ପରିଜନ ଭାବେ ସ୍ନେହ ଓ ଶ୍ରଦ୍ଧାର ପାତ୍ର ହୋଇ ବଞ୍ଚିବା କ'ଣ ସାର୍ଥକ ଜୀବନ ନୁହେଁ ?

ଦୀର୍ଘ ବର୍ଷ ଧରି ସେ ଓଡ଼ିଶାର ରାଜନୈତିକ ଦୃଶ୍ୟପଟକୁ ପ୍ରଭାବିତ କରି ରଖିଥିଲେ । ତାଙ୍କର ଦେଶପ୍ରେମ, ଦୁଃସାହସିକତା, ଗଭୀର ଅନୁରକ୍ତି ତାଙ୍କୁ ଲୋକଙ୍କ ମଧ୍ୟରେ ରଖିଥିଲା । କବି ପଦ୍ମଚରଣ ଓଡ଼ିଆ ସୈନ୍ୟମାନଙ୍କୁ ଲକ୍ଷ୍ୟ କରି 'ଶାଳପ୍ରାଂଶୁ ବୀର ପାଇକ ପ୍ରଧାନ' ବୋଲି ଲେଖିଥିଲେ । ସତରେ ସେ ଥିଲେ ଶାଳପ୍ରାଂଶୁ । ଏକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ଅଧିକାରୀ, ବୀର ଓଡ଼ିଆ ଜାତିର ଏକ ଅପ୍ରତୀମ ପ୍ରତୀକ ବିଜୁବାବୁ । ଯାହାଙ୍କର ଆତ୍ମବିଶ୍ୱାସ ଓ ଆତ୍ମାଭିମାନ ଖୁବ୍ କମ୍ ଲୋକଙ୍କ ପାଖରେ ଦେଖିବାକୁ ମିଳେ । କର୍ମମୁଖର ଜୀବନରେ ସେ କେବେ ପରାଜୟ ସ୍ୱୀକାର କରିନଥିଲେ । ସେ ଥିଲେ ଏକ ବିପୁଳ କର୍ମପ୍ରେରଣାର ସ୍ରୋତ ଏବଂ ସେ ପ୍ରବାହ ସଂସ୍ପର୍ଶରେ ଯେ ଆସିଛି ସେ ନିଜେ ପ୍ରବାହିତ ହୋଇଯାଇଛି ।

ବିଜୁବାବୁ ଥିଲେ ସାହସିକତାର ପ୍ରଚଣ୍ଡ ଅଭିବ୍ୟକ୍ତି, ନିର୍ଭୀକତାର ଚରମ ପରାକାଷ୍ଠା ଓ ଏକ ବିରଳ ବ୍ୟକ୍ତିତ୍ୱ । ତାଙ୍କର ଅବର୍ତ୍ତମାନରେ ଗୋଟିଏ ଯୁଗର ଅବସାନ ଘଟିଛି । ତାଙ୍କର ଆଦର୍ଶ ଓ ଚିନ୍ତାଧାରାକୁ କାର୍ଯ୍ୟରେ ପରିଣତ କରିବା ହେବ ସେ ମହାନ୍ ନେତାଙ୍କର ଶତବର୍ଷ ସ୍ୱନକ୍ଷତ୍ରରେ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

୬୪–ଏ, କଳ୍ପନା ଏରିଆ
ବିଜେବି ନଗର, ଭୁବନେଶ୍ୱର



# ଆମ ସାଧାରଣତନ୍ତ୍ର : ଏକ ଦୃଷ୍ଟିପାତ

**ଅଧ୍ୟାପକ ବିଶ୍ୱରଂଜନ**

ଜାନୁଆରୀ ୨୬ ତାରିଖଟି ଆମର ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ ରୂପେ ପାଳିତ ହୋଇ ଆସୁଛି ୧୯୫୦ ମସିହାରୁ । କାରଣ ଏହି ଦିନଠାରୁ ଆମ ସ୍ୱାଧୀନ ଭାରତର ନୂତନ ସମ୍ବିଧାନ କାର୍ଯ୍ୟକାରୀ ହେଲା । ୧୯୪୭ ଅଗଷ୍ଟ ପନ୍ଦରର ସୂର୍ଯ୍ୟ ଏ ଦେଶରୁ ଦୀର୍ଘ ଦୁଇ ଶତାବ୍ଦୀର ପରାଧୀନତାର ଘନ ଅନ୍ଧକାରକୁ ସିନା ଦୂରେଇ ଦେଲା, ହେଲେ ୧୯୫୦ ଜାନୁଆରୀ ୨୬ ତାରିଖ କିନ୍ତୁ ଭାରତୀୟମାନଙ୍କର ବହୁ ଦିନର ସ୍ୱପ୍ନକୁ ସଫଳ କରି ଭାରତବର୍ଷକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ଭାବରେ ସମଗ୍ର ବିଶ୍ୱରେ ପରିଚିତ କରାଇ ଦେଲା । ସୁତରାଂ 'ସାଧାରଣତନ୍ତ୍ର ଦିବସ' ଭାବରେ ଏହି ଦିବସଟିର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସମ୍ବିଧାନର ପ୍ରଚଳନ ଦୃଷ୍ଟିରୁ ଏହି ଦିବସଟିକୁ 'ସମ୍ବିଧାନ ଦିବସ' ରୂପେ ମଧ୍ୟ ଅଭିହିତ କରାଯାଇପାରେ ।

'ସମ୍ବିଧାନ ଦିବସ' ହେଉ ବା 'ସାଧାରଣତନ୍ତ୍ର ଦିବସ'– ଏହି ଦିନଟିକୁ ଏକ 'ଜାତୀୟ ଦିବସ' ରୂପେ ପାଳନ କଲାବେଳେ ଏହାର ଆଦର୍ଶ ଓ ଉଦ୍ଦେଶ୍ୟକୁ ସର୍ବଦା ସ୍ମରଣ ରଖିବାକୁ ହେବ । ତାକୁ ଯଥାବିଧି କାର୍ଯ୍ୟକାରୀ କରାଇବାକୁ ହେବ । କ'ଣ ଆମ ସମ୍ବିଧାନର ମୂଳ ମନ୍ତ୍ର ? କ'ଣ ଆମ ସାଧାରଣତନ୍ତ୍ରର ଆଦର୍ଶ ଓ ଉଦ୍ଦେଶ୍ୟ ? ଜାତିର ଜନକ ମହାତ୍ମା ଗାନ୍ଧୀ ଏହି ପ୍ରସଙ୍ଗରେ ଥରେ କହିଥିଲେ – 'ମୁଁ ଭାରତଲାଗି ଏଭଳି ଏକ ସମ୍ବିଧାନ କରିବାର ପ୍ରୟାସୀ ହୋଇଛି, ଯାହା ଭାରତବାସୀଙ୍କୁ ସବୁ ଅଧିକାର ଦେବ । ଏପରିକି ଆବଶ୍ୟକତା ପଡ଼ିଲେ ପାପ କରିବାର ଅଧିକାର ମଧ୍ୟ । ମୁଁ ଏଭଳି ଏକ ଭାରତ ନିର୍ମାଣ କରିବାକୁ ଚାହେଁ, ଯେଉଁଠାରେ ଦରିଦ୍ରରୁ ଦରିଦ୍ରତମ ବ୍ୟକ୍ତି ମଧ୍ୟ ଅନୁଭବ କରିବ ଯେ, ଏହା ହେଉଛି ତା' ନିଜର ଦେଶ ଏବଂ ଏହାର ନିର୍ମାଣରେ ତା' ମତର ମର୍ଯ୍ୟାଦା ରହିଛି । ମୁଁ ଏଭଳି ଏକ ଭାରତ ଚାହେଁ, ଯେଉଁଠାରେ ଉଚ୍ଚ–ନୀଚର ଭେଦଭାବ ରହିବ ନାହିଁ ଏବଂ ସବୁ ସଂପ୍ରଦାୟର ଲୋକେ ମିଳିମିଶି ପରସ୍ପର ମଧ୍ୟରେ ସଦ୍‌ଭାବ ରକ୍ଷା କରି ଚଳିବେ ।' ଗାନ୍ଧିଜୀଙ୍କର ଏଭଳି ଏକ ସୁନ୍ଦର ସ୍ୱପ୍ନର ସ୍ୱାଧୀନ ଭାରତ ନିର୍ମାଣର ଅଭିବ୍ୟକ୍ତି ନିଶ୍ଚିତ ଭାବରେ ପ୍ରତିଫଳିତ ହୋଇଛି ଆମ ସମ୍ବିଧାନରେ । ତାହା କେତେଦୂର କାର୍ଯ୍ୟକାରୀ ହୋଇଛି– ତାହା ଏକ ଭିନ୍ନ ପ୍ରସଙ୍ଗ । ମାତ୍ର ପ୍ରଥମେ ଚିହ୍ନାଯାଉ ଏହି ଆଦର୍ଶଗୁଡ଼ିକୁ । ଉପଲବ୍ଧ କରାଯାଉ ଏହାର ଭାବଧାରା ।

ଭାରତକୁ ଏକ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ କରିଥିବା ଆମ ସମ୍ବିଧାନର ମୂଳମନ୍ତ୍ର ହେଉଛି, ମୋ' ବିଚାରରେ ଚାରୋଟି – ନ୍ୟାୟ, ସ୍ୱାଧୀନତା, ସାମ୍ୟ ଓ ମିତ୍ରତା (Justice, Liberty, Equality & Fraternity) । ଏହି ଆଦର୍ଶ ଭାବଧାରାଗୁଡ଼ିକ ମୂଳରୁ ଆମ ସମ୍ବିଧାନରେ ମୁଖବନ୍ଧରେ ହିଁ ସ୍ପଷ୍ଟ ଭାବରେ ସୂଚେଇ ଦିଆଯାଇଛି । ପ୍ରଥମେ 'ନ୍ୟାୟ' ପ୍ରଦାନର କଥା କୁହାଯାଇଛି । ସାମାଜିକ ନ୍ୟାୟ, ଅର୍ଥନୈତିକ ନ୍ୟାୟ ଏବଂ ରାଜନୈତିକ ନ୍ୟାୟ – ଜୀବନ ଓ ସମାଜର ପ୍ରତ୍ୟେକ ସ୍ତରରେ 'ନ୍ୟାୟ'ର ଗୁରୁତ୍ୱକୁ ହିଁ ଅଗ୍ରାଧିକାର ଦିଆଯାଇଛି । ଏକ ଭେଦଭାବ ବିହୀନ ସମାଜ ଗଠନ ଏହି 'ନ୍ୟାୟ'ର ଉଦ୍ଦେଶ୍ୟ । ଏହି ନ୍ୟାୟ ହେଉଛି ସମାଜର କଲ୍ୟାଣ

ସହିତ ବ୍ୟକ୍ତିଗତ ଆଚରଣର ସମନ୍ୱୟ । ସର୍ବସାଧାରଣଙ୍କ ହିତ ସାଧନ ହେଲା ନ୍ୟାୟର ମୂଳତତ୍ତ୍ୱ ।

ଏହାପରେ ଆସୁଛି 'ମୁକ୍ତି' ବା 'ସ୍ୱାଧୀନତା'ର କଥା । ଦେଶ ସିନା ମୁକ୍ତ ହେଲା ଏକ ବିଦେଶୀ ଶାସନରୁ, ହେଲେ ଏକ ସ୍ୱାଧୀନ ରାଷ୍ଟ୍ରରେ ବ୍ୟକ୍ତି ମଧ୍ୟ ମୁକ୍ତିର ସ୍ୱାଦ ଚାଖିବ । ମୁକ୍ତ ଭାବନା ଏବଂ ଏହାର ମୁକ୍ତ ପରିପ୍ରକାଶ ହେଉଛି ବ୍ୟକ୍ତି ଜୀବନର ଅସଲ କଥା । ଆପଣାର ବିଶ୍ୱାସ ଏବଂ ବିଚାରରେ ସ୍ୱାଧୀନତା ନ ରହିଲେ – ରାଷ୍ଟ୍ରୀୟ ସ୍ୱାଧୀନତା ଅର୍ଥହୀନ ହୋଇପଡ଼ିବ । ଅବଶ୍ୟ ଏକ ସ୍ୱାଧୀନ ରାଷ୍ଟ୍ରରେ ମଧ୍ୟ ବ୍ୟକ୍ତି ସ୍ୱାଧୀନତା ନ ଥାଇପାରେ, ଯଦି ସେ ରାଷ୍ଟ୍ରରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରଚଳିତ ନୁହେଁ । ମାତ୍ର ଆମର ଶାସନ ବ୍ୟବସ୍ଥା ଗଣତନ୍ତ୍ରର ନୀତି ଓ ଆଦର୍ଶ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଏହି 'ସ୍ୱାଧୀନତା' ଭାବଧାରାଟିର ବିଶେଷ ମହତ୍ତ୍ୱ ରହିଛି । ଗାନ୍ଧୀଙ୍କ ଭାଷାରେ କହିଲେ, 'ଯଦି ବ୍ୟକ୍ତିର ସ୍ୱାଧୀନତା ନ ରହେ, ତେବେ ସୁନିଶ୍ଚିତ ଭାବରେ ସବୁକିଛି ଅପହୃତ ହୋଇ ରହେ, କାରଣ ଯଦି ବ୍ୟକ୍ତିର କୌଣସି ମହତ୍ତ୍ୱ ନ ରହେ, ତେବେ ସମାଜରେ ଆଉ ପ୍ରକୃତରେ କ'ଣ ରହିଲା ? କେବଳ ଜଣେ ବ୍ୟକ୍ତି ହିସାବରେ ନିଜର ସ୍ୱାଧୀନତା ରହିଥିଲେ ଯାଇ ଜଣେ ମନୁଷ୍ୟ ଆପଣାକୁ ସମାଜର ସେବା ଲାଗି ସ୍ୱେଚ୍ଛା ପ୍ରବୃତ୍ତ ହୋଇ ସମ୍ପୂର୍ଣ୍ଣ ଭାବରେ ସମର୍ପିତ କରିଦେଇ ପାରିବ । ମାତ୍ର ଯଦି ସ୍ୱାଧୀନତାକୁ ତା'ଠାରୁ ଛଡ଼ାଇ ନିଆଯାଏ, ତେବେ ବ୍ୟକ୍ତି କେବଳ ଏକ ଯନ୍ତ୍ରବତ୍ ହୋଇ ରହିବ ଏବଂ ତଦ୍ୱାରା ସମାଜ ବିନାଶପ୍ରାପ୍ତ ହେବ ।' (ଗାନ୍ଧୀ ମାନସ, ପୃ.୩୬୦) ଯେଉଁ ଭାରତବର୍ଷ, ତା'ର ସୀମାରେ ଜନ୍ମ ଗ୍ରହଣ କରିଥିବା ନିମ୍ନତମ ମନୁଷ୍ୟକୁ ମଧ୍ୟ ସ୍ୱାଧୀନ ହେବାର ନିର୍ଭର ପ୍ରତିଶ୍ରୁତି ଦିଏ ନାହିଁ, ଗାନ୍ଧୀଙ୍କ ଲାଗି ତାହା କଦାପି ଏକ ସ୍ୱାଧୀନ ଭାରତବର୍ଷ ନୁହେଁ । ସ୍ୱାଧୀନତା ହେଉଛି ଜୀବନର ନିଃଶ୍ୱାସ ପ୍ରଶ୍ୱାସ ପରି । ଏହା ବ୍ୟକ୍ତିକୁ ତା' ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ଲାଗି ଅନୁକୂଳ ପରିବେଶ ସୃଷ୍ଟି କରେ । ଆବଶ୍ୟକୀୟ ଉପାଦାନ ଯୋଗାଇ ଦିଏ ।

ମାତ୍ର ବ୍ୟକ୍ତି ସ୍ୱାଧୀନତା କଥା କହିଲାବେଳେ ଭୁଲିଗଲେ ଚଳିବ ନାହିଁ ଯେ ବ୍ୟକ୍ତିର ଏକ ସାମାଜିକ ସତ୍ତା ମଧ୍ୟ ରହିଛି । ଏକ ନିର୍ଦ୍ଦିଷ୍ଟ ରାଷ୍ଟ୍ରର ଅଧିବାସୀ ଭାବରେ ରାଷ୍ଟ୍ରର ମଧ୍ୟ ତା' ଉପରେ କିଛି ଅଧିକାର ଓ ନିୟନ୍ତ୍ରଣ ରହିଛି । ସୁତରାଂ ସଂପୂର୍ଣ୍ଣ ପ୍ରତିବନ୍ଧକ ଶୂନ୍ୟ ତଥା ନିୟନ୍ତ୍ରଣବିହୀନ ସ୍ୱାଧୀନତାକୁ ଆମେ ପ୍ରକୃତ ସ୍ୱାଧୀନତା କହିପାରିବା ନାହିଁ । କୌଣସି ପ୍ରତିବନ୍ଧକ ନଥିବା ବ୍ୟକ୍ତିବାଦ ବା ବ୍ୟକ୍ତି ସ୍ୱାଧୀନତା ହେଉଛି ଜଙ୍ଗଲ–ସଭ୍ୟତାର ଲକ୍ଷଣ । ଏହାଦ୍ୱାରା ସମାଜରେ ବିଶୃଙ୍ଖଳା ସୃଷ୍ଟି ହେବ ଏବଂ ସମସ୍ତେ ସମାନ ଭାବରେ କେବେ ସ୍ୱାଧୀନତା ଉପଭୋଗ କରିପାରିବେ ନାହିଁ । ନିଜର ସ୍ୱାଧୀନତା ଅନ୍ୟ ପାଇଁ ଯେପରି ବିପଦ ବା ଆତଙ୍କର କାରଣ ନହୁଏ, ସେଥିପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ । ତେଣୁ ଆଇନ୍ ଦ୍ୱାରା ହିଁ ରାଷ୍ଟ୍ରରେ ବ୍ୟକ୍ତିର ସ୍ୱାଧୀନତା ସୁରକ୍ଷିତ ରହେ । ଭାରତର ସାଧାରଣତନ୍ତ୍ରର ଆଦର୍ଶ ହେଉଛି ବ୍ୟକ୍ତି–ସ୍ୱାଧୀନତା ଅକ୍ଷୁଣ୍ଣ ରହିବ – ମାତ୍ର ତା'ର ସାମାଜିକ ସତ୍ତା ମଧ୍ୟ ବିପନ୍ନ ହେବ ନାହିଁ । ସାମାଜିକ ଅଗ୍ରଗତିରେ ବ୍ୟକ୍ତିର ସ୍ୱାଧୀନତା ଆଦୌ ବାଧକ ହେବ ନାହିଁ ।

'ସ୍ୱାଧୀନତା' ସହିତ ସଂଯୁକ୍ତ ହୋଇ ରହିଛି 'ସାମ୍ୟ' ବା 'ସମତା' । ଏ ଦୁଇ ଭାବଧାରା ପରସ୍ପରର ପରିପୂରକ । ସମତାର ଅର୍ଥ ନୁହେଁ ଯେ, ଶାରୀରିକ, ମାନସିକ ତଥା ବୌଦ୍ଧିକ ଦୃଷ୍ଟିକୋଣରୁ ପ୍ରତ୍ୟେକ ବ୍ୟକ୍ତି ସମାନ । ଏହା ସମ୍ଭବ ମଧ୍ୟ ନୁହେଁ । ବରଂ କହିବାକୁ ଗଲେ, ସମାନତା ନୁହେଁ, ଅସମତା ହିଁ ସୃଷ୍ଟିର ଲକ୍ଷଣ । ସମାନ ଅଙ୍ଗପ୍ରତ୍ୟଙ୍ଗ ନେଇ ଜନ୍ମ ହୋଇଥିଲେ ହେଁ, ଦେଖିବାକୁ କେହି ଏକାଭଳି ନୁହନ୍ତି । ପ୍ରକୃତି ଓ ପ୍ରବୃତ୍ତିରେ ମଧ୍ୟ ପ୍ରତ୍ୟେକ ଅପରଠାରୁ ଭିନ୍ନ । ସୁତରାଂ ଗୋଟିଏ ରାଷ୍ଟ୍ରର ଅଧିକାରୀମାନଙ୍କ ପାଇଁ ସମାନତାର କଥା ଉଲ୍ଲେଖ କଲାବେଳେ ଦୃଷ୍ଟି ଦିଆଯାଇଛି । ପ୍ରତ୍ୟେକ ବ୍ୟକ୍ତିକୁ ସମାନ ସ୍ଥିତି ଓ ସୁଯୋଗ ପ୍ରଦାନ କରାଯିବ । ସାମାଜିକ ପ୍ରଭେଦର ଆଧାର କେବଳ ଏହାର ଉପଯୋଗିତା ପାଇଁ । ପ୍ରତ୍ୟେକ ବ୍ୟକ୍ତିକୁ ନିଜର ସାମର୍ଥ୍ୟ ଓ କାର୍ଯ୍ୟକ୍ଷମତାର ବିକାଶ ଲାଗି ସୁଯୋଗ ମିଳିବା ଉଚିତ୍ । ଆମର ସାଧାରଣତନ୍ତ୍ର ଏହିଭଳି ଏକ ଆଦର୍ଶରେ ଆସ୍ଥା ରଖିଛି, ଯେଉଁଠି ଜଣେ ଶାସକ ଓ ଜଣେ ଶ୍ରମଜୀବୀ, ଜଣେ ଧନୀ ଏବଂ ଜଣେ ଦରିଦ୍ର, ଜଣେ ତଥାକଥିତ ଉଚ୍ଚ ଜାତି ବା ବର୍ଣ୍ଣର, ଅନ୍ୟ ଜଣେ ନିମ୍ନ ଜାତିର– ଏମାନେ ସମସ୍ତେ ଗୋଟିଏ ସ୍ତରର । ଏମାନଙ୍କ ମଧ୍ୟରେ ଭେଦ ବା ଭିନ୍ନତାର ବିଚାର ଆଦୌ ଗ୍ରହଣୀୟ ବା ସ୍ପୃହଣୀୟ ନୁହେଁ ।

ଶେଷରେ ଆମ ସାଧାରଣତନ୍ତ୍ରର ଅସଲ ଗାରିମା ରହିଛି, ସମ୍ବିଧାନରେ ବ୍ୟବହୃତ ଗୋଟିଏ ଶବ୍ଦରେ, ତାହା ହେଉଛି 'ଫ୍ରାଟରନିଟି' Fraternity assuring the dignity of the individual and the unity and integrity of the nation. (ବ୍ୟକ୍ତି ମର୍ଯ୍ୟାଦାର ସୁରକ୍ଷା ସହିତ ଜାତୀୟ ଐକ୍ୟ ତଥା ସଂହତି ବଜାୟ ରଖିବା ଲାଗି 'ଭ୍ରାତୃତ୍ୱ' ବା 'ମୈତ୍ରୀ' ଭାବ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି ।) 'ସାମ୍ୟ' ଓ 'ସ୍ୱାଧୀନତା' ସହ ଏହି 'ମୈତ୍ରୀ' ସପକ୍ଷରେ ହିଁ ଫରାସୀ ରାଷ୍ଟ୍ର ବିପ୍ଳବ ସମୟରେ ବିପ୍ଳବୀମାନେ ସ୍ୱର ଉତ୍ତୋଳନ କରିଥିଲେ । ଆମ ସାଧାରଣତନ୍ତ୍ର ପାଇଁ ଏହି 'ମୈତ୍ରୀ' ଭାବ ହିଁ ବିଶେଷ ମହତ୍ୱ ରଖେ । କାରଣ, ଭାରତ ହେଉଛି ଏଭଳି ଏକ ବିଶାଳ ଦେଶ, ଯେଉଁଠି ବହୁ ଜାତି, ବହୁ ଧର୍ମ, ବହୁ ବର୍ଣ୍ଣ, ବହୁ ଭାଷା ଓ ଚଳଣିର ଲୋକ ବାସ କରନ୍ତି । ସୁତରାଂ ବହୁ ଅନୈକ୍ୟରେ ଭରପୂର ଭାରତବର୍ଷରେ ରାଷ୍ଟ୍ରୀୟ ଐକ୍ୟ ଓ ସଂହତି ପ୍ରତିଷ୍ଠା ହୋଇ ପାଇବ କେବଳ ପାରସ୍ପରିକ ସଦ୍‌ଭାବ ଭ୍ରାତୃତ୍ୱ ଓ ମୈତ୍ରୀର ଭାବ–ବନ୍ଧନ ଦ୍ୱାରା । ନ୍ୟାୟ, ସାମ୍ୟ ଓ ସ୍ୱାଧୀନତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏକ ରାଷ୍ଟ୍ର ନିର୍ମାଣରେ ସମସ୍ତେ ଭାରତୀୟ ଯେଭଳି ଅନୁଭବ କରିବେ ଯେ, ସେମାନେ ସମସ୍ତ ହେଉଛନ୍ତି, ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଗୋଟିଏ ମାଟି–ମାଆର ସନ୍ତାନ ଏବଂ ଏକ ବିଶାଳ ପରିବାରର ସଦସ୍ୟ ।

ହିଁ, ନ୍ୟାୟ, ସ୍ୱାଧୀନତା, ସାମ୍ୟ ଓ ମୈତ୍ରୀ – ଏହା ହିଁ ଥିଲା ଆମ ସାଧାରଣତନ୍ତ୍ରର ଆଦର୍ଶ – ଆମ ସମ୍ବିଧାନର ଘୋଷିତ ନୀତି । ମାତ୍ର ଆମର ସାଧାରଣତନ୍ତ୍ରର ବୟସ ବଢ଼ିବା ସଂଗେସଂଗେ ଏହାର ଆଦର୍ଶର ଉଲ୍ଲଙ୍ଘନ ମଧ୍ୟ ଅଧିକରୁ ଅଧିକମାତ୍ରାରେ ବଢ଼ି ଚାଲିଛି । ସାମାଜିକ, ଅର୍ଥନୈତିକ କ୍ଷେତ୍ରରେ ବୈଷମ୍ୟ, ମୈତ୍ରୀ ବଦଳରେ ଜାତି, ଧର୍ମକୁ ନେଇ ବୈରତା, ତୀବ୍ର ଆଞ୍ଚଳିକବାଦ ଭିତରେ ଜାତୀୟ ଐକ୍ୟ ଓ ସଂହତି ବିପନ୍ନ ହେବାରେ ଲାଗିଛି । ଆଇନ୍‌ର ପ୍ରଣେତା ଓ ପାଳନକର୍ତ୍ତାମାନେ ମଧ୍ୟ ଆଇନ୍‌କୁ ମାନ୍ୟତା ଦେଉନାହାନ୍ତି । ନ୍ୟାୟର ମାର୍ଗ ଅପହଂଚ ହୋଇ ଯାଉଛି । ସ୍ୱାଧୀନତା ହୁଏତ ସ୍ୱେଚ୍ଛାଚାରିତା ଅବା ଅରାଜକତାର ରୂପ ନେଉଛି । ସାରା ପୃଥିବୀରେ ଏକ ନୂତନ ଶକ୍ତି ଭାବରେ ମୁଣ୍ଡ ଟେକି ଠିଆ ହେବା ପାଇଁ ସ୍ୱପ୍ନ ଦେଖୁଥିବା ଭାରତର ନେତୃବର୍ଗ ଏହି ଦୁଃସ୍ଥିତି ସଂପର୍କରେ ଗଭୀର ଭାବରେ ଅନୁଧ୍ୟାନ କରିବାର ବେଳ ଆସିଛି । କାରଣ ଆମର ଗଣତାନ୍ତ୍ରିକ ଶକ୍ତିର ପରାଜୟ ଘଟିଲେ ଆଉ କୌଣସି କ୍ଷେତ୍ରରେ ଅଭ୍ୟୁଦୟ ଆଦୌ ସହଜ କିମ୍ବା ସମ୍ଭବ ହେବ ନାହିଁ ।

ନେତାଜୀ ନିବାସ
୧୯୯, କଂସାରିଝର, ୟୁନିଟ୍–୬, ଭୁବନେଶ୍ୱର–୧



# ପୁଣ୍ୟକ୍ଷେତ୍ର କନ୍ୟାକୁମାରୀ

ସୁଚିତ୍ରା ବେହେରା

ଭାରତର ସର୍ବଶ୍ରେଷ୍ଠ ପୁଣ୍ୟକ୍ଷେତ୍ର ମଧ୍ୟରେ କନ୍ୟାକୁମାରୀ ହେଉଛି ଅନ୍ୟତମ । କେରଳର ଦକ୍ଷିଣାଞ୍ଚଳରେ ତାମିଲଭାଷୀ ଅଞ୍ଚଳଟିଏ ଯୋଡି ହୋଇଯାଇଛି । ତାହାରି ମଧ୍ୟରେ ସମୁଦ୍ରକୁ ଲାଗି ଏକ କ୍ଷୁଦ୍ର ଅଖ୍ୟାତ ସହରଟିଏ କନ୍ୟାକୁମାରୀ । ଏହି ସହରର ତିନି ପାଖରେ ତିନି ସିନ୍ଧୁ । ଏହିଠାରେ ବର୍ଷର ସବୁଦିନ ସୂର୍ଯ୍ୟୋଦୟ ଦେଖିହୁଏ । ମାତ୍ର ଅକ୍ଟୋବର ୧୫ରୁ ମାର୍ଚ୍ଚ ୧୫ ପର୍ଯ୍ୟନ୍ତ ଦକ୍ଷିଣାୟନ ସୂର୍ଯ୍ୟାସ୍ତ ହୋଇଥାଏ । ମନ୍ଦିର ନିକଟରେ ସମୁଦ୍ର ତଟରେ ସାବିତ୍ରୀ, ଗାୟତ୍ରୀ, କନ୍ୟା, ସ୍ଥାଣୁ, ମାତୃ-ପିତୃ ଆଦି ତୀର୍ଥଘାଟ ଅବସ୍ଥିତ । ତିନୋଟି ସମୁଦ୍ରର ସଙ୍ଗମ ସ୍ଥଳ ହୋଇଥିବାରୁ ଏହାକୁ ତ୍ରିବେଣୀ ସଙ୍ଗମ ବୋଲି କୁହାଯାଏ । ୧୬ଟି ଖମ୍ବ ଥିବା ମଣ୍ଡପ ନିର୍ମିତ ଏହିଠାରେ । ଅମାବାସ୍ୟାରେ ଏହିଠାରେ ଲୋକମାନେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ତର୍ପଣ କାର୍ଯ୍ୟ କରନ୍ତି । ଏହାର ଉତ୍ତର ଭାଗରେ ଶଙ୍କରାଚାର୍ଯ୍ୟଙ୍କ ମନ୍ଦିର ଅବସ୍ଥିତ । ସମୁଦ୍ର ତଟ ଭାଗରୁ ୨୦୦ ମିଟର ଦୂରରେ ବିବେକାନନ୍ଦ ଓ ଥିରୁବଲ୍ଲୁବର ସ୍ମାରକ ରହିଅଛି । ଏହିଠାରେ ଚଟାଣ ଉପରେ ଏକ ପାଦ ଚିହ୍ନ ରହିଅଛି, ଯାହାକି ଦେବୀଙ୍କ ପାଦଚିହ୍ନ ରୂପେ ବିଶ୍ୱାସ କରାଯାଏ । ଦେବୀଙ୍କ କୃପାରୁ କାଳୀଙ୍କ ପରମ ଭକ୍ତ ସ୍ୱାମୀ ବିବେକାନନ୍ଦ ଏହି ଚଟାଣ ଉପରେ ବସି ତପସ୍ୟା କରିବାରେ ଅଦ୍‌ଭୁତ ଶକ୍ତିପ୍ରାପ୍ତ ହୋଇଥିଲେ । ନିକଟରେ ଥିବା ଧ୍ୟାନ ମଣ୍ଡପରେ ଭକ୍ତମାନେ ବସି ଧ୍ୟାନ କରନ୍ତି ।

ପୁରାଣ ଯୁଗରେ କନ୍ୟାକୁମାରୀ କେରଳର କିଛି ଭାଗରେ ଥିଲା । ମାତ୍ର ୧୯୫୬ ମସିହାରେ ଏହା ତାମିଲ୍‌ନାଡୁରେ ରହିଲା । ଏହିଠାରେ ପରାଶକ୍ତି ଦେବୀ ଭଗବତୀ ଓ କନ୍ୟାକୁମାରୀ ନାମରେ ନାମିତ । ଭଗବାନ ପରଶୁରାମ ଦେବୀଙ୍କର ମୂର୍ତ୍ତି ପ୍ରତିଷ୍ଠା କରିଥିବାର କିମ୍ବଦନ୍ତୀ ରହିଛି । ମାତ୍ର ଶିଳାଲେଖରୁ ଜଣାପଡେ ଯେ ପାଣ୍ଡ୍ୟ ରାଜାଙ୍କ ଦ୍ୱାରା ନିର୍ମିତ ହୋଇ କୁଳଦେବୀ ରୂପେ ପୂଜା ପାଉଥିଲେ । ଦେବୀଙ୍କ ଦର୍ଶନରେ ଭକ୍ତର ଅଜ୍ଞାନ ଦୂର ହୋଇ ଶାନ୍ତିପ୍ରାପ୍ତ ହୁଏ ।

ଦେବୀଙ୍କ ଆବିର୍ଭାବ ସମ୍ବନ୍ଧରେ ଏକ ପୌରାଣିକ ସତ୍ୟତା ରହିଛି । ସତ୍ୟ ଯୁଗରେ ବାଣାସୁର ନାମକ ରାକ୍ଷସର ତପସ୍ୟାରେ ଭଗବାନ ବ୍ରହ୍ମା ସନ୍ତୁଷ୍ଟ ହୋଇ ବର ଯାଚିଲେ । ରାକ୍ଷସ ବାଣାସୁର ଅମର ବର ମାଗିବାରୁ ବ୍ରହ୍ମା ଦ୍ୱନ୍ଦ୍ୱରେ ପଡିଲେ । ଏହା ସମ୍ଭବ ନୁହେଁ ବୋଲି କହି ଇଚ୍ଛା ମୃତ୍ୟୁର ବର ଯାଚିଲେ । ଏକ କୁମାରୀ କନ୍ୟାଦ୍ୱାରା ମୃତ୍ୟୁବରଣ କରିବାକୁ ରାକ୍ଷସ କହିଲା । ବ୍ରହ୍ମା ଆଶୀର୍ବାଦ ଦେଇ ତଥାସ୍ତୁ କହିଲେ । ବର ପ୍ରାପ୍ତି ପରେ ବାଣାସୁରର ଅଂହଭାବ ଆସିଗଲା । ସେ ନିଶ୍ଚିତ ହୋଇଗଲା ଯେ କୌଣସି କୁମାରୀ କନ୍ୟା ତାକୁ ମାରିବା ସମ୍ଭବ ନୁହେଁ ।

ତେଣୁ ଦେବଗଣ ଓ ଋଷିଗଣଙ୍କ ପ୍ରତି ତା'ର ଅତ୍ୟାଚାର ବୃଦ୍ଧି ପାଇଲା । ସମସ୍ତେ ଭୂମି ଦେବୀଙ୍କୁ ପ୍ରାର୍ଥନା କଲେ । ଭୂମି ଦେବୀ ବିଷ୍ଣୁଙ୍କୁ ସାହାଯ୍ୟ ମାଗିଲେ । ତା'ପରେ ଦେବତାମାନେ ପରାଶକ୍ତି ଦେବୀଙ୍କୁ ପ୍ରାର୍ଥନା କରି ଯଜ୍ଞ ଆରମ୍ଭ କଲେ । ଦେବୀ ମଧ୍ୟ ପ୍ରସନ୍ନ ହେଲେ । ବାଣାସୁରକୁ ମାରି ଜଗତରେ ଧର୍ମ ପ୍ରତିଷ୍ଠା କରିବାର ପ୍ରତିଜ୍ଞା କଲେ ।

ପରାଶକ୍ତି ଏକ କୁମାରୀକନ୍ୟାର ଅବତାର ଗ୍ରହଣ କରି କନ୍ୟାକୁମାରୀଠାରେ ଯାଇ କଠୋର ତପସ୍ୟା କଲେ । ଶିବଙ୍କୁ

ବିବାହ କରିବା ପାଇଁ ପାର୍ବତୀଙ୍କ ଭଳି ତପସ୍ୟାରେ ନିମଗ୍ନା ରହିଲେ । ପରାଶକ୍ତି ବିଷ୍ଣୁଙ୍କର ମାନସ କନ୍ୟା ଥିଲେ । ତେଣୁ ଶିବଙ୍କୁ ଏ ବିଷୟରେ ବିଷ୍ଣୁ ଜଣାଇଲେ । ଶିବ ସମ୍ମତି ପ୍ରଦାନ କଲେ ଓ କୁମାରୀକା ଯାତ୍ରା କଲେ । ବିବାହର ସମସ୍ତ ଆୟୋଜନ ନାରଦ କଲେ । ଦେବତାମାନେ ଚିନ୍ତିତ ହୋଇପଡିଲେ ଯେ ଯଦି କୁମାରୀକନ୍ୟା ବିବାହ କରିନେବେ ତା'ହେଲେ ବାଣାସୁର ବଧ ହୋଇପାରିବ ନାହିଁ । ଦେବତାମାନେ ଶିବଙ୍କୁ ଏହି ବିବାହରୁ ନିବୃତ୍ତ କରିବା ପାଇଁ ନାରଦଙ୍କୁ ପରାମର୍ଶ ଦେଲେ । ନାରଦ ଶିବଙ୍କ ନିକଟକୁ ଯାଇ ବ୍ରହ୍ମଜ୍ଞାନ ଚର୍ଚ୍ଚା କଲେ । ଶିବ ବିମୁଗ୍ଧ ହୋଇ ବିବାହ କଥା ଭୁଲିଗଲେ । ଅଧାବାଟରେ ନାରଦ ଏକ କୁକୁଡାର ସ୍ୱର କଲେ । ସକାଳ ହୋଇଗଲା ବୋଲି ଶିବ ଜାଣିଲେ । ବ୍ରାହ୍ମ ମୁହୂର୍ତ୍ତରେ ବିବାହ କରିବାର ଲଗ୍ନବେଳ ଗଡିଗଲା । ଶିବ ଫେରିଗଲେ ଶୁଚିନ୍ଦ୍ରମକୁ । ବିଷର୍ଣ୍ଣ ହୋଇ ସେହିଠାରେ ସପରିବାରେ ରହିଲେ ।

କୁମାରୀଦେବୀ ଜାଣି ନଥିଲେ ଯେ ଏହା ସବୁ ଦେବତାଙ୍କର ମାୟା ଥିଲା । ସେ କେବଳ ସେହି ରାତିରେ ବିବାହ ଲଗ୍ନ ଥିବାର ଜାଣି ଥିଲେ । ଶିବ ନ ଆସିବାରୁ ସେ ଅନନ୍ତ ପ୍ରତୀକ୍ଷାରେ ବ୍ରତୀ ହେଲେ । ଆଜୀବନ କୁମାରୀ ରହିବାର ପ୍ରତିଜ୍ଞା କଲେ । ତା'ପରେ ବାଣାସୁର କୁମାରୀଦେବୀଙ୍କର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ବିବାହ କରିବାର ଜିଦ୍ ଧରିଲା । ଦେବୀ ଓ ବାଣାସୁର ମଧ୍ୟରେ ଘୋର ଯୁଦ୍ଧ ହେଲା । ଚକ୍ର ପ୍ରହାର କରି ଦେବୀ ତାକୁ ବଧ କଲେ । ଦେବତା ଓ ଋଷିଗଣ ପ୍ରସନ୍ନ ହୋଇ ଦେବୀଙ୍କ ସ୍ତୁତି କଲେ । ଧର୍ମ ପ୍ରତିଷ୍ଠା ହେଲା ।

କନ୍ୟାକୁମାରୀ ଦେବୀ ପ୍ରତି ରାତିରେ ବିବାହ ବେଶ ହୋଇ ପୂଜା ପାଆନ୍ତି । ମନ୍ଦିରରେ ବାଜି ଉଠେ କର୍ଣ୍ଣାଟ ମହୁରୀ । କୁମାରୀ ବକ୍ଷରୁ ଖସି ପଡେ ଶୀର୍ଣ୍ଣ ସୁମନମାଳା । ସଙ୍ଗେ ସଙ୍ଗେ କୁମାରୀ ଦେବୀଙ୍କର ବେଶ ପରିବର୍ତ୍ତନ ଘଟେ । ବିବାହ ନକରି ଆଜୀବନ କୁମାରୀ ରହିବାରୁ ତାଙ୍କର ନାମ କନ୍ୟାକୁମାରୀ ହୋଇଅଛି । ସେହିଦିନଠାରୁ ଦେବୀଙ୍କ ନାମାନୁସାରେ ସହରର ନାମ କନ୍ୟାକୁମାରୀ ହୋଇଅଛି । ସେହି ପାଷାଣମୟୀ ଦେବୀ ବିଶ୍ୱର ସମସ୍ତ କୁମାରୀ କନ୍ୟାମାନଙ୍କର ଆଶା, ବିଶ୍ୱାସ ଓ ସରଳତାର ବିଗ୍ରହ ରୂପେ ପୂଜା ପାଉଛନ୍ତି ।

କନ୍ୟାକୁମାରୀ ଦେବୀଙ୍କ ମନ୍ଦିର ପ୍ରବେଶ ଦ୍ୱାର ଭିତରେ କାଳ ଭୈରବଙ୍କ ମୂର୍ତ୍ତି ପ୍ରତିଷ୍ଠିତ । ସମୁଦ୍ର ନିକଟରୁ ପ୍ରଚଣ୍ଡ ପବନ ବହୁଥିବାରୁ ପୂର୍ବ ଦିଗର ଦ୍ୱାର ସବୁବେଳେ ବନ୍ଦ ରହିଥାଏ । କେବଳ ପୂଜା ପର୍ବରେ ଅଳ୍ପ ସମୟ ପାଇଁ ଖୋଲାଯାଏ । କନ୍ୟାକୁମାରୀ ଦେବୀଙ୍କ ଦକ୍ଷିଣ ପାର୍ଶ୍ୱରେ ଗଣେଶ, ସୂର୍ଯ୍ୟଦେବ ଓ ନାଗରାଜଙ୍କ କ୍ଷୁଦ୍ର ମନ୍ଦିରମାନ ଅବସ୍ଥିତ । ସକାଳ ୪.୩୦ମିନିଟ୍‌ରୁ ଦିନ ୧୧.୪୫ ମିନିଟ୍ ପର୍ଯ୍ୟନ୍ତ ଏବଂ ଅପରାହ୍ନ ୪ଟାରୁ ରାତି ୮ଟା ପର୍ଯ୍ୟନ୍ତ ଦର୍ଶନ ପାଇଁ ମନ୍ଦିର ଦ୍ୱାର ଖୋଲା ରହେ । ଏଠାରେ ବର୍ଷକରେ ଦୁଇଟି ଉତ୍ସବ ନବରାତ୍ରି ଓ ରଥଯାତ୍ରା ବହୁ ଆଡମ୍ବରରେ ପାଳିତ ହୁଏ ।

କନ୍ୟାକୁମାରୀଠାରୁ ୬ କିଲୋମିଟର ଦୂରରେ ଥିବା ଶୁଚିନ୍ଦ୍ରମଠାରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ଭିତରେ ଏକ ବୃକ୍ଷ ମୂଳରେ ଭଗବାନ ଶିବଙ୍କର ସ୍ୱୟଂମ୍ଭୁ ରୂପ ପ୍ରକଟିତ ହୋଇଅଛି । ଏଠାରେ ରାମ, ସୀତାଙ୍କର ବିଗ୍ରହ ସମ୍ମୁଖରେ ୧୮ ଫୁଟ ଉଚ୍ଚତା ବିଶିଷ୍ଟ ହନୁମାନଙ୍କ ମୂର୍ତ୍ତି ପ୍ରତିଷ୍ଠିତ । କନ୍ୟାକୁମାରୀଠାରୁ ୨୦ କିଲୋମିଟର ଦୂରରେ ଥିବା ନାଗରାଜଙ୍କ ମନ୍ଦିରରେ ଦିନକୁ ଦୁଇଥର ପୂଜା କରାଯାଏ । ଏଠାରେ ପ୍ରସାଦରେ ମୁଖ୍ୟତଃ ମାଟିର ଭୋଗ ଦିଆଯାଏ । ପ୍ରତ୍ୟେକ ରବିବାର ଦିନ ଭକ୍ତଙ୍କ ଭିଡ ଜମେ ଦର୍ଶନ କରିବା ପାଇଁ । ଏହିଠାରୁ କିଛି ଦୂରରେ ୧୪ ମହଲା ବିଶିଷ୍ଟ ଏକ ପ୍ରାସାଦ ପଦ୍ମନାଭପୁରମ ରହିଅଛି । ଏହାର ଚତୁଃପାର୍ଶ୍ୱରେ ବୃକ୍ଷର ସବୁଜିମାରେ ମଣ୍ଡିତ ହୋଇଅଛି ।

ଏହି ପବିତ୍ର ତୀର୍ଥକ୍ଷେତ୍ର କନ୍ୟାକୁମାରୀର ସନ୍ଦର୍ଶନରେ ପ୍ରତ୍ୟେକ ବ୍ୟକ୍ତିର ମନରେ ପବିତ୍ରତା ଭରିଯାଏ । କ୍ଷଣିକରେ ଐତିହାସିକ, ପୌରାଣିକ, ଭୌଗଳିକ ଦୃଷ୍ଟିକୋଣରୁ ଏହି କ୍ଷେତ୍ରର ବୈଶିଷ୍ଟ୍ୟତା ଥିଲେ ହେଁ ମୁଖ୍ୟତଃ ଧାର୍ମିକ ଦୃଷ୍ଟିରୁ ଏହା ଏକ ପବିତ୍ର ତୀର୍ଥ କ୍ଷେତ୍ର ଅଟେ ।

ପ୍ଲଟ ନଂ–୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର–୧୮

# ପ୍ରଥମ ସୁଗନ୍ଧିତ ଡାକଟିକଟ ଚନ୍ଦନ କାଠ

**ନୃସିଂହ ଦାଶ**

୨୦୦୬ ମସିହା ଡିସେମ୍ବର ୧୩ ତାରିଖ ଭାରତୀୟ ଡାକଟିକଟ ଇତିହାସରେ ଏକ ସ୍ମରଣୀୟ ଦିବସ ଥିଲା । କାରଣ ଏହିଦିନ ଭାରତୀୟ ଡାକ ବିଭାଗ ପ୍ରଥମଥର ପାଇଁ ଏକ ସୁଗନ୍ଧିତ ସ୍ମରଣୀୟ ଡାକଟିକଟ ପ୍ରସ୍ତୁତ କରି ଦେଶ ତଥା ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ, ଯାହା ଚନ୍ଦନ କାଠର ସୁଗନ୍ଧକୁ ନେଇ ପ୍ରସ୍ତୁତ କରାଯାଇଥିଲା । ଏହା ଅବିଶ୍ୱାସନୀୟ ହେଲେ ମଧ୍ୟ ଶତକଡା ଶହେ ଭାଗ ସତ୍ୟ । ଆମ୍ଭେମାନେ ଡାକଟିକଟ ବିଷୟରେ ଅଳ୍ପ ବହୁତ କିଛି ଜାଣିଥିଲେ କିନ୍ତୁ ସୁଗନ୍ଧିତ ଡାକଟିକଟ କଥା ଆମ ଆଲୋଚନା ପ୍ରସଙ୍ଗକୁ ଆସିଲେ କାନକୁ ଏହା ଆଦୌ ବିଶ୍ୱାସ କରିହୁଏ ନାହିଁ । ଅବଶ୍ୟ ଏହିଭଳି ଏକ ସୁଗନ୍ଧିତ (ଚନ୍ଦନ) ଡାକଟିକଟ ପ୍ରସ୍ତୁତର ପଶ୍ଚାତ ଭାରତୀୟ ଡାକବିଭାଗ କିଛି କିଛି ବର୍ଷର ବ୍ୟବଧାନରେ ଅନ୍ୟ ଦୁଇପ୍ରକାର ସୁଗନ୍ଧିତ ଡାକଟିକଟ ପ୍ରସ୍ତୁତ କରିବାରେ ସକ୍ଷମ ହୋଇଥିଲେ, ଯାହା ଗୋଲାପ ଫୁଲ ଏବଂ ଜୁଇଫୁଲର ସୁଗନ୍ଧକୁ ନେଇ ପ୍ରସ୍ତୁତ କରାଯାଇ ପ୍ରକାଶ ପାଇଥିଲା । ଦେଶ ସ୍ୱାଧୀନତା ପ୍ରାପ୍ତିର ପଶ୍ଚାତ ଆଜି ପର୍ଯ୍ୟନ୍ତ ଏହି ତିନି ପ୍ରକାର ସୁଗନ୍ଧିତ ଡାକଟିକଟ ଭାରତୀୟ ଡାକବିଭାଗ ଦ୍ୱାରା ପ୍ରସ୍ତୁତ କରାଯାଇ ପ୍ରକାଶ କରାଯାଇଅଛି ।




ପ୍ରଥମ ଥର ପାଇଁ ଭାରତୀୟ ଡାକବିଭାଗ ଏହି ଧରଣର ଡାକଟିକଟ ପ୍ରସ୍ତୁତ କରି ପୃଥିବୀର ଡାକଟିକଟ ଇତିହାସରେ ଏକ କୀର୍ତ୍ତିମାନ ସ୍ତମ୍ଭ ସ୍ଥାପନ କରିଥିଲେ । ଏହି ପ୍ରକାର ଡାକଟିକଟ ପ୍ରସ୍ତୁତ କରି ଭାରତ ସେହି ଦଳରେ ସ୍ଥାନ ପାଇଥିଲା, ଯେଉଁମାନେ ଆମ ଦେଶ ଭାରତ ପୂର୍ବରୁ ଏହି ଧରଣର ଡାକଟିକଟ ପ୍ରସ୍ତୁତ କରି ଜାରି କରିସାରିଥିଲେ । ବର୍ତ୍ତମାନ ସୁଦ୍ଧା ପୃଥିବୀର ଅଳ୍ପ କେତୋଟି ହାତ ଗଣତି ଦେଶ ଏହି ପ୍ରକାରର ବିଭିନ୍ନ ସୁଗନ୍ଧଯୁକ୍ତ ଡାକଟିକଟ ପ୍ରସ୍ତୁତ କରିବାରେ ସକ୍ଷମ ହୋଇଛନ୍ତି । ଏହିମାନଙ୍କ ମଧ୍ୟରେ ଭାରତ ଅନ୍ୟତମ ସ୍ଥାନ ଅଧିକାର କରି ଆଜି ପୃଥିବୀ ପରିଚିତ । ଏହି ଧରଣର ସୁଗନ୍ଧିତ ଡାକଟିକଟ ପ୍ରସ୍ତୁତ କରି ପ୍ରକାଶ କରିଥିବା ଦେଶଗୁଡ଼ିକ ହେଲେ ନ୍ୟୁଜିଲାଣ୍ଡ, ସୁଇଜରଲାଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଥାଇଲାଣ୍ଡ ଇତ୍ୟାଦି । ଏହି କ୍ରମରେ ଭାରତର ସ୍ଥାନ ଅନ୍ୟତମ । ଅବଶ୍ୟ ଏହି କ୍ରମରେ ପ୍ରଥମ ସ୍ଥାନର ମର୍ଯ୍ୟାଦା ଭୁଟାନ୍‌କୁ ମିଳେ ।

**ପ୍ରସ୍ତୁତ ପ୍ରକ୍ରିୟା–** ଭାରତୀୟ ସିକ୍ୟୁରିଟି ପ୍ରେସ, ନାସିକ ଏହି ପ୍ରକାର ଡାକଟିକଟ ପ୍ରସ୍ତୁତ ତଥା ମୁଦ୍ରଣର ଦାୟିତ୍ୱ ତାଙ୍କ ହାତକୁ ନେଲେ । ଯଦିଓ ଏହା ତାଙ୍କ ପାଇଁ ପ୍ରଥମ ଥର ଥିଲା । ସେଥିପାଇଁ ସେମାନେ ଅନେକ ପରିଶ୍ରମ କରି ଅଧିକ ସମୟ

ନେଇଥିଲେ ଏହା ଉପରେ ଗବେଷଣା ପାଇଁ ଯେ କିପରି ଏକ ସୁଗନ୍ଧିତ ଡାକଟିକଟ ସହଜରେ ପ୍ରସ୍ତୁତ ହୋଇପାରିବ । ସେମାନଙ୍କ ନିକଟକୁ ଆସିଥିବା ଏହାର ପ୍ରଥମ ନମୁନା (ଏହି ପ୍ରକାର ସୁଗନ୍ଧିତ ଡାକଟିକଟ) ସୁଗନ୍ଧିତ ଥିଲା ଏଥିରେ ସନ୍ଦେହ ନଥିଲା । କିନ୍ତୁ ସେମାନେ ଏହାକୁ ପ୍ରସ୍ତୁତ କରିବା ପାଇଁ ଏହା ଉପରେ ଅନେକ ପରୀକ୍ଷାନିରୀକ୍ଷା କରି ଏହା ଉପରେ ଗବେଷଣା ପ୍ରକ୍ରିୟାକୁ ଅନେକ ସମୟ ପର୍ଯ୍ୟନ୍ତ ଚଳାଇଲେ ଏବଂ ଶେଷରେ ସେମାନେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଏହି ଧରଣର ଡାକଟିକଟର ପ୍ରସ୍ତୁତ ତଥା ମୁଦ୍ରଣ ପ୍ରକ୍ରିୟାକୁ ତିନିଭାଗରେ ବିଭକ୍ତ କରି ପ୍ରସ୍ତୁତ କରିହେବ ।

ପ୍ରଥମ ଭାଗରେ ଡାକଟିକଟଗୁଡ଼ିକ ଅନ୍ୟ ସାଧାରଣ ଡାକଟିକଟଗୁଡ଼ିକ ପରି ପ୍ରସ୍ତୁତ କରାଗଲା । ଦ୍ୱିତୀୟ ଭାଗ ତଥା ସ୍ତରରେ ଟିକଟଗୁଡ଼ିକର ଫର୍ଦ୍ଦକୁ ସୁଗନ୍ଧିତ କରିବା ପାଇଁ ଏକ ସ୍ୱତନ୍ତ୍ର ଧରଣର କାଳି ସଂଯୁକ୍ତ ରାଜ୍ୟ ଗ୍ରେଟ୍ ବ୍ରିଟେନ୍‌ରୁ (ବିଦେଶ) ଆମଦାନୀ କରାଯାଇଥିଲା । ଯାହା ଚନ୍ଦନକାଠର ସୁଗନ୍ଧଯୁକ୍ତ ଥିଲା । ତାହାପରେ ଏହାକୁ ୩୦ରୁ ୪୦ (ମାଇକ୍ରନ୍) ଅଣୁମାତ୍ରା ଗଭୀରତାରେ ମୁଦ୍ରଣ ପାଇଁ ବ୍ୟବହୃତ ଯନ୍ତ୍ର ଫଟୋଗ୍ରେଭର ମୁଦ୍ରଣ ଯନ୍ତ୍ରରେ ବ୍ୟବହାର ହେଉଥିବା ସିଲିଣ୍ଡରର କୋଠରିରେ ପ୍ରବେଶ କରାଯାଇଥିଲା ଏବଂ ଏହାପରେ ଟିକଟ ସଂଲଗ୍ନ ଫର୍ଦ୍ଦଗୁଡ଼ିକୁ ଏହି ସିଲିଣ୍ଡରଗୁଡ଼ିକର ଉପରେ ଗୁଡ଼ା ଯାଇ ଚାପ ପ୍ରୟୋଗ କରାଯାଇଥିଲା । ଏହି ଚାପ ପ୍ରୟୋଗ କରି ଟିକଟ ଫର୍ଦ୍ଦଗୁଡ଼ିକ ଉପରେ ସୁଗନ୍ଧିତ କାଳିକୁ ଦୃଢ଼ରୂପେ ସ୍ଥାନାନ୍ତରିତ କରାଗଲା । ତୃତୀୟ ସ୍ତର ବା ଭାଗ ଥିଲା ପୃଥକୀକରଣ ସ୍ତର ବା ଭାଗ, ଯେଉଁଠାରେ ଟିକଟଗୁଡ଼ିକ ଶୁଖାଗଲା । ଶୁଖାଇବା ପ୍ରକ୍ରିୟା ସମୟରେ ଏଥିରେ ବ୍ୟବହୃତ କାଳିର ଅତି କ୍ଷୁଦ୍ର ଆବରଣ ସୃଷ୍ଟି ହେଲେ ଏବଂ ଏଗୁଡ଼ିକ ସ୍ଥାୟୀ ତଥା ଦୃଢ଼ରୂପେ ଟିକଟଗୁଡ଼ିକରେ ସ୍ଥାପିତ ହୋଇ ରହିଲେ । ଏହା ସେହି ଅତି ଛୋଟ ତଥା କ୍ଷୁଦ୍ର ଆବରଣ ବା କ୍ୟାପ୍‌ସୁଲ ଥିଲା ଯାହା ସୁଗନ୍ଧକୁ ଧରି ରଖୁଥିଲା । ଯେତେବେଳେ ଟିକଟଗୁଡ଼ିକ କୌଣସି କାରଣ ବଶତଃ ଆମ ଜାଣତରେ ହେଉ ବା ଅଜାଣତରେ ଯଦି କିଛି କଠିନ ପଦାର୍ଥ ସଂସ୍ପର୍ଶରେ ଆସି ଘଷିହେବ ତେବେ ଏହି ଅତି କ୍ଷୁଦ୍ର ଆବରଣ ତଥା କ୍ୟାପ୍‌ସୁଲଗୁଡ଼ିକ ଭାଙ୍ଗିଯିବ ଏବଂ ସେଥିରୁ ସୁଗନ୍ଧ ନିର୍ଗତ ହେବ । ଏହି ପ୍ରକାର ତିନୋଟି ପ୍ରକ୍ରିୟା ତଥା ପଦ୍ଧତିରେ ଚନ୍ଦନ କାଠ ସୁଗନ୍ଧଯୁକ୍ତ ଡାକଟିକଟ ପ୍ରସ୍ତୁତ କରିବାରେ ଭାରତୀୟ ସିକ୍ୟୁରିଟି ପ୍ରେସ୍, ନାସିକ୍ ସକ୍ଷମ ହୋଇଥିଲେ ।

**ଚନ୍ଦନକାଠ ସମ୍ବନ୍ଧୀୟ ଉଦ୍ଭିଦ ବିଜ୍ଞାନ ତଥ୍ୟ ଏବଂ ଅନ୍ୟାନ୍ୟ ତଥ୍ୟ :** ଚନ୍ଦନ କାଠ ପ୍ରଥମେ ଭାରତରେ ୪୦୦୦ ବର୍ଷ ପୂର୍ବେ ବ୍ୟବହାର କରାଯାଇଥିଲା । ସମୁଦାୟ ୧୬ ପ୍ରକାର ପ୍ରଜାତିର ଚନ୍ଦନ କାଠ ପ୍ରଶାନ୍ତ ମହାସାଗର ଏବଂ ପୂର୍ବ ଭାରତ ମହାସାଗର ପ୍ରାନ୍ତୀୟ ଅଞ୍ଚଳର ଚତୁଃପାର୍ଶ୍ୱରେ ପ୍ରାକୃତିକରୂପେ ଦୃଶ୍ୟମାନ ହୁଏ । ଏଥିସହିତ ଏମାନେ ପୃଥିବୀର ବିଭିନ୍ନ ପ୍ରକାର ଜଳବାୟୁ ତଥା ପରିବେଶରେ ମଧ୍ୟ ବଢ଼ିପାରନ୍ତି । ଉଦ୍ଭିଦ ବିଜ୍ଞାନ ମତରେ ଚନ୍ଦନବୃକ୍ଷ ସାନ୍ତାଲେସିଆ ପରିବାର ଅନ୍ତର୍ଭୁକ୍ତ ଅଟେ । ଏହାର ଉଦ୍ଭିଦ ବିଜ୍ଞାନ ନାମ ସାନ୍ତାଲମ୍ ଆଲବମ୍ ନାମରେ ନାମିତ । ଏହା ଆକାରରେ ମଧ୍ୟମ ଧରଣର ଅଟେ ଅର୍ଥାତ୍ ୧୨ରୁ ୧୫ ମିଟର ଉଚ୍ଚତା ବିଶିଷ୍ଟ ହୋଇଥାଏ । ତତ୍‌ସହିତ ଏହା ଅର୍ଦ୍ଧ ପରଜୀବୀ ଅଟେ । ଏହାର ଲକ୍ଷଣ ତଥା ଉଦ୍ଦେଶ୍ୟ ଏହା ନିଜ ମୂଳ ନିକଟବର୍ତ୍ତୀ ପ୍ରତ୍ୟେକ ବୃକ୍ଷରୁ ଖାଦ୍ୟ ସଂଗ୍ରହ କରିନିଏ । ଏକ ବିଚିତ୍ର ତଥା ଆଶ୍ଚର୍ଯ୍ୟ ଘଟଣା ହେଲା ଯେତେବେଳେ ଏହି ଗଛ ବିକଶିତ ତଥା ବଡ଼ ହୁଏ ଏହା ମଧ୍ୟରେ ଥିବା ଅନ୍ତକାଷ୍ଠରେ ଏକ ବିଶେଷ ଧରଣର ତେଲ ସୃଷ୍ଟି ତଥା ପ୍ରସ୍ତୁତ ହୋଇଥାଏ । ଏହି ତେଲ ଏହାର ଚେର ଏବଂ ମଞ୍ଜା କାଠରେ ସୃଷ୍ଟି ହୋଇ ଅନ୍ତକାଠକୁ ଯାଇଥାଏ । ପ୍ରତ୍ୟେକ ବୃକ୍ଷ ପାଇଁ ଏହିଭଳି ପ୍ରକ୍ରିୟାରେ ତେଲ ସୃଷ୍ଟି ହେବା ନିମନ୍ତେ ୧୫ରୁ ୨୦ ବର୍ଷ ଲାଗିଥାଏ । ଏକ କୌତୁହଳର ବିଷୟ ହେଲା ଚନ୍ଦନ ଗଛର ତେଲକୁ ସଂଗ୍ରହ ପାଇଁ ଏହାକୁ କଟାଯାଇନଥାଏ । ବରଂ ବର୍ଷା ଋତୁରେ ଯେତେବେଳେ ଏହାର ମୂଳ ବେଶ୍ ମୂଲ୍ୟବାନ ତେଲରେ ଭରପୂର ହୋଇଥାଏ ସେତେବେଳେ ଏହି ବୃକ୍ଷକୁ ମୂଳରୁ ଉପୁଡ଼ା ଯାଇଥାଏ । ଏପରି ବିଶ୍ୱାସ କରାଯାଏ ଯେ ଏକ ଟନ୍ ଅନ୍ତକାଷ୍ଠରେ ପ୍ରାୟ ୬୦ କିଲୋଗ୍ରାମ୍ ପର୍ଯ୍ୟନ୍ତ ତେଲ ଉପଲବ୍ଧ ହୋଇଥାଏ ।

**ଏହାର ଉପକାରିତା ତଥା ବ୍ୟବହାର–** ଏହି ବୃକ୍ଷ ତଥା ଏହି କାଠ ନିଜର ଦୁର୍ମୂଲ୍ୟ ସୁଗନ୍ଧ ଏବଂ କୀଟ ପ୍ରତିରୋଧକ ତଥା ସର୍ବୋପରି ଔଷଧୀୟ ଗୁଣ ପାଇଁ ସମସ୍ତ ଜନସମାଜରେ ଖୁବ୍ ପ୍ରସିଦ୍ଧ ଅଟେ । ହିନ୍ଦୁଶାସ୍ତ୍ରୀୟ ପୂଜା ପଦ୍ଧତି ତଥା

ରୀତିନୀତିରେ ଏକ ଅତ୍ୟାବଶ୍ୟକ ସାମଗ୍ରୀ ରୂପେ ଏହାର ବ୍ୟବହାର ଖୁବ୍ ବହୁଳ ଥିବାରୁ ଏହା ଅତି ମୂଲ୍ୟବାନ୍ ଚିଜ ରୂପେ ହିନ୍ଦୁମାନଙ୍କ ନିକଟରେ ସର୍ବଦା ଆଦୃତ ହୋଇ ଆସୁଅଛି । ପ୍ରାଚୀନ କାଳରୁ ଚନ୍ଦନ ନିଜର ଏହିସବୁ ମୂଲ୍ୟବାନ୍ ଗୁଣ ପାଇଁ ଭାରତରେ ଅତ୍ୟନ୍ତ ବିଶେଷ ସ୍ଥାନ ଅଧିକାର କରିଅଛି । ହିନ୍ଦୁମାନଙ୍କର ଧାର୍ମିକ କର୍ମକର୍ମାଣୀ ଏବଂ ସାମାଜିକ ରୀତିନୀତିର ଏକ ଅବିଚ୍ଛେଦ୍ୟ ଅଙ୍ଗରୂପେ ଚନ୍ଦନର ବର୍ଣ୍ଣନା ଦୀର୍ଘ ୨୦୦୦ ବର୍ଷର ପ୍ରାଚୀନ ଭାରତୀୟ ସାହିତ୍ୟ ଏବଂ ପୁରାଣ ତଥା ଧାର୍ମିକ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ । ଏହି ଗ୍ରନ୍ଥମାନଙ୍କ ମଧ୍ୟରେ ରାମାୟଣ, କାଳିଦାସଙ୍କ କାବ୍ୟ ଏବଂ ବିଶେଷରୂପେ ବୌଦ୍ଧ ସାହିତ୍ୟ ଆଦି ଅନ୍ୟତମ । ଯେଉଁଥିରେ ଚନ୍ଦନକୁ ବୋଧିସତ୍ତ୍ୱ ଅମିତାଭଙ୍କ ସହିତ ସାମଞ୍ଜସ୍ୟ ଥିବା ଦର୍ଶାଯାଇଅଛି । ଏହାର କୀଟ ପ୍ରତିରୋଧକ ଶକ୍ତି ତଥା ଗୁଣ ପାଇଁ ଏହା ଖୁବ୍ ଲୋକପ୍ରିୟ । ଏହା ନିଜର ତେଲ ବ୍ୟତୀତ ନିଜର କାଠ ଏବଂ ଗଛର ଛାଲ ତଥା ବକଳ ପାଇଁ ମଧ୍ୟ ଖୁବ୍ ମୂଲ୍ୟବାନ ଅଟେ । ଏହି ଗଛର ଛାଲର ଗୁଣ୍ଡ ଧୂପକାଠି ପ୍ରସ୍ତୁତିରେ ବହୁଳ ମାତ୍ରାରେ ବ୍ୟବହାର କରାଯାଏ । ବାଣିଜ୍ୟିକ ଦୃଷ୍ଟିକୋଣରୁ ଏହାକୁ ଅତ୍ୟଧିକ ମାତ୍ରାରେ ଧୂପକାଠି, ଅତର, ସାବୁନ୍, ଔଷଧ ପ୍ରସ୍ତୁତ ଏବଂ ସୁଗନ୍ଧିତ ଚିକିତ୍ସା କ୍ଷେତ୍ରରେ ବ୍ୟବହାର କରାଯାଏ । କୁଶଳୀ ଶିଳ୍ପୀଦ୍ୱାରା ଏହାର କାଠରେ ଅତି ସୁନ୍ଦର କାଷ୍ଠର କାରୁକାର୍ଯ୍ୟମାନ ପ୍ରସ୍ତୁତ କରାଯାଏ । ଯେପରି ସିନ୍ଦୁକ ଓ ମନ୍ଦିର ବିମାନ ଇତ୍ୟାଦି । ଯଦିଓ ଏହା ସର୍ବସାଧାରଣଙ୍କ ବିଭିନ୍ନ କାଷ୍ଠନିର୍ମିତ ଉପକରଣ କାର୍ଯ୍ୟରେ ବ୍ୟବହାର ହୋଇପାରେ ନାହିଁ ତଥାପି ଏହା ଦେବାଳୟମାନଙ୍କର ବିଭିନ୍ନ କାଷ୍ଠ କାର୍ଯ୍ୟରେ ବ୍ୟବହୃତ ହୋଇଥାଏ । ଯଥା– ଦେବାଦେବୀଙ୍କ ମୂର୍ତ୍ତି, ବିମାନ, ତଥା ମନ୍ଦିରମାନଙ୍କ ପାଇଁ ଉଦ୍ଦିଷ୍ଟ ଦ୍ୱାର । ଏଥିପାଇଁ ଶତାବ୍ଦୀ ଶତାବ୍ଦୀ ଧରି ଭାରତର ବିଭିନ୍ନ ପ୍ରାନ୍ତର ମନ୍ଦିର ଏବଂ ଦେବାଳୟ ଏହାର ସୁଗନ୍ଧରେ ସୁଗନ୍ଧିତ ହେଉଥାନ୍ତି । ପାରମ୍ପରିକ ରୂପେ ପାଚନ ପ୍ରକ୍ରିୟାରେ କୌଣସି ଅସୁବିଧା ଉପୁଜିଲେ ଏହାକୁ ବ୍ୟବହାର କରାଯାଏ । ତତ୍ସହିତ ଶରୀର ସମ୍ବନ୍ଧୀୟ ଯେକୌଣସି ଚର୍ମରୋଗ, କଣ୍ଡୁ ଏବଂ ସୁନ୍ଦରତାର ଚିକିତ୍ସାରେ ମଧ୍ୟ ଏହାକୁ ଏକ ଉପକାରୀ ଔଷଧ ରୂପେ ବ୍ୟବହାର କରାଯାଏ । ଚନ୍ଦନ ଗୁଣ୍ଡ ଅଥବା ଘୋରାଯାଇଥିବା ଚନ୍ଦନ ଏବଂ ଏହାର ତେଲର ବ୍ୟବହାର ସର୍ପଦଂଶନ, କାଶ ତଥା ଅନେକ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ବେମାରିର ଚିକିତ୍ସା ପାଇଁ ବିଶେଷ ଲାଭଦାୟକ ଅଟେ । ତ୍ୱଚାର ସୌନ୍ଦର୍ଯ୍ୟ ବଢାଇବା ପାଇଁ ମଧ୍ୟ ଏହାକୁ ପ୍ରୟୋଗ କରାଯାଏ । ଚନ୍ଦନର ସୁଗନ୍ଧର ବ୍ୟବହାର ଏକୁଟିଆ ପଣ, ଅବସାଦ ତଥା ମାନସିକ ଚିନ୍ତାରୁ ମୁକ୍ତି ଦେଇଥାଏ । ସେହିପରି କ୍ରୋଧକୁ ଶାନ୍ତ କରିବା, ଆକ୍ରମଣାତ୍ମକ ବ୍ୟବହାରକୁ ଆୟତ୍ତ କରିବା ଏବଂ ଅଶାନ୍ତ ସ୍ୱଭାବକୁ ଶାନ୍ତ କରିବା ଉଦ୍ଦେଶ୍ୟରେ ଏହାର ସୁଗନ୍ଧକୁ ମଧ୍ୟ ବ୍ୟବହାର କରାଯାଏ । କିନ୍ତୁ ସବୁଠାରୁ ଉଲ୍ଲେଖନୀୟ ବିଷୟ ଏହାର ତେଲ ସୁଗନ୍ଧ ମୋହିତଯୁକ୍ତ ହୋଇଥାଏ । ଉଷ୍ମ ଏବଂ ମିଷ୍ଟଯୁକ୍ତ ଏହାର ହାଲୁକା ଏବଂ ତୀକ୍ଷ୍ଣ ସୁଗନ୍ଧ ସମ୍ପୂର୍ଣ୍ଣରୂପେ ସ୍ୱତନ୍ତ୍ର ଅଟେ । ଏହାର ସୁଗନ୍ଧ ବାୟୁମଣ୍ଡଳ ପରିବେଶ ତଥା ବାତାବରଣରେ ଦୀର୍ଘ ସମୟ ପର୍ଯ୍ୟନ୍ତ ଉପଲବ୍ଧ ହୋଇଥାଏ । ଏହା ସହିତ ଏହା ଏତେ ମାତ୍ରାରେ ମୃଦୁ ସୁଗନ୍ଧ ଯୁକ୍ତ ହୋଇଥାଏ ଯେ ଅନ୍ୟ ସୁଗନ୍ଧମାନଙ୍କ ସହିତ ମିଶି ଅନେକ ସମୟ ପର୍ଯ୍ୟନ୍ତ ପରିବେଶକୁ ସୁଗନ୍ଧିତ କରିଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ ଯେ ଚନ୍ଦନ ଏକ ମୂଲ୍ୟବାନ ସମ୍ପଦ ଅଟେ । ଭାରତର ବାଣିଜ୍ୟିକ ଇତିହାସ ଯେତେ ପୁରୁଣା ତା' ସହିତ ସମାନ ଭାରତରେ ଚନ୍ଦନ ବ୍ୟବହାରର ଇତିହାସ । ଭାରତୀୟ ଚନ୍ଦନ ବହୁତ ମୂଲ୍ୟବାନ ଏବଂ ଦୁର୍ଲଭ ଅଟେ । ୧୭୯୨ରେ ମହୀଶୂର (ଆଜିର କର୍ଣ୍ଣାଟକ)ର ମହାରାଜା ଚନ୍ଦନକୁ ରାଜକୀୟ ତଥା ରାଷ୍ଟ୍ରୀୟ ବୃକ୍ଷର ମାନ୍ୟତା ପ୍ରଦାନ କରିଥିଲେ । ଏହି ନୀତିରେ ଆଜି ମଧ୍ୟ ଭାରତବର୍ଷର କୌଣସି ବ୍ୟକ୍ତି ଚନ୍ଦନ ବୃକ୍ଷର ମାଲିକାନା ପାଇନାହିଁ । ଚନ୍ଦନର ସମସ୍ତ ବୃକ୍ଷ ଉପରେ ସରକାରଙ୍କ ପ୍ରଭୁତ୍ୱ ଅଟେ ଏବଂ ଏହାକୁ କାଟିବା ଉପରେ କଡା ନିୟନ୍ତ୍ରଣ ଲାଗୁ ହୋଇଅଛି । ଏହିସବୁ ବାଦ୍ ମଧ୍ୟ ବଡ ଦୁଃଖର କଥା ଏହି ବୃକ୍ଷମାନଙ୍କର ଅବୈଧ କଟା ଏବଂ ରପ୍ତାନି ଏବେ ସାଧାରଣ ବିଷୟ ପାଲଟି ଯାଇଛି ।

ଚନ୍ଦନ ଭାରତୀୟ ଐତିହ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ, ଯାହାର ମହତ୍ୱକୁ ଜାଣିବା ଏବଂ ସଂରକ୍ଷଣ ପ୍ରଦାନ କରିବା ସମସ୍ତ ଭାରତୀୟଙ୍କ ଏକ ବିଶେଷ କର୍ତ୍ତବ୍ୟ ଅଟେ ।

ଭାରତର ଏହି ଅମୂଲ୍ୟ ସମ୍ପଦ ତଥା ଐତିହ୍ୟ ସ୍ମରଣରେ ଭାରତୀୟ ଡାକ ବିଭାଗ ୨୦୦୬, ଡିସେମ୍ବର ୧୩ରେ ଏକ ସ୍ୱତନ୍ତ୍ର ତଥା ସୁଗନ୍ଧଯୁକ୍ତ ସ୍ମରଣୀୟ ଡାକଟିକଟ ପ୍ରସ୍ତୁତ କରି

ଦେଶ ତଥା ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ଯାହାର ମୂଲ୍ୟ ଥିଲା ୧୫ଟଙ୍କା ବା ୧୫୦୦ ପଇସା ଏବଂ ସମୁଦାୟ ମୁଦ୍ରିତ ଏହି ଡାକଟିକଟର ପରିମାଣ ଥିଲା ୩୦ ଲକ୍ଷ । ଏହା ଭାରତୀୟ ସିକ୍ୟୁରିଟି ପ୍ରେସ୍, ନାସିକ୍ ଦ୍ୱାରା ପ୍ରସ୍ତୁତ ହୋଇ ଫଟୋଗ୍ରେଭର ମୁଦ୍ରଣ ପ୍ରକ୍ରିୟାରେ ମୁଦ୍ରିତ ହୋଇଥିଲା । ପ୍ରତ୍ୟେକ ଡାକଟିକଟର ଆକାର ଥିଲା ୩୬ ମି.ମି. ଏବଂ ପ୍ରଚୁର ସୁଗନ୍ଧ ଏଥିରେ ପ୍ରୟୋଗ କରାଯାଇଥିଲା । ପ୍ରତ୍ୟେକ ଡାକଟିକଟ ଯେପରି ବର୍ଷ ବର୍ଷ ପର୍ଯ୍ୟନ୍ତ ସୁଗନ୍ଧଯୁକ୍ତ ହୋଇ ରହିପାରିବ ଏବଂ ଏହି ଡାକଟିକଟର ସାଜସଜ୍ଜା ତଥା ଅଳଙ୍କରଣ କର୍ଣ୍ଣାଟକ ରାଜ୍ୟ ହସ୍ତଶିଳ୍ପ ଉନ୍ନୟନ ନିଗମ ଲିମିଟେଡ, ଯିଏ 'କାବେରୀ' ନାମରେ ପରିଚିତ, ତାଙ୍କର ଚନ୍ଦନକାଠର ପ୍ରସ୍ତୁତ ଏକ କଳାତ୍ମକ କାରୁକାର୍ଯ୍ୟର ଉତ୍ପାଦନରୁ ନିଆଯାଇ ପ୍ରସ୍ତୁତ କରାଯାଇଥିଲା । ଏହି ଧରଣର ଡାକଟିକେଟ ପ୍ରସ୍ତୁତ ସହିତ ଡାକବିଭାଗ ଏହି ଡାକଟିକଟକୁ ନେଇ ଏକାଧିକ ମିନିଏଚର୍ ସିଟ୍ (କ୍ଷୁଦ୍ର ଫର୍ଦ୍ଦ) ପ୍ରସ୍ତୁତ କରିଥିଲେ, ଯାହାର ପ୍ରତ୍ୟେକ ଫର୍ଦ୍ଦରେ ୧ଟି ଡାକଟିକଟ ଥିଲା ।

ବୈଦ୍ୟନାଥ ସୁଧାରାଣୀ ନିବାସ
ସାକ୍ଷୀଗୋପାଳ, ପୁରୀ

# ଏକତା ଆମର ମନ୍ତ୍ର

**ସୁଦାମ ଚରଣ ଜେନା**

ଏକତା ସୂତ୍ରର ସ୍ୱାଧୀନତା ମନ୍ତ୍ର
ଆମ ସଂସ୍କୃତିର ଚିତ୍ର
ସ୍ୱର୍ଣ୍ଣପ୍ରସୂ ଆମ ଭାରତର ଭୂମି
ସ୍ୱଚ୍ଛ ଶାସନର ଉତ୍ସ ।

ଧୈର୍ଯ୍ୟ, ଶାନ୍ତି ଆମ ସାହସ ଗରିମା
ଆବାହନି ଗାଇଯିବା
ଛାତ୍ର–ଶିକ୍ଷକ–ବୁଦ୍ଧିଜୀବୀ ମିଳି
ପୁଣ୍ୟ ଜ୍ୟୋତି ଜଳାଇବା ।

ଜାତୀୟ ତରଙ୍ଗ ଖେଳାଇ ଦେବାରେ
ମୋ ଦେଶର ଘରେ ଘରେ
ପୂର୍ବଜମାନଙ୍କ ଗୁଣ ଗଉରବ
କୋଟି ଜନତାଙ୍କ ପ୍ରାଣେ ।

ଖାରବେଳଙ୍କର ଶାସନ ସଭ୍ୟତା
ଉତ୍କଳ ମାଟିର ଗାଥା
ଆମ ଇତିହାସ ଗୌରବ ମଣ୍ଡିତ
ଟେକ ରଖେ ଆମ ମଥା ।

ସ୍ୱାଧୀନତା ପଥେ ଅହିଂସାର ବାର୍ତ୍ତା
ଦେଶ ଗଢିବାର ସ୍ୱର
ଅନ୍ୟାୟ ବିରୁଦ୍ଧେ ସଂଗ୍ରାମ କରିବା
ଆମ ମୌଳିକ ଅଧିକାର ।

ଗଙ୍ଗା ଗୋଦାବରୀ ଯା' କୋଳରେ ବହେ
ଫୁଲରେ ଫଳରେ ଶୋଭା
ହିମାଳୟ ପରେ ହୀରାର ମୁକୁଟ
ଆହା କି ମନ ଲୋଭା ।

ଋଷି ମୁନିଙ୍କର ପବିତ୍ର ଏ ମାଟି
ପବିତ୍ର ଭାରତବର୍ଷ
ଏହାରି କୋଳରେ ଜନମ ଆମର
ଏକତା ଆମର ମନ୍ତ୍ର ।

ଉତ୍ତାରଣ, କସର୍ଦ୍ଦା, କଟକ

# ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷାପ୍ରଣାଳୀ

**ଦେବପ୍ରସାଦ ମିଶ୍ର**





ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷା ପଦ୍ଧତି ଥିଲା ସମ୍ପୂର୍ଣ୍ଣ ଅଭିନବ ଧରଣର । ଏଥିରେ କୌଣସି ବିଦ୍ୟାଳୟର ଶିକ୍ଷାପଦ୍ଧତି ଅନୁସରଣ ନ ଥିଲା । ଅବଶ୍ୟ ଗୋପବନ୍ଧୁ ଏ ବିଷୟରେ ନିରବ ନ ଥିଲେ । କେଉଁ ନବପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟର କିମ୍ବା କୁଳଗୃହରେ କି ପ୍ରକାର ଶିକ୍ଷାରୀତି ପ୍ରଚଳିତ, ଏହାର ବିବରଣୀ ସେ ସଂଗ୍ରହ କରିବାରେ ତତ୍ପର ଥିଲେ । ସେ ଏ ସମ୍ବନ୍ଧରେ ଚାକ୍ଷୁଷ ପ୍ରମାଣ ଲାଭ କରିବା ନିମନ୍ତେ ଥରେ ରବୀନ୍ଦ୍ରନାଥଙ୍କ ବିଶ୍ୱବିଖ୍ୟାତ ଶାନ୍ତିନିକେତନକୁ ଯାଇଥିଲେ । ସେଠାରୁ ସେହି ଅନୁଷ୍ଠାନର ଶିକ୍ଷାପଦ୍ଧତିର ବିବରଣୀ ନିଜେ ଯଥାଶକ୍ତି ସଂଗ୍ରହ କରି ସତ୍ୟବାଦୀର ଛାତ୍ରମାନଙ୍କୁ ଉପଦେଶ ଛଳରେ କହିଥିଲେ, ସେଠାରେ (ଶାନ୍ତି ନିକେତନଠାରେ) ଛାତ୍ରାବାସ ଓ ବିଦ୍ୟାଳୟ ଗଣତନ୍ତ୍ର ନୀତିରେ ଛାତ୍ରମାନଙ୍କ ଦ୍ୱାରା ପରିଲକ୍ଷିତ ହୁଏ ବୋଲି କେବଳ କଥାରେ କୁହାଯାଏ । ପିଲାମାନେ ବଜାର ସଉଦା କରନ୍ତି ଅର୍ଥାତ୍ ଗାଡ଼ିରେ ବସି ତାଲିକା ନେଇ ଜଣେ ଦୁଇଜଣ ଛାତ୍ର ପୂଜାରୀ, ଚାକରଙ୍କୁ ନେଇ ବଜାରକୁ ଯା'ନ୍ତି । ତାଲିକା ଅନୁସାରେ ପୂଜାରୀ ଓ ଚାକରମାନେ ବଜାରରୁ ଜିନିଷ ଆଣିଲା ପରେ ସେହି ତାଲିକା ଓ ହିସାବ ଘେନି ପିଲାମାନେ ଫେରନ୍ତି । ମାତ୍ର ଏହା ପ୍ରକୃତ କର୍ମପ୍ରବଣତା ନୁହେଁ । ଛାତ୍ରାବାସର ଯାବତୀୟ କଥା : ଖାଇବା, ଖୁଆଇବା, ଶୋଇବା, ବସିବା, ପଢ଼ିବା, ପଢ଼ାଇବା ସକଳ କାର୍ଯ୍ୟ ପିଲାମାନେ କରିବେ ହାତରେ କରିବେ ତେବେ ଶିକ୍ଷା ପୂର୍ଣ୍ଣାଙ୍ଗ ହେବ । (ସତ୍ୟବାଦୀରେ ସାତବର୍ଷ' ପୃଷ୍ଠା ୭୬–୭୭ ୧ମ ମୁଦ୍ରଣ) ।

ମୋଟ୍ ଉପରେ କହିବାକୁ ଗଲେ ଗୋପବନ୍ଧୁଙ୍କର ମତରେ ଶିକ୍ଷା କର୍ମାଭିମୁଖୀ ନ ହେଲେ ଛାତ୍ରମାନଙ୍କ ଉପରେ ତା'ର କୌଣସି ସ୍ଥାୟୀ ପ୍ରଭାବ ପଡ଼ିବ ନାହିଁ । ତେବେ ବିଶ୍ୱକବି ଓ ପ୍ରାଚ୍ୟ ସଭ୍ୟତାର ପ୍ରହରୀ ରବୀନ୍ଦ୍ରନାଥଙ୍କ ଶାନ୍ତି କାନନରେ

ତ ଶିକ୍ଷା ଏପରି ଦୁର୍ବଳ, ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷା ପଦ୍ଧତି ପାଇଁ ସେ ଯିବେ କୁଆଡ଼େ ? କିନ୍ତୁ ସରଳ ଜୀବନ ସଙ୍ଗେ ଉଚ୍ଚ ଚିନ୍ତା –ଶିକ୍ଷାର ଏହି ସମୁଚ୍ଚ ଆଦର୍ଶ ସତ୍ୟବାଦୀର ଶିକ୍ଷାବିତ୍‌ମାନେ ଅବଶ୍ୟ କେତେକ ପରିମାଣରେ ଗ୍ରହଣ କରିଥିଲେ । ହରିଦ୍ୱାର କାଙ୍ଗ୍ରିଠାରେ ଯେଉଁ ଗୁରୁକୁଳ ଆଶ୍ରମ ସ୍ଥାପିତ ହୋଇଥିଲା, ସେଥିରୁ ସତ୍ୟବାଦୀ ୧ମ ଖଣ୍ଡ–୧ମ ସଂଖ୍ୟାରେ ୧୩୨୨ ସାଲ କୁମ୍ଭ ମାସରେ ପ୍ରକାଶ ପାଇଥିବା ଗୁରୁକୁଳ ପ୍ରବନ୍ଧରେ ଉଲ୍ଲେଖ ଅଛି– ଗୁରୁକୁଳ ପ୍ରତିଷ୍ଠାତାମାନଙ୍କର ଉଦ୍ଦେଶ୍ୟ ଅତି ମହତ୍ । ସେମାନେ ଆଶା କରନ୍ତି, ଗୁରୁକୁଳର ବ୍ରହ୍ମଚାରୀ ଛାତ୍ରମାନେ ଜୀବନକୁ ସଂଯତ କରି ସବଳ ଓ ଶିକ୍ଷିତ ହେବେ ଏବଂ ତତ୍‌ପରେ ତ୍ୟାଗଦ୍ୱାରା ଦେଶରେ ପୁନରାୟ ଆର୍ଯ୍ୟ ଆଦର୍ଶ ପ୍ରତିଷ୍ଠିତ କରିବେ । ଆହୁରି  ସେମାନଙ୍କର ବିଶ୍ୱାସ ସ୍ମୃତି ଚେତନାର ସହିତ ଗୃହୀତ ପାଶ୍ଚାତ୍ୟର ନିୟନ୍ତ୍ରିତ କ୍ରିୟାକଳାପ ସଙ୍ଗେ ପ୍ରାଚ୍ୟର ସରଳତା ନ ମିଶିଲେ ଭାରତର ବହୁମୁଖୀ ଉନ୍ନତି ସାଧିତ ହୋଇ ପାରିବ ନାହିଁ । ସୁତରାଂ ଆଶ୍ରମର ବ୍ରହ୍ମଚାରୀମାନେ ବେଦ, ଉପନିଷଦ, ସାହିତ୍ୟ, ଦର୍ଶନ ପ୍ରଭୃତି ପଢ଼ିବା ସଙ୍ଗେ ସଙ୍ଗେ ଇଉରୋପର ଆଧୁନିକ ଶିକ୍ଷଣୀୟ ବିଷୟମାନ ହିନ୍ଦୀ ଭାଷାରେ ଶିକ୍ଷା କରନ୍ତି । ପ୍ରାଚ୍ୟ ପାଶ୍ଚାତ୍ୟର ଭାବରାଶି ଏକତ୍ର ମିଳିଲେ ହିଁ ଉଭୟ ମହାରାଜ୍ୟର ମିଳନ ସମ୍ଭବ । ଅନ୍ୟ ମିଳନର ଚେଷ୍ଟା ନୈସର୍ଗିକ ନୁହେଁ, ସୁତରାଂ ତାହା ଅସାଧ୍ୟ । ଗୁରୁକୁଳର ନୈତିକ ଶିକ୍ଷା ଅତି ସୁନ୍ଦର ପ୍ରଣାଳୀରେ ଦିଆହୁଏ । ଶିକ୍ଷକମାନଙ୍କ ସଙ୍ଗେ ଛାତ୍ରମାନେ ସବୁବେଳେ ରହିଲେ ଏବଂ ଚରିତ୍ର ଗଠନ ଉପଯୋଗୀ ନାନା କାର୍ଯ୍ୟ କଲେ ନୀତି ଶିକ୍ଷା ହୁଏ । କେବଳ ନୀତି କଥାଗୁଡ଼ିକ ମୁଖସ୍ଥ କରି ରଖିଲେ କୌଣସି ବିଶେଷ ଫଳ ହୁଏ ନାହିଁ । ଗୁରୁକୁଳ ଛାତ୍ରମାନେ ବାହାରର ସମସ୍ତ ଅନିଷ୍ଟକର ପ୍ରଭାବରୁ ବିଚ୍ଛିନ୍ନ ହୋଇ ଶିକ୍ଷକମାନଙ୍କ ସଙ୍ଗରେ ଦିନ ରାତି କଟାଇଥାନ୍ତି । ସୁଖ ଦୁଃଖରେ, ଶୟନ ଜାଗରଣରେ, କ୍ରୀଡ଼ା ପଠନରେ ଗୁରୁ ହିଁ ଶିଷ୍ୟଙ୍କର ସଖା । ଛାତ୍ରମାନଙ୍କର ପଢ଼ାଶୁଣା, ସ୍ୱାସ୍ଥ୍ୟ ପ୍ରଭୃତି ସକଳ ବିଷୟ ଗୁରୁବର୍ଗ ଏପରି ଦକ୍ଷତାର ସହିତ ଚଳାନ୍ତି ଯେ, ତାଙ୍କର କୌଣସି କଥାରେ ଅଭାବ ରହେ ନାହିଁ । ସବୁଠାରେ ଶୃଙ୍ଖଳା ଓ ସୌନ୍ଦର୍ଯ୍ୟ ରାଜତ୍ୱ କରୁଥାଏ । ଲର୍ଡ଼ କର୍ଜନ ଏହି ଗୁରୁକୁଳର ଭୂୟସୀ ପ୍ରଶଂସା ତାଙ୍କର ଗୋଟିଏ ବକ୍ତୃତାରେ କରିଥିଲେ, ବସ୍ତୁତଃ ଗୁରୁ ଯେଉଁଠାରେ ଶିଷ୍ୟକୁ ସୁଖ ଦୁଃଖ ହର୍ଷ ଆମୋଦ ମଧ୍ୟରେ ପରୀକ୍ଷା କରିପାରନ୍ତି, ତାହାର ସମଗ୍ର ଚିତ୍ତ ବୃତ୍ତିକୁ ନିୟମିତ କରନ୍ତି ଏବଂ ତା'ର ଭବିଷ୍ୟତ ଜୀବନକୁ ନିଜ ଅଙ୍ଗୁଳିରେ ଗଠନ କରନ୍ତି, ସେହିଠାରେ ହିଁ ପ୍ରକୃତ ବିଦ୍ୟାଳୟ, ସେହିଠାରେ ହିଁ ବାଳକ ତା'ର ଉପଯୁକ୍ତ ଶିକ୍ଷା ପାଏ ।

ଏହିଠାରେ ହିଁ ଗୁରୁକୁଳ ଶିକ୍ଷା ପଦ୍ଧତି ସହ ସତ୍ୟବାଦୀ ବିଦ୍ୟାଳୟର ସାମଞ୍ଜସ୍ୟ । ଯଦି କୌଣସି ଅନୁସୃତ ଶିକ୍ଷାପ୍ରଣାଳୀ ସତ୍ୟବାଦୀର ଶିକ୍ଷାପ୍ରେମୀମାନଙ୍କ ଉପରେ ପ୍ରଭାବ ବିସ୍ତାର କରିଥାଏ, ତେବେ କାଙ୍ଗ୍ରିର ଗୁରୁକୁଳ ଶିକ୍ଷା ପ୍ରଣାଳୀରେ ତାହା ଅନୁସଂଧାନ କରିବାକୁ ହେବ । ଏହିଠାରେ ହିଁ ସେହି ମହନୀୟ ଶିକ୍ଷା ପଦ୍ଧତିର ଭୂମିକା ଏବଂ ଅବକାଶ  ଅନ୍ତର୍ନିହିତ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସ ସତ୍ୟବାଦୀ ବିଦ୍ୟାଳୟରେ ଗୋଟିଏ ବକ୍ତୃତା ଦେଇଥିଲେ । ସେ ବକ୍ତୃତାଟି ସଂଗୃହୀତ ହୋଇ 'ସତ୍ୟବାଦୀ'ର ୧ମ ଖଣ୍ଡ ୮ମ ଓ ୯ମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସେହି ଦୀର୍ଘ ଅଥଚ ଉପାଦେୟ ବକ୍ତୃତାଟିରେ ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷା ପଦ୍ଧତିର ଭୂମିକା ବିସ୍ତୃତ ଭାବରେ ପ୍ରଦତ୍ତ ହୋଇଥିଲା । ବକ୍ତୃତାଟିର ଶିରୋନାମା ହେଲା 'ଶିକ୍ଷା କଅଣ' ? ଏଠାରେ ବାରମ୍ବାର କୁହାଯାଇଅଛି ଛାତ୍ରମାନେ, ତୁମ୍ଭେମାନେ ଶିଷ୍ୟ, ଆମ୍ଭେମାନେ ଗୁରୁ । ଛାତ୍ରମାନେ ଗୁରୁଙ୍କଠାରେ ନିର୍ଭୟରେ ଆତ୍ମସମର୍ପଣ ନ କଲେ ସେମାନଙ୍କର ଶିକ୍ଷା ମୋଟେ ହେବ ନାହିଁ । ତୁମ୍ଭେମାନେ ବୃଥା ଭୟ ଛାଡ଼ି ଶ୍ରଦ୍ଧା ଓ ଭକ୍ତିରେ ଆମ୍ଭଠାରେ ଆତ୍ମସମର୍ପଣ ନ କଲେ ତୁମ୍ଭର ଶିକ୍ଷା ହେବ ନାହିଁ ।

ପ୍ରକୃତ ଶିକ୍ଷାର ଭିତ୍ତିଭୂମି ହେଲା, ଶିଷ୍ୟର ପରିପୂର୍ଣ୍ଣ ଆତ୍ମସମର୍ପଣ । କିନ୍ତୁ ଶିଷ୍ୟମାନେ ଆତ୍ମମର୍ଯ୍ୟାଦା ଛାଡ଼ି କାହିଁକି ଗୁରୁଙ୍କଠାରେ ଏହି ଆତ୍ମ ସମର୍ପଣ କରିବେ ? ବର୍ତ୍ତମାନ ପ୍ରଚଳିତ ଶିକ୍ଷା ପଦ୍ଧତିରେ ସେ ଆତ୍ମସମର୍ପଣ ଅଛି କି ? ଶିଷ୍ୟର ପଦେ ପଦେ ଗୁରୁଙ୍କଠାରେ ସନ୍ଦେହ । ଶିଷ୍ୟ ଚାହେଁ ଗୁରୁଙ୍କ ସଙ୍ଗେ ସମାନ ମର୍ଯ୍ୟାଦା, ସମାନ ଆସନ । ତେଣୁ ବର୍ତ୍ତମାନ ଶିକ୍ଷାପ୍ରଣାଳୀରେ ଏକ ମହା ବିଭ୍ରାଟ ଆସି ସମୁପସ୍ଥିତ । କିନ୍ତୁ

ପ୍ରାଚୀନ ଭାରତର ଆଦର୍ଶ ତାହା ନ ଥିଲା । ଏହି ଆତ୍ମସମର୍ପଣ ସମ୍ବନ୍ଧରେ ଶିକ୍ଷା କ'ଣ ବକ୍ତୃତାରେ ପ୍ରଧାନ ଶିକ୍ଷକ ନୀଳକଣ୍ଠବାବୁ ଗୁରୁ ଗମ୍ଭୀର କଣ୍ଠରେ ଛାତ୍ରମାନଙ୍କୁ କହିଥିଲେ, ''ତୁମ୍ଭେମାନେ ବାଳକ, ଅନନ୍ତ ସଂସାର ପଡ଼ି ରହିଛି, ଅଶେଷ କର୍ତ୍ତବ୍ୟ ଆଗରେ ଅଛି । ସେଥିରୁ ଶିଖ, ତୁମ୍ଭର ମଙ୍ଗଳ ହେବ । ଏସବୁ କଥାରୁ ତୁମ୍ଭେମାନେ ହୁଏତ କିଛି ବୁଝିପାରୁ ନାହଁ, ସେଥିପାଇଁ କହୁଥିଲି, ତୁମ୍ଭେମାନେ ଶିକ୍ଷକଙ୍କଠାରେ ଆତ୍ମସମର୍ପଣ କର ।''

ଯଦି ସ୍ୱୀକାର କରାଯାଏ, ଏ ଯୁଗରେ ଏପରି ଆତ୍ମସମର୍ପଣ ଅସମ୍ଭବ, ତେବେ ପ୍ରଚଳିତ ଶିକ୍ଷା ପଦ୍ଧତି ସେହି ଅନୁକ୍ରମରେ ଅଚଳ । ଶିକ୍ଷକଙ୍କର ଛାତ୍ରମାନଙ୍କ ପ୍ରତି ପ୍ରଗାଢ଼ ଅନୁରାଗ ଓ ଆନ୍ତରିକ ସ୍ନେହ, ସହାନୁଭୂତି ନ ଥିଲେ ଏବଂ ଶିଷ୍ୟମାନେ ଗୁରୁଙ୍କଠାରେ ଆତ୍ମସମର୍ପଣ କରି ନିଜକୁ ସେମାନଙ୍କଠାରେ ଅକୁଣ୍ଠିତ ଚିତ୍ତରେ ଉତ୍ସର୍ଗ କରି ନ ଦେଲେ ଶିକ୍ଷାର ସାର୍ଥକତା କେଉଁଠାରେ ? ଏ ଯେଉଁ ଶିକ୍ଷାବିଧି ବର୍ତ୍ତମାନ ପ୍ରଚଳିତ ଅଛି, ତା'ର ଗତି ଓ ଲକ୍ଷ୍ୟ କେଉଁ ଦିଗକୁ, ସେଇ କଥାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ନୀଳକଣ୍ଠବାବୁ ସେଦିନ ତାଙ୍କ ବକ୍ତୃତା ମଧ୍ୟରେ କହିଥିଲେ, ଏ ଶିକ୍ଷାରେ ସମସ୍ତଙ୍କ ଦୃଷ୍ଟି ପରୀକ୍ଷାରେ ପାଶ୍ ଉପରେ । ତୁମ୍ଭେ ମଧ୍ୟ ଏଥିପାଇଁ ପରୀକ୍ଷା ପୂର୍ବରୁ ଯେପରି ଶୀଘ୍ର ଶୀଘ୍ର ପାଠ ମୁଖସ୍ଥ କର, ରାତି ଉଜାଗର ହୋଇ ବହି ପଢ଼, ବର୍ଷର ଅନ୍ୟ କୌଣସି ସମୟରେ ସେପରି କର ନାହିଁ । ତୁମ୍ଭେମାନେ ଯେ ଏହା କର ନାହିଁ ତାହା ନୁହେଁ, ପଢ଼ାର ପଦ୍ଧତି ଯେପରି ହୋଇଅଛି, ସେଥିରେ କେହି କରନ୍ତା ନାହିଁ । ବର୍ଷଯାକର ପଢ଼ା ବାର୍ଷିକ ପରୀକ୍ଷାରେ ଦେଖାଇବାକୁ ହେବ । ସେଥିରେ ହିଁ ତୁମ୍ଭ ଜୀବନର ଉପାୟ ହେବ । ପାଠ ଜାଣ ବା ନ ଜାଣ, ପାଠ ଦେଖାଇବାକୁ ତୁମେ ବାଧ୍ୟ । ମୁଁ ଜାଣେ, ଜଣେ ଛାତ୍ର ମାଟ୍ରିକ୍ୟୁଲେସନ ପରୀକ୍ଷା ପାଇଁ ପଚାଶଟିରୁ ବେଶୀ ପ୍ରବନ୍ଧ ମୁଖସ୍ଥ କରିଥିଲେ, ଭାଗ୍ୟକୁ ସେଥି ମଧ୍ୟରୁ ଦୁଇଟି ପ୍ରବନ୍ଧ ପଡ଼ିଗଲା । ସେ ବାଳକ ଇଂରାଜୀ ଭାଷାରେ ନିତାନ୍ତ ଅପଟୁ ହୋଇ ମଧ୍ୟ ପ୍ରଥମ ଶ୍ରେଣୀରେ ପାଶ୍ କରିଗଲେ, ସେ ଭଲ କରି ପାଠ ଦେଖାଇ ପାରିଲେ । ତୁମ୍ଭମାନଙ୍କ ମଧ୍ୟରୁ ସେହିପରି ଅନେକେ ଥିବେ । ଅନେକ କାହିଁକି ଊଣା ଅଧିକେ ସେହି ଛାଞ୍ଚରେ ଗଢ଼ା ହୋଇଛନ୍ତି । ମୋଟ ଉପରେ ଯେପରି ପଢ଼ିଲେ ତୁମ ମନର ବା ଆତ୍ମାର ଉନ୍ନତି ହେବ, ତୁମ୍ଭେ ପ୍ରକୃତ ଜ୍ଞାନ ଅର୍ଜନ କରିବ । ପାଠ ଜାଣ ବା ନ ଜାଣ, ନିଜକୁ ପାଠ ଜାଣିବା ଭଳି ଦେଖାଇ ପାରିଲେ ହେଲା । ଜ୍ଞାନ ଅର୍ଜନ କରିବା ଦରକାର ନାହିଁ । ଜ୍ଞାନୀ ବୋଲି ଆପଣାକୁ ପରିଚୟ ଦେଇପାରିଲେ, ପରୀକ୍ଷକକୁ ଠକି ଦେଇ ପାରିଲେ ପାଶ୍ ହେଲା । ସମସ୍ତେ ଜାଣିଲେ ତୁମର ପଢ଼ା ହୋଇଅଛି ।''

ଏହିଠାରେ ସେହି ମନୋଜ୍ଞ ବକ୍ତୃତାର ସମାପ୍ତି ହେଲାନାହିଁ । ସେ ପୁଣି କହିଲେ, ଭାବି ଦେଖ, ତୁମ୍ଭର ନିତି ସେଇଆ ଲାଗିଅଛି । ନିତି ତୁମ୍ଭେ ଯାହା ନୁହଁ, ତାହା ବୋଲି ଦେଖାଇହେବା ପାଇଁ ଲାଗିଛ । ଏହି ଦେଖାଇହେବା ହିଁ ତୁମ୍ଭେ ସ୍କୁଲ କଲେଜରେ ପରିଶ୍ରମ କରି ଶିଖୁଛ । ଏଥିରେ ତୁମର ପ୍ରକୃତ ଜ୍ଞାନ ହୋଇ ନାହିଁ, ସେଥି ସଙ୍ଗେ ସଙ୍ଗେ ଚରିତ୍ରହୀନ ହୋଇ ଯାଉଛ । ଏହିପରି ଶିକ୍ଷାରେ ଆମର ଜାତୀୟ ସଭ୍ୟତା ବଦଳି ଯାଉଛି । ଗୁଣୀ ହୁଅ, ଜ୍ଞାନୀ ହୁଅ, ଗୁଣ ବା ଜ୍ଞାନ ଅଛି ବୋଲି ଖାଲି ଜଣାଇହେବାକୁ ଚେଷ୍ଟା କର ନାହିଁ । ମର୍ଯ୍ୟାଦାବାନ ହୁଅ । ଖାଲି ମର୍ଯ୍ୟାଦା ପାଇବାକୁ ଇଚ୍ଛା କର ନାହିଁ । ଏହିପରି ହେବାକୁ ଚେଷ୍ଟା କରିବା ହିଁ ପ୍ରକୃତ ଶିକ୍ଷା ।

ଶିକ୍ଷାରେ ସର୍ବଦା କଠୋର ସତ୍ୟର ଆଚରଣ– ମିଥ୍ୟାଚାରର ସ୍ଥାନ ସେଠାରେ ନାହିଁ । ଆତ୍ମପ୍ରତାରଣା କରିବାର ପଥ ସେଠାରେ ଅବରୁଦ୍ଧ । ସେଠାରେ କେବଳ ଅଛି ଜ୍ଞାନ ସକାଶେ ଜ୍ଞାନର ସାଧନା । ଦେଶ ଓ ଜାତିର କଲ୍ୟାଣକର କର୍ମରେ ଆତ୍ମବିଶ୍ୱାସ, ଭବିଷ୍ୟତରେ ଜ୍ଞାନସାଧନାରେ ଗୁରୁଙ୍କୁ ପରାଜୟ କରିବାର ଅଦମ୍ୟ ଉତ୍ସାହ ଓ ବାସନା । କାରଣ ପ୍ରାଚୀନ ଆର୍ଯ୍ୟ ଋଷିମାନଙ୍କର ଏ କ୍ଷେତ୍ରରେ ଅମୋଘ ନିର୍ଦ୍ଦେଶ ସର୍ବତ୍ର ଜୟମନ୍ୱିଚ୍ଛେତ୍, ଶିଷ୍ୟାବିଚ୍ଛେଦ୍ ପରାଜୟଂ । ଶିକ୍ଷା କଅଣ, ବକ୍ତୃତାରେ ସେହି କଥା ଅତି ପ୍ରାଞ୍ଜଳ ଭାବରେ ହୃଦୟର ଉଦ୍‌ବେଳନରେ ସେ ବ୍ୟକ୍ତ କରିଅଛନ୍ତି, ଶିକ୍ଷକଙ୍କ ଆଦେଶକୁ ଏବେ ସମାଲୋଚନା କର ନାହିଁ । ତୁମ୍ଭର ସେ କାଳ ଆସି ନାହିଁ । ହୋଇପାରେ ଆମ୍ଭେମାନେ ଯାହା କରୁଛୁ, ତାହା ସବୁବେଳେ ଠିକ୍ ହେଉ ନାହିଁ । ତୁମ୍ଭେମାନେ ଏ ଦେଶର ଭବିଷ୍ୟତ, ଦିନେ ତୁମେ ଶିକ୍ଷକ ହେବ । ଗୁରୁ ହେବ । ସେ ଆଉ ବେଶି ଦିନ ନୁହେଁ । ସେଦିନ ତୁମ୍ଭେ ହୁଏତ ଆମ କାର୍ଯ୍ୟରେ ଭୁଲ ଦେଖାଇବ । ଆମ୍ଭଠାରୁ ଆହୁରି ଯୋଗ୍ୟତାର ସହିତ କାର୍ଯ୍ୟ କରିବ । କର, ସେଦିନ ଆସୁ, ସେ ଦିନକୁ, ସେ ସାଧୁ

ସମାଲୋଚନାକୁ, ଶିଷ୍ୟଠାରୁ ସେ ପରାଜୟକୁ ଆମ୍ଭେମାନେ ପ୍ରାଣର ସହିତ ଗ୍ରହଣ କରିବାକୁ ଚାହିଁ ବସିଅଛୁ । ଆମ୍ଭେମାନେ ସେତେବେଳେ ଇହଜଗତରେ ଥାଉଁ, ଅନ୍ୟ ଜଗତରେ ଥାଉଁ, ଆମ୍ଭ ବିଶ୍ୱାସ, ତୁମ୍ଭର ସେଦିନ ଆମେ ଜାଣିବୁ । ଦେଖିବୁଁ, ସେଦିନ ଆମର ଆତ୍ମା ମୁକ୍ତି ଲାଭ କରିବ । ସେଦିନ ଆସିବ, ତୁମ୍ଭେ ଆମ୍ଭଠାରୁ ବେଶୀ ଉପଯୁକ୍ତ ବୋଲି ଭବିଷ୍ୟତରେ ପରିଚିତ ହେବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେଥିପାଇଁ ଆଜି ଗୁରୁଙ୍କଠାରେ ଆତ୍ମସମର୍ପଣ କରିବା ଉଚିତ ।

ଏ ତ ଗଲା ଶିକ୍ଷା କିପରି ଚାଲିଛି ତାର ପ୍ରଧାନ କଥା । ଏ କେବଳ ନିଷେଧାତ୍ମକବାଣୀ । କିନ୍ତୁ ଶିକ୍ଷା ବିଷୟରେ ଅସ୍ତିତ୍ୱବାଚକ ନିର୍ଦ୍ଦେଶ କ'ଣ, ପ୍ରକୃତ ଶିକ୍ଷା କାହାକୁ କୁହାଯାଏ, ଏହାର ବ୍ୟାଖ୍ୟା ଦେବା ନିମନ୍ତେ ନୀଳକଣ୍ଠବାବୁ କହିଥିଲେ, ଶିକ୍ଷା ଏପରି ହେବାର ନୁହେଁ, ତାହା ବୋଧହୁଏ ବୁଝିଲ । ତେବେ ଶିକ୍ଷା କିପରି ? ଅବଶ୍ୟ ବୁଝିପାରୁଅଛ, ଜାଣିଛୁ ବୋଲି ଦେଖାଇ ହେବା ଶିକ୍ଷାର ଉଦ୍ଦେଶ୍ୟ ନୁହେଁ । ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ପ୍ରକୃତ ଜାଣିବା । ପ୍ରଥମ କଥା ତୁମ୍ଭେ ଯାହା ନୁହଁ, ତାହା ଦେଖାଇ ହେବାର ପ୍ରବୃତ୍ତି ପ୍ରକୃତ ଶିକ୍ଷାର ଫଳ ନୁହେଁ । ପ୍ରକୃତ ଶିକ୍ଷାରେ ଆମ୍ଭେ ଠିକ୍ ଯାହା ତାହା ଜାଣିପାରୁ ଏବଂ ଦରକାର ହେଲେ ଲୋକଙ୍କୁ ସେଇୟା ବୋଲି ଜଣାଉ । ଆମ୍ଭର ଅଭାବ ବା ଦୋଷ ଥିଲେ ତାହା ପୂର୍ଣ୍ଣ କରିବାକୁ ଚେଷ୍ଟାକରୁ । ଲୋକେ ଜାଣିଲେ କି ନାହିଁ, ସେଥିପାଇଁ ଅପେକ୍ଷା ରଖୁ ନାହିଁ । କ୍ରମେ କ୍ରମେ ନିଜକୁ ଭଲ ହେବାକୁ ଚେଷ୍ଟା କରୁ । କାମରେ, ନୀତିରେ, ସ୍ୱାସ୍ଥ୍ୟରେ ବଡ଼ ଓ ଭଲ ହେବା ଶିକ୍ଷାର ଉଦ୍ଦେଶ୍ୟ ଓ ଫଳ । ଏହାକୁ ହିଁ କହନ୍ତି ଆତ୍ମବିକାଶ । ଏହି ଆତ୍ମବିକାଶ ନ ହେଲେ ଶିକ୍ଷା ହେଲା ନାହିଁ ।

ଏହି ଆତ୍ମବିଶ୍ୱାସ ତେବେ କିପରି ତାହା ବୋଧହୁଏ ଭଲକରି ବୁଝିଲ ନାହିଁ । ଗୋଟିଏ ଗଛର କଥା ଭାବ । ଗଛ ଚେର ଦ୍ୱାରା ମାଟି ଭିତରୁ ତା'ର ଯେଉଁ ରସ ଦରକାର ହୁଏ, ତାହା ଟାଣି ନିଏ । ଆଲୁଅରୁ, ପବନରୁ ନିଜର ଖାଦ୍ୟ ସଂଗ୍ରହ କରେ । ଯାହା ଯେଉଁଠାରୁ ଆଣେ ତାହା ନିଜର ଖାଦ୍ୟରେ ପରିଣତ କରେ । ତୁମ୍ଭେମାନେ ନିଜେ ଏଠାରେ କେତେ ଗଛ ପୋତୁଅଛ, ବଢ଼ାଇଅଛ ଦେଖିଥିବ, ଗଛ ମୂଳରେ ତୁମ୍ଭେ ଖତ ଦିଅ, ପିଡ଼ିଆ ଦିଅ, ତାହା ଖାଇ ଗଛ ବଢ଼ିଯାଏ । କିପରି ବଢ଼େ ? ତୁମ୍ଭେ ପାଠ ମୁଖସ୍ଥ କରି ପରୀକ୍ଷାରେ ଅବିକଳ କାଢ଼ି ପକାଇଲା ପରି ଗଛ ପିଡ଼ିଆ ଖାଇ ପିଡ଼ିଆ କାଢ଼େ ନାହିଁ । ଖାଏ ପିଡ଼ିଆ, କାଢ଼େ ସୁନ୍ଦର ପତ୍ରଟିଏ, ଫଳଟିଏ, ଫୁଲଟିଏ । ତୁମ୍ଭେ ମଧ୍ୟ ପ୍ରତିଦିନ ଭାତ, ଡାଲି, ପରିବା ଖାଉଅଛ । ତୁମ୍ଭ ଦେହ ବଢ଼ୁଅଛି । ଖାଇବାରୁ ଦେହ ଉପରେ ଭାତ, ଡାଲି ଲାଗି ଦେହ ବଢ଼ୁନାହିଁ । ଭାତ, ଡାଲି, ସବୁ ଶରୀରରେ ରକ୍ତ, ମାଂସ, ହାଡ଼ରେ ପରିଣତ ହୋଇଅଛି । ପଢ଼ାରେ ମଧ୍ୟ ସେହିପରି । ଯାହା ଶିକ୍ଷା କରିବ, ସେ ତୁମର ଜିନିଷ ହୋଇଯିବା ଦରକାର । ତୁମ୍ଭେମାନେ ଯାହା ପଢ଼ିବ ବା ଶିଖିବ, ତାହା କେତେବେଳେ କେଉଁଠାରୁ ଶିଖିଛ ଜାଣିହେଲେ ଶିକ୍ଷା ହେଲା ନାହିଁ । ଜ୍ଞାନ ବଢ଼ିଲେ ତୁମେମାନେ ନିଜେ ନିଜେ ଲେଖାପଢ଼ା, ଆଲୋଚନା କରିପାରିବ । ପ୍ରବନ୍ଧ ଲେଖିଲାବେଳେ ଅମୁକ ବହିରେ ଏପରି ଲେଖାଅଛି, ସେହିପରି ଲେଖିବି ଅଙ୍କ କଷିବା ବେଳେ ବହିରେ ଏପରି ଧାରାରେ କଷା ହୋଇଛି, ସେହିପରି କଷିଯିବି ଏହା ଜାଣୁଥିବାତକ ପ୍ରକୃତ ଶିକ୍ଷା ହୋଇନାହିଁ । ତୁମେ ପ୍ରକୃତ ଜ୍ଞାନଲାଭ ଆଉ କରିନାହଁ । ଅନେକ ଶିଖି ପଢ଼ି ଯେତେବେଳେ ନିଜେ ଲେଖିପଢ଼ି ଆଲୋଚନା କରି ପାରିବ, ସେତିକିବେଳେ ଜାଣିବ ତୁମ୍ଭର ପ୍ରକୃତ ଶିକ୍ଷା ହୋଇଅଛି । ତୁମ୍ଭର ଭିତର ବାହାର ସମାନ ହୋଇଅଛି । ତୁମ୍ଭେ ଭିତରେ ଯାହା ହୋଇଅଛ, ବାହାରେ ତାହା ହିଁ ଦେଖାଉଛ । ଅନ୍ୟ ପ୍ରକାର ଦେଖାଇହେବାର କ୍ଷମତା ବା ଅଧିକାର ତୁମ୍ଭର ନାହିଁ । ଏହିପରି ଶିକ୍ଷା ପାଇବାକୁ ଥରେ ବିଚାରିଲେ ଦେଖିବ, ତୁମ୍ଭର ବାଜେ ବହି ଓ ପଢ଼ାବହିର ପ୍ରଭେଦ ନାହିଁ । ଶିକ୍ଷାରେ ତୁମ୍ଭର ପ୍ରକୃତ ଆତ୍ମବିକାଶ ହେବ । ଯେଉଁ ବହି ପଢ଼ିବ, ତାହା ତୁମ୍ଭକୁ ସୁଖ ଲାଗିବ । ତୁମ୍ଭେ ଜ୍ଞାନ ପାଇଁ ପାଠ ପଢ଼ିବ । ପରୀକ୍ଷା ପାଇଁ ନୁହେଁ, ଟଙ୍କା ରୋଜଗାର କରିବା ପାଇଁ ନୁହେଁ । ସେଥିରେ ପ୍ରକୃତ ଶିକ୍ଷା ହେବ ନାହିଁ । ସେଥିରେ ଖାଲି ମିଥ୍ୟାଚାର ବଢ଼ିବ । ଜୀବନଟାଯାକ ଦେଖାଇ ହେବାରେ ଯିବ । ଆଜି ବୋଲି ଆଜି ନୁହେଁ, ସାରା ଜୀବନ ମିଥ୍ୟାଚାରମୟ ହୋଇଯିବ ।

ଏ ତ ଗଲା ପୁସ୍ତକଗତ ଶିକ୍ଷା କଥା । କେବଳ ପୋଥି ପଢ଼ିଲେ ଶିକ୍ଷାରେ ପୂର୍ଣ୍ଣତା ଆସେନାହିଁ । ଯାହା ପଢ଼ୁଛ, ଯେଉଁ ନୀତି ଉପଦେଶ ତୁମେମାନେ ବହିରୁ ପାଉଛ, ତାକୁ ସବୁ ଜୀବନରେ ଅନୁଭବ ନ କଲେ ସେ ପଢ଼ାର କିଛି ଫଳ ନାହିଁ ।

ଏହି କଥାର ମର୍ମ ସ୍ପଷ୍ଟ ଭାବରେ ଛାତ୍ରମାନଙ୍କୁ ବୁଝାଇଦେବା ନିମନ୍ତେ ନୀଳକଣ୍ଠବାବୁ କହିଲେ, ପଢ଼ାର ଉଦ୍ଦେଶ୍ୟ ସଂସାରରେ ମନୁଷ୍ୟ ହେବା। ତୁମ୍ଭେମାନେ ବାଳକ, ସଂସାର ବିଷୟରେ କିଛି ଜାଣି ନାହଁ। ସଂସାରରେ କେତେ ପ୍ରକାରର ଲୋକ ଅଛନ୍ତି। ପଣ୍ଡିତ, ମୂର୍ଖ, ଶାନ୍ତ, ଦୁରନ୍ତ, ବିବେକୀ, ଅବୁଝାମଣା, ଧନୀ, ଦରିଦ୍ର, ସନ୍ଥ, ରାଗୀ, ଦାମ୍ଭିକ, ଆର୍ତ୍ତ ସମସ୍ତଙ୍କ ସଙ୍ଗେ ଚଳିବାକୁ ହେବ। ଖାଲି ବହି ପଢ଼ି ତାହାସବୁ ତୁମ୍ଭେ ପାରିବ କି ? ଗୋଟିଏ କଥା ଉଦାହରଣରେ ଦେଖ, ଯେଉଁମାନେ ବୋର୍ଡିଂରେ ନଥାନ୍ତି ସେମାନେ ବେଶୀ ଲୋକଙ୍କ ସହ ଚଳି ନାହାନ୍ତି। ସାମାନ୍ୟ ବିରକ୍ତ ହେଲେ ସେମାନେ ଯେତେ ରାଗିଯାନ୍ତି, ଯେତେ ମାନ କରି ବସନ୍ତି ତୁମ୍ଭେମାନେ ଯେଉଁମାନେ ବୋର୍ଡିଂରେ ଅଛ, ସେମିତି କର ନାହିଁ। କାରଣ ତୁମ୍ଭେମାନେ କେତେ ଲୋକଙ୍କ ସଙ୍ଗେ ଚଳୁଛ। କିଏ କେତେବେଳେ ଗାଳି ଦେଉଛି, କିଏ ବା ସ୍ନେହ କରୁଛି। ଦେଖି ଦେଖି ତୁମ୍ଭେ କେତେ ପ୍ରକାର ଲୋକଙ୍କ ସଙ୍ଗେ ଚଳି ଶିଖିଗଲଣି। ତୁମ୍ଭେମାନେ ଯେଉଁ ରୋଗୀ ସେବା କର, ମନୁଷ୍ୟର ରୋଗ ବେଳର ଦୁଃଖ ଜାଣ, ରୋଗୀର ମଳମୂତ୍ର ପର୍ଯ୍ୟନ୍ତ ପରିଷ୍କାର କରିବାରେ ତୁମ୍ଭର ଯେଉଁ ଆଦର ଥାଏ ତୁମ୍ଭେ ଯେତେବେଳେ ତାହା ହାତରେ କରି ଶିଖି ନଥିଲ, ସେତେବେଳେ ତାହା ତୁମ୍ଭର ଥିଲା କି ? ତୁମ୍ଭରି ସାଙ୍ଗର ସବୁ ସ୍ଥାନର ପିଲାମାନେ ଯେଉଁମାନେ ଏପରି ଅଭ୍ୟାସ କରନ୍ତି ନାହିଁ, ତାଙ୍କର ଅଛି କି ? ବହିରେ ତ' ଏ ବିଷୟରେ କେତେ ଉପଦେଶ ଅଛି। ଉପଦେଶ ପଢ଼ି କାର୍ଯ୍ୟ ନ କଲେ ତହିଁରୁ କି ଫଳ ? ଜୀବନ ତିଆରି କରିବାକୁ ହେଲେ କେବଳ ଉପଦେଶରେ କିଛି ହୁଏ ନାହିଁ, କାର୍ଯ୍ୟ କର। ଅନୁଭବ କରି ଶିଖିବାକୁ ହୁଏ। ଶିକ୍ଷା ବାଳକକୁ ମନୁଷ୍ୟ କରେ। ବାଳକ କିଛି ହୋଇ ନ ଥାଏ। ତାହାର ଶରୀର, ତାହାର ମନ, ତାହାର ଆତ୍ମା ସବୁ ତିଆରି କରିବାକୁ ହେବ। ଶରୀରର ଚାଳନା କରି ଶରୀରକୁ ସୁସ୍ଥ, ସବଳ ଓ କାର୍ଯ୍ୟର ଉପଯୋଗୀ କରିବାକୁ ହେବ। ମନୁଷ୍ୟର ସଂସାରରେ ଯେତେ କାର୍ଯ୍ୟ କରିବାକୁ ପଡ଼ିପାରେ ଏହିଦିନୁ ଅଭ୍ୟାସ ଦ୍ୱାରା ସବୁ କାର୍ଯ୍ୟ ଶିଖିବାକୁ ହେବ। ଏ ଅଭ୍ୟାସ କରି ରୋଗୀ, ଦୁଃଖୀ, ରାଗୀ, ଶାନ୍ତ ପ୍ରଭୃତି ସକଳ ଶ୍ରେଣୀର ଲୋକକୁ ଭଲକରି ଚିହ୍ନିବାକୁ ହେବ। ସମସ୍ତଙ୍କ ସଙ୍ଗେ ଚଳିବା ଭଳି ନିଜକୁ କରିନେବାକୁ ହେବ। ଦେଶର ଅବସ୍ଥା ଜାଣିବାକୁ ହେବ। ଗରିବ ଲୋକଙ୍କ କଷ୍ଟ ବୁଝିବାକୁ ହେବ। ସମାଜରେ ରହିବାକୁ ହେଲେ ପରୋପକାର ଓ ଲୋକସେବା ପ୍ରଧାନ କାର୍ଯ୍ୟ। ଈଶ୍ୱରଙ୍କ ରାଜ୍ୟରେ କୌଣସି କର୍ମ ବା ବ୍ୟବସାୟ ନୀଚ ନୁହେଁ। ସମସ୍ତେ ପରିଶ୍ରମ କରିବେ। କେହି ବାବୁ ହୋଇ ବସି ରହି ପାରିବେ ନାହିଁ। ଜ୍ଞାନ ଲାଭ କରି ସମସ୍ତେ ଜ୍ଞାନକୁ ଆପଣାର କରି ନେବାକୁ ହେବ। ଯେଉଁମାନଙ୍କ ବହିରୁ କାର୍ଯ୍ୟରୁ ଆମ୍ଭେ ନୂଆ ଜ୍ଞାନ ପାଉଅଛୁ ଆମ୍ଭେ ଜ୍ଞାନ ପାଇଁ ସେମାନଙ୍କ ପରି କିପରି ପୃଥିବୀକୁ ନୂଆ ନୂଆ କଥା ଦେଇଯିବୁ, ଏକଥା ଏହି ଦିନୁ ବିଚାର କରି ପାଠ ପଢ଼ିବାକୁ ହେବ। ଚରିତ୍ରର ମଧ୍ୟ ସଙ୍ଗେ ସଙ୍ଗେ ଉନ୍ନତି କରିବା ଦରକାର। ସତ୍ୟ କହିବା, ପରର ଉପକାର କରିବା, ଦୁଃଖୀର ଦୁଃଖ ଦେଖି ଅନୁଭବ କରି ଶିଖିବା, ଦେଶକୁ ଦେଶର ଲୋକଙ୍କୁ ଓ ପୂର୍ବପୁରୁଷଙ୍କ କାର୍ଯ୍ୟକୁ ପ୍ରାଣର ଭାବର ସହିତ ସୁଖ ପାଇବା, ସର୍ବୋପରି ମିଥ୍ୟାଚାର ନ ହୋଇ ସତ୍ୟାଚାର ହେବା । ନିଜେ ଯାହା ସେୟା ହେବା ବୋଲି ଦେଖାଇବାକୁ ଏହିଦିନୁ ଅଭ୍ୟାସ କରିବା। ଏଥିରେ ଯେଉଁ ପବିତ୍ର ଓ ଆତ୍ମମର୍ଯ୍ୟାଦା ଅଛି, ତାହା ଭଲ କରି ବୁଝିବା ଓ ସେହି ଅନୁସାରେ କାର୍ଯ୍ୟ କରି ବିଶ୍ୱପିତାଙ୍କ ରାଜ୍ୟରେ ପ୍ରକୃତ ମନୁଷ୍ୟ ହୋଇ ତାଙ୍କରି ଇଚ୍ଛାପୂର୍ଣ୍ଣ କରିବା ଶିକ୍ଷାର ଉଦ୍ଦେଶ୍ୟ। ସେଥିପାଇଁ କହୁଥିଲି, କେବଳ ବହି ପଢ଼ାରେ ଶିକ୍ଷା ନାହିଁ, କେବଳ ପରୀକ୍ଷା ପାଇଁ ପାଶ୍ ମନୁଷ୍ୟକୁ ମନୁଷ୍ୟ କରେ ନାହିଁ। ଶିଖିବା ପାଇଁ ସମସ୍ତ ଜଗତ୍ ଓ ଅନନ୍ତ କର୍ତ୍ତବ୍ୟ ପଡ଼ି ରହିଛି। ନାନା କାରଣରୁ ଆଜି ପରୀକ୍ଷା ପାଇଁ ପଢ଼ିବାକୁ ତୁମ୍ଭେ ବାଧ ହେଉଅଛ ସତ୍ୟ, କିନ୍ତୁ ତା' ସଙ୍ଗେ ସଙ୍ଗେ ଏଭଳି ପ୍ରକୃତ ଶିକ୍ଷା ଆଡ଼କୁ ତୁମ୍ଭର ଯେତେ ଦୃଷ୍ଟି ପଡ଼େ, ତୁମ୍ଭର ଶିକ୍ଷକ ଓ ଅଭିଭାବକମାନେ ଯେତେ ଏ କଥା ବୁଝନ୍ତି ସେତେ ତୁମ୍ଭର ମଙ୍ଗଳ ହେବ, ଦେଶର କଲ୍ୟାଣ ହେବ।

ତା'ପରେ ଭାରତ ସନ୍ତାନମାନଙ୍କର ଶିକ୍ଷା ପଦ୍ଧତିର ବିଶେଷତ୍ୱ କ'ଣ ? ଏ କଥା ଉପରେ ଅସାମାନ୍ୟ ଗୁରୁତ୍ୱ ଆରୋପ କରି ନୀଳକଣ୍ଠବାବୁ ସେତେବେଳେ କହିଥିଲେ, ଆମ୍ଭେମାନେ ଭାରତ ସନ୍ତାନ। ଭାରତ ଚିରକାଳ ଜ୍ଞାନର ଦେଶ, ମନୁଷ୍ୟତାର ଦେଶ। ଭାରତ କେବେ ଧନ ପାଇଁ ବିଦେଶ ଲୁଣ୍ଠନ କରି ନାହିଁ। ସେ କଥା ଆମ୍ଭ ଜାତିର ପ୍ରକୃତି ନୁହେଁ। କିନ୍ତୁ ସମସ୍ତ ପୃଥିବୀ ଯେତେବେଳେ ଅଜ୍ଞାନ ଅନ୍ଧାରରେ ଥିଲା, ସେହି ଆଦି

ଯୁଗରେ ଭାରତର ଋଷିକୁଳ ପୃଥିବୀରେ ଜ୍ଞାନଦୀପ ଜାଳିଥିଲେ। ଭାରତର ଜ୍ଞାନ ଦାନରେ ପୃଥିବୀ ଦିନେ ପରିପୁଷ୍ଟ ହୋଇଥିଲା ଏବଂ କେବେ ଯଦି ଭାରତ ପୃଥିବୀରେ ପ୍ରତିଷ୍ଠା ପାଇବ, ତେବେ ପାଇବ ସେହି ଜ୍ଞାନରେ। ସେହି ଜ୍ଞାନର ଆଦିଭୂମି ଆମ୍ଭମାନଙ୍କର ମାତୃଭୂମି ଭାରତର ଶିକ୍ଷାପ୍ରଣାଳୀ ଓ ପଦ୍ଧତି ଯାହା ଥିଲା, ମନେରଖ, ଆଜି ସୁସଭ୍ୟ ଦେଶ ସବୁ ମଧ୍ୟ ସେହି ସୁନ୍ଦର ପ୍ରଣାଳୀ ପାଇଛି କି ନାହିଁ ସନ୍ଦେହ। ଜ୍ଞାନ ପାଇଁ ହେଉ ମନୁଷ୍ୟତା ପାଇଁ ଏ ଦେଶରେ ଶିକ୍ଷା ଦିଆ ହେଉଥିଲା। ସେଥିପାଇଁ କେବଳ ଲୋକେ ଶିକ୍ଷା କରୁଥିଲେ। ଟଙ୍କା ପଇସା ପାଇଁ ନୁହେଁ। ବ୍ୟାସ, ବାଲ୍ମୀକିଙ୍କ ପରି ମନୀଷୀମାନେ, ଆର୍ଯ୍ୟଭଟ୍ଟ, ଶଙ୍କର, ମଲ୍ଲୀନାଥଙ୍କ ପରି ପଣ୍ଡିତଗଣ ଏ ଦେଶରେ ଟଙ୍କା ପାଇଁ ବିଦ୍ୟାଲୋଚନା କରୁ ନ ଥିଲେ। ପଲ୍ଲୀର ଚତୁଷ୍ପାଠୀରେ, ବନର ଗୁରୁକୁଳଙ୍କର ଶିଷ୍ୟମାନେ ଶିକ୍ଷକଙ୍କ ସାହାଯ୍ୟରେ ସର୍ବଦା ବାସ କରି ସର୍ବପ୍ରକାର ଶିକ୍ଷାଲାଭ କରୁଥିଲେ। ଭିକ୍ଷାଟନ, ଜନସେବାଠାରୁ ବିଲରେ କାମ କରିବା, ଗାଈ ଜଗିବା ପର୍ଯ୍ୟନ୍ତ ଗୁରୁଙ୍କ ତତ୍ତ୍ୱାବଧାନରେ ହେଉଥିଲା। ଗ୍ରନ୍ଥପାଠ ସଙ୍ଗେ ସଙ୍ଗେ ଏସବୁ କାର୍ଯ୍ୟ ଶିକ୍ଷାର ଅଙ୍ଗୀଭୂତ ଥିଲା। ଏହିପରି ସୁଶିକ୍ଷାରେ ବଢ଼ି ଯେତେବେଳେ ଶିଷ୍ୟ ଉପଯୁକ୍ତ ହେଲାଣି ବୋଲି ଗୁରୁ ବିଚାରୁଥିଲେ, ସେତେବେଳେ ଶିଷ୍ୟକୁ ବିଦାୟ ଦେଉଥିଲେ। କିନ୍ତୁ ଭାରତରେ ଏ ଚିରକାଳ ପ୍ରଥା ଥିଲା। ଏବେ ମାତ୍ର ଉଠିଯାଇଅଛି। ତେବେ ପରୀକ୍ଷା ତ ଦେବାକୁ ହେବ, ନ ଦେବାକୁ ଆମ୍ଭର ଚାରା ନାହିଁ। ସେଥି ସଙ୍ଗେ ସଙ୍ଗେ ଯେତେଦୂର ପ୍ରକୃତ ଶିକ୍ଷା ମିଳିପାରେ ସେଥିପାଇଁ ପ୍ରସ୍ତୁତ ହୁଅ । ପ୍ରାଚୀନ ଭାରତର ଶିକ୍ଷା ପରି ଗୁରୁଙ୍କଠାରେ ଆତ୍ମସମର୍ପଣ କରି କୃତାର୍ଥ ହୁଅ । ପରୀକ୍ଷାକୁ ଜୀବନର ସର୍ବସ୍ୱ କର ନାହିଁ। ଜ୍ଞାନ ହେଲେ ପରୀକ୍ଷାରେ ପାଶ୍ ହେବା ଦୂରର କଥା ନୁହେଁ।''

ଶିକ୍ଷା ବିଷୟରେ ଏହିପରି ଅସ୍ତିତ୍ୱବାଚକ ବାଣୀ ଶୁଣାଇ ସେ ତାଙ୍କର ବକ୍ତୃତା ଶେଷ କରିଅଛନ୍ତି । ଏହିପରି ଭାବରେ, ଦେଶର ଶିକ୍ଷାର ଭାର କାଲି ତୁମ୍ଭମାନଙ୍କ ଉପରେ ପଡ଼ିବ। ସେଥିପାଇଁ ପ୍ରସ୍ତୁତ ହୁଅ । ଜୀବନକୁ ଏହିଦିନୁ ତିଆରି କର। ସଂକଳ୍ପ କର, ଦେଶରେ ଯେପରି ସଦ୍‌ଗୁରୁ ସଦ୍-ଅଭିଭାବକମାନଙ୍କର ଅଭାବ ନ ହୁଏ। ତୁମ୍ଭ ଜୀବନରେ ତୁମ୍ଭେ ଯେପରି ଏ ଅଭାବ ପୂର୍ଣ୍ଣ କର। ତୁମ୍ଭର ପୂର୍ବପୁରୁଷ ପୃଥିବୀକୁ ଜ୍ଞାନାଲୋକ ଦେଇଥିଲେ, ସତ୍‌ଶିକ୍ଷା, ସାଧୁ ମନୁଷ୍ୟତା, ସରଳ ସଭ୍ୟତା କଅଣ ତାହା ଜଗତକୁ ଦେଖାଇଥିଲେ। ମନେରଖ, ସେହି ସତ୍‌ଶିକ୍ଷା, ସରଳ ସଭ୍ୟତା ଓ ସାଧୁ ମନୁଷ୍ୟତା ପୃଥିବୀରେ ପ୍ରତିଷ୍ଠିତ କରିବା ତୁମ୍ଭ ପକ୍ଷରେ ବଡ଼ ଗହନ କଥା ନୁହେଁ। ଏହା ତୁମ୍ଭର ପୈତୃକ ସମ୍ପତ୍ତି। ଏଥିପାଇଁ ତୁମ୍ଭକୁ ଅନ୍ୟ ଦେଶକୁ ଖୋଜିବାକୁ ଯିବାକୁ ହେବ ନାହିଁ। ଏହା ତୁମ୍ଭ ରକ୍ତ ମାଂସରେ ରହିଅଛି। ସେ କଥା ମନେ ରଖି ଜୀବନରେ ପ୍ରସ୍ତୁତ ହୁଅ । ଜ୍ଞାନ ପାଇଁ ବିଦ୍ୟାର୍ଥୀ ହୁଅ । ମନୁଷ୍ୟତା ପାଇଁ ଗୁରୁଙ୍କଠାରେ ଆତ୍ମସମର୍ପଣ କର। ବାବୁ ଦିନ ଆସିବ ଯେଉଁଦିନ ତୁମ୍ଭେ ପ୍ରକୃତରେ ଜ୍ଞାନମାତା ଭାରତ ଦେଶର ଋଷିକୁଳସନ୍ତତି ବୋଲି ଗର୍ବର ସହିତ ଅନୁଭବ କରିବାକୁ ସମର୍ଥ ହେବ।''

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ-୮



# ଯୁଗପୁରୁଷ ନେତାଜୀ

ଡକ୍ଟର ଭାଗବତ ତ୍ରିପାଠୀ

ଯେତେବେଳେ ଗାନ୍ଧିଜୀଙ୍କ ଡାକରାରେ ଭାରତ ଛାଡ଼ ଆନ୍ଦୋଳନ କ୍ରମେକ୍ରମେ ମଉଳି ଯିବାରେ ଲାଗିଛି ଠିକ୍ ସେତିକିବେଳେ ଅନ୍ୟ ଏକ ବିରୋଚିତ ଘଟଣାବଳୀ ଘଟିଚାଲିଛି ଭାରତ ବାହାରେ । ନେତାଜୀ ସୁଭାଷଚନ୍ଦ୍ର ବୋଷ ତାଙ୍କର ଆଜାଦ୍ ହିନ୍ଦ୍ ଫୌଜ ସହ ଭାରତ ସୀମା ଆଡ଼କୁ ଅଗ୍ରସର ହେଉଥିବା ସମ୍ବାଦ ଭାରତୀୟମାନଙ୍କ ମନରେ ଏକ ନୂତନ ଉଦ୍ଦୀପନା ସଞ୍ଚାର କଲା ।

ସୁଭାଷ ଚନ୍ଦ୍ର ବୋଷ ଭାରତୀୟ ନେତୃମଣ୍ଡଳୀ ମଧ୍ୟରେ ଜଣେ ପ୍ରତିଭାବାନ୍ ବ୍ୟକ୍ତିତ୍ୱ ଥିଲେ । ସାହସିକତା ଓ ଯୁବ ସୁଲଭତା ବ୍ୟତୀତ ସାଂଗଠନିକ ଦକ୍ଷତା ହାସଲ କରିଥିଲେ ସେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବ୍ୟବହିତ ପୂର୍ବରୁ ସର୍ବସମ୍ମତିକ୍ରମେ ଜାତୀୟ କଂଗ୍ରେସର ସଭାପତି ଆସନ ଅଳଂକୃତ କରି ନବ ଭାରତ ଗଠନର ସ୍ୱପ୍ନକୁ ସାକାର କରିବା ନିମନ୍ତେ ବିଭିନ୍ନ ପଦକ୍ଷେପ ନେଇଥିଲେ । ଜାତୀୟ ଯୋଜନା କମିଟି ଗଠନ ତାଙ୍କର ଏକ ମାନସ ସନ୍ତାନ ଯାହାର ଦାୟିତ୍ୱ ସେ ନେହେରୁଙ୍କୁ ଅର୍ପଣ କରିଥିଲେ । ଭାରତର ଭବିଷ୍ୟତ ଯେତେବେଳେ ବେଳକୁ ବେଳ ଅନିଶ୍ଚିତ ଆଡକୁ ଧାବମାନ ସେତେବେଳେ ସେ ଶାନ୍ତି ଓ ଅହିଂସା ନୀତି ଉପରେ ବିଶ୍ୱାସ ହରାଇ ଫରୱାଡ଼ ବ୍ଲକ୍ ନାମକ ଏକ ନୂତନ ଦଳ ଗଢିଲେ । ବ୍ରିଟିଶ୍ ବିରୁଦ୍ଧରେ ବୈପ୍ଳବିକ ଓ ସାମରିକ ନୀତି ଅନୁସରଣ ବିନା ସ୍ୱାଧୀନତା ହାସଲ ଅସମ୍ଭବ ବୋଲି ତାଙ୍କ ମନରେ ଦୃଢ ପ୍ରତ୍ୟୟ ଜାତ ହେଲା ।

ସେହି ଐତିହାସିକ ଦିନଟି ଥିଲା ୧୯୪୦ ମସିହା ଜାନୁଆରୀ ୨୬ ତାରିଖ । ଏହିଦିନ ସେ ଜଣେ ମୌଲବୀ ବେଶରେ ଭାରତରୁ ବ୍ରିଟିଶ୍ ସରକାରର କଡ଼ା ନଜରରୁ ଆଶ୍ଚର୍ଯ୍ୟଜନକ ଭାବେ ଖସିଯାଇ ଭାରତ ସୀମା ଅତିକ୍ରମ କରିଗଲେ । ଶତ୍ରୁର ଶତ୍ରୁ-ମିତ୍ର ନ୍ୟାୟରେ ସେ ପ୍ରଥମେ ଜର୍ମାନୀର ସ୍ୱୈର ଶାସକ ଆଡଲଫ୍ ହିଟଲର୍‌ଙ୍କୁ ସାକ୍ଷାତ୍ କରି ଭାରତରୁ ବ୍ରିଟିଶ୍ ଶାସନ ଲୋପ ନିମନ୍ତେ ତାଙ୍କର ସାହାଯ୍ୟ ଲୋଡ଼ିଲେ । କିନ୍ତୁ ଶେଷରେ ସେ ହିଟ୍‌ଲର୍‌ଙ୍କଠାରୁ ନିରାଶ ହେଲେ । ଜର୍ମାନୀ ସହିତ ଜାପାନ ଯୁଦ୍ଧରେ ଯୋଗଦେବାରୁ ସେ ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ମନେକଲେ । ଦକ୍ଷିଣ-ପୂର୍ବ ଏସିଆରେ ବ୍ରିଟିଶ ସୈନ୍ୟ ବାହିନୀ ଜାପାନୀମାନଙ୍କ ଦ୍ୱାରା ପରାସ୍ତ ହେଲେ । ବ୍ରିଟିଶ୍ ସେନାପତି ପ୍ରାୟ ୪୫,୦୦୦ ବ୍ରିଟିଶ୍ ଭାରତୀୟ ସୈନିକଙ୍କୁ ମରିବା ପାଇଁ ଶତ୍ରୁ ହାତରେ ଅସହାୟ ଅବସ୍ଥାର ପରିତ୍ୟାଗ କଲେ । ୧୯୪୨ ମସିହା ଫେବୃୟାରୀ ୧୫ ତାରିଖରେ ସିଙ୍ଗାପୁରର ପତନ ହେଲା । ମାଳୟକୁ ଯେତେବେଳେ ବ୍ରିଟିଶ୍‌ମାନେ ଜାପାନ ହାତରେ ଅର୍ପଣ କଲେ, ସେତେବେଳେ ଭାରତୀୟ ଅଫିସର ଓ ସୈନିକମାନଙ୍କୁ ଜେନେରାଲ୍ ମୋହନ ସିଂଙ୍କୁ ଅର୍ପଣ କରାଗଲା । ପରାଜିତ ସୈନିକମାନଙ୍କ ମଧ୍ୟରୁ ପ୍ରାୟ ୬୦ ଭାଗ ସୈନିକଙ୍କୁ ନେଇ ସେ ଇଣ୍ଡିଆନ୍ ନ୍ୟାସନାଲ ଆର୍ମି (ଆଇ.ଏନ୍.ଏ.) ନାମକ ଏକ ସୈନ୍ୟ ଦଳ ଗଠନ କଲେ । ଅବଶ୍ୟ ଏହା ପୂର୍ବରୁ ରାସ ବିହାରୀ ବୋଷ ଜାପାନରେ ଇଣ୍ଡିଆନ ଇଣ୍ଡିପେଣ୍ଡେନ୍ସ ଲିଗ୍ ଗଠନ କରିସାରିଥିଲେ । ଭାରତ ଛାଡ ପ୍ରସ୍ତାବ ଜାତୀୟ କଂଗ୍ରେସ ଦ୍ୱାରା ଗୃହୀତ ହେବା ସମ୍ବାଦ ଯେତେବେଳେ ସେମାନଙ୍କଠାରେ ପହଞ୍ଚିଲା, ସେତେବେଳେ ସେମାନେ ଉତ୍ସାହିତ ହୋଇ ଆଇ.ଏନ୍.ଏ.ର ପ୍ରଥମ ପେରେଡ଼ର ଆୟୋଜନ କଲେ ।

୧୯୪୨ ମସିହା ଶେଷ ଆଡ଼କୁ ଆଇ.ଏନ୍.ଏ. ଓ ସାମ୍ରାଜ୍ୟବାଦୀ ଜାପାନୀ ସୈନ୍ୟବାହିନୀ ମଧ୍ୟରେ ଅବିଶ୍ୱାସର ବାତାବରଣ ସୃଷ୍ଟିହେଲା । ସେତେବେଳକୁ ଆଇ.ଏନ୍.ଏ.

ନିକଟରେ ସୁଭାଷ ବୋଷଙ୍କ ଭାରତରୁ ଜର୍ମାନ ପଳାୟନ ସମ୍ବାଦ ପହଞ୍ଚି ସାରିଥାଏ । ଜର୍ମାନୀରେ ଅବସ୍ଥାପିତ ଜାପାନ ଆମ୍ବାସଡରଙ୍କ ସହାୟତାରେ ଆଇ.ଏନ୍.ଏ. କର୍ମକର୍ତ୍ତାମାନେ ଜର୍ମାନୀରୁ ତାଙ୍କୁ ଜାପାନ ଆଣିବାପାଇଁ ସମସ୍ତ ବ୍ୟବସ୍ଥା କଲେ । ଯୁଦ୍ଧର ଘନଘଟା ମଧ୍ୟରେ ଅତି ସତର୍କତାର ସହିତ ସୁଭାଷ ଚନ୍ଦ୍ର ଜର୍ମାନୀର ଏକ ସବ୍‌ମେରାଇନ୍‌ରେ ଆଫ୍ରିକା ଆସି ସେଠାରୁ ଜାପାନର ଅନ୍ୟ ଏକ ଯୁଦ୍ଧ ଜାହାଜରେ ଯାଇ ଦକ୍ଷିଣ-ପୂର୍ବ ଏସିଆରେ ପହଞ୍ଚିଲେ । ଜର୍ମାନୀରୁ ଜାପାନ ପର୍ଯ୍ୟନ୍ତ ତାଙ୍କର ଯାତ୍ରାଥିଲା ବିପଦ ସଙ୍କୁଳ । ବୋଷ ସିଧାସଳଖ ଟୋକିଓ ଯାଇ ଜାପାନ ପ୍ରଧାନମନ୍ତ୍ରୀ ଓ ତାଙ୍କ ମନ୍ତ୍ରିମଣ୍ଡଳ ସହ ଆଲୋଚନା କରିବା ପରେ ଜାପାନ ଆଇ.ଏନ୍.ଏ. କୁ ଏକ ସ୍ୱାଧୀନ ସୈନ୍ୟବାହିନୀର ମର୍ଯ୍ୟାଦା ଦେବା ସଂଗେ ସଂଗେ ନୂତନ ସୈନ୍ୟ ସଂଗ୍ରହ ନିମିତ୍ତ ଅନୁମତି ଦେଲେ । ସିଙ୍ଗାପୁରଠାରେ ଆୟୋଜିତ ଏକ ସମ୍ମିଳନୀରେ ରାସ ବିହାରୀ ବୋଷ ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍‌ସ ଲିଗ୍‌ର ସଭାପତି ଦାୟିତ୍ୱ ସୁଭାଷ ବୋଷଙ୍କୁ ଅର୍ପଣ କରି ଆଇ.ଏନ୍.ଏ. ର ସର୍ବୋଚ୍ଚ ଅଧିକାରୀ ରୂପେ ଆସନ ମଣ୍ଡନ କରାଇଲେ ।

୧୯୪୩ ମସହା ଅକ୍ଟୋବର ୨୭ ତାରିଖ ଦିନ ନେତାଜୀ 'ଆଜାଦ୍‌ହିନ୍ଦ୍' ନାମକ ଏକ ଅସ୍ଥାୟୀ ସ୍ୱାଧୀନ ସରକାର ଗଠନ କଲେ ଯାହାକୁ ସାତୋଟି ଦେଶ ସ୍ୱୀକୃତି ପ୍ରଦାନ କଲେ । ସେତେବେଳକୁ ନୂତନ ସରକାରର ନିଜ ଦେଶ କହିଲେ ଆଣ୍ଡାମାନ୍ ଓ ନିକୋବର ଦ୍ୱୀପଦ୍ୱୟ ଯାହାକୁ 'ସ୍ୱରାଜ' ଓ 'ଶହୀଦ' ନାମରେ ବୋଷ ନାମିତ କରିଥିଲେ । ସେତେବେଳେ ଆଜାଦ୍‌ହିନ୍ଦ୍‌ର ସୈନ୍ୟମାନେ ସୁଭାଷ ବୋଷଙ୍କୁ 'ନେତାଜୀ' ବୋଲି ଡାକିଲେ । ସୁଦୂର ମାଳୟ, ବ୍ରହ୍ମଦେଶର ଅସଂଖ୍ୟ ଭାରତୀୟ ନେତାଜୀଙ୍କ ପ୍ରଗାଢ ଦେଶପ୍ରେମ ଓ ନେତୃତ୍ୱ ପ୍ରତି ଆକର୍ଷିତ ହୋଇ ସେମାନଙ୍କ ମାତୃଭୂମିର ମୁକ୍ତି ପାଇଁ ପ୍ରାଣପାତ ନିମିତ୍ତ ବଦ୍ଧପରିକର ହେଲେ । ଦେଶାତ୍ମବୋଧ ସଂଗୀତ ଗାନ ସଂଗେ ସଂଗେ 'ଦିଲ୍ଲୀ ଚଲୋ' ଥିଲା ସେମାନଙ୍କର ସ୍ଲୋଗାନ୍ । ଶେଷରେ ୧୯୪୪ ମସିହା ଏପ୍ରିଲ୍ ୧୧ ତାରିଖରେ ଆଜାଦ ହିନ୍ଦ୍ ଫୌଜ ଆସାମର କୋହିମା ଦଖଲ କରି ଭାରତ ଭୂମିରେ ତ୍ରିରଙ୍ଗା ପତାକା ଉଡାଇଲେ ।

ଚାହୁଁ ଚାହୁଁ ଯୁଦ୍ଧର ଗତି ନୂତନ ମୋଡନେଲା । ୧୯୪୫ ମସିହା ମେ ମାସରେ ଜର୍ମାନୀ ଆତ୍ମ ସମର୍ପଣ କଲା । ଅଗଷ୍ଟ ମାସରେ ଆମେରିକା ଜାପାନ ଉପରେ ଆଣବିକ ବୋମା ନିକ୍ଷେପ ଫଳରେ ସେ ଆତ୍ମ ସମର୍ପଣ କଲା ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟିଲା । ଯାହାଫଳରେ ଆଜାଦ୍ ହିନ୍ଦ୍ ଫୌଜର ଜୟଯାତ୍ରାରେ ପୂର୍ଣ୍ଣଚ୍ଛେଦ ଟଣାଗଲା । ଏହାର ସେନାପତିମାନେ ବ୍ରିଟିଶ୍ ହାତରେ ବନ୍ଦୀହେଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆକାଶ ମାର୍ଗରେ ଜାପାନ ଯିବା ବାଟରେ ଦୁର୍ଘଟଣାରେ ପ୍ରାଣ ହରାଇଲେ । ଏହା ଥିଲା ଭାରତର ମୁକ୍ତି ସଂଗ୍ରାମର ଏକ ରୋମାଞ୍ଚକର ଅଧ୍ୟାୟ ।

ଆଜାଦ୍ ହିନ୍ଦ୍ ଫୌଜର ବୀରତ୍ୱର ଗାଥା ସମଗ୍ର ଭାରତବର୍ଷରେ ପ୍ରଚାରିତ ହେଲା । ଏହା ଭାରତୀୟମାନଙ୍କ ମନରେ ଚାଞ୍ଚଲ୍ୟଭାବ ସୃଷ୍ଟି କଲା । ଯେତେବେଳେ ଦିଲ୍ଲୀର ଲାଲକିଲ୍ଲାରେ ବନ୍ଦୀ ସେନାପତିମାନଙ୍କୁ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁଦଣ୍ଡ ଦେବା ଲକ୍ଷ୍ୟରେ ବିଚାର ଆରମ୍ଭ ହେଲା, ସେତେବେଳେ ସମଗ୍ର ଦେଶରେ ଏକ ତିକ୍ତ ବାତାବରଣ ସୃଷ୍ଟି ସଂଗେ ସଂଗେ ସମସ୍ତଙ୍କ ମନରେ ଏକ ଅଭୂତପୂର୍ବ ଆବେଗ ଜାତ ହେଲା । ସେହି ବନ୍ଦୀ ସେନାପତିମାନଙ୍କ ମଧ୍ୟରେ ପ୍ରଥମ ତିନିଜଣ ଅଭିଯୁକ୍ତ ଥିଲେ କ୍ୟାପ୍ଟେନ୍ ପ୍ରେମ ସେହଗଲ୍, କ୍ୟାପ୍ଟେନ୍ ଶାହା ନୱାଜ୍ ଖାଁ ଏବଂ ଗୁରୁବକ୍ଷ ସିଂଧିଲୋଁ, ଯେଉଁମାନଙ୍କ ମଧ୍ୟରୁ ଜଣେ ଥିଲେ ହିନ୍ଦୁ, ଜଣେ ଥିଲେ ମୁସଲମାନ ଓ ଅନ୍ୟଜଣକ ଥିଲେ ଶିଖ୍ ଯେଉଁମାନେ ଭାରତୀୟ ଜାତୀୟ ଏକତାର ପ୍ରତୀକ ଥିଲେ । ସେମାନଙ୍କୁ ଭାରତୀୟମାନେ ଜାତୀୟ ବୀର ଭାବରେ ବିବେଚନା କଲେ । ଦଳମତ ନିର୍ବିଶେଷରେ ସମସ୍ତ ରାଜନୈତିକ ଦଳ ଆଜାଦ୍ ହିନ୍ଦ୍ ଫୌଜର ସମସ୍ତ ବନ୍ଦୀମାନଙ୍କର ମୁକ୍ତି ଦାବି କଲେ । ଭାଇସ୍‌ରାୟ ଲର୍ଡ ୱାଭେଲ ଭାରତୀୟମାନଙ୍କ ବ୍ରିଟିଶ୍ ବିରୋଧୀ ମନୋଭାବକୁ ଜାଣିପାରି ବନ୍ଦୀମାନଙ୍କର ଦଣ୍ଡକୁ ଲାଘବ କଲେ । ଭାରତୀୟ ନୌବାହିନୀରେ ବିଦ୍ରୋହ ଦେଖା ଦେଲା । ଯଦିଓ ଏହାକୁ ଦମନ କରାଗଲା କିନ୍ତୁ ବ୍ରିଟେନର ସଦ୍ୟ ନିର୍ବାଚିତ ପ୍ରଧାନମନ୍ତ୍ରୀ କ୍ଲିମେଣ୍ଟ ଅଟଲି ଭାରତକୁ ସ୍ୱାଧୀନତା ଦେବାଲାଗି ଯୋଜନା କଲେ । ଭାରତ ଛାଡ଼ ଆନ୍ଦୋଳନ ଓ ଆଜାଦ୍ ହିନ୍ଦ୍ ଫୌଜ ଉଭୟ ମିଶି ବ୍ରିଟିଶ୍ ସାମ୍ରାଜ୍ୟର ମୃତ୍ୟୁଘଣ୍ଟି ବଜାଇଲେ ।

ରିଡ଼ର, ଇତିହାସ ବିଭାଗ
ଆଗରପଡ଼ା ମହାବିଦ୍ୟାଳୟ, ଆଗରପଡ଼ା, ଭଦ୍ରକ

# ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ପର୍ବ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଓ ନବାଙ୍କ ନୀତି ତିନି ଦିନ ବ୍ୟାପୀ ପାଳନ କରାଯାଏ । ମାସାନ୍ତ ପୂର୍ବଦିନ ଶ୍ରୀମନ୍ଦିରରେ ଦୁଧ ମେଲାଣ ଉପଲକ୍ଷେ ସ୍ୱତନ୍ତ୍ର ନୀତି ଅନୁଷ୍ଠିତ ହୋଇଥାଏ । ଉକ୍ତଦିନ ମଧ୍ୟାହ୍ନ ଧୂପ ପରେ ଦକ୍ଷିଣଘରୁ ରାମକୃଷ୍ଣ ରତ୍ନସିଂହାସନକୁ ବିଜେକରି ଆଜ୍ଞାମାଳ ପ୍ରାପ୍ତ ହେବା ପରେ କଳ୍ପବଟ ନିକଟରେ ପ୍ରସ୍ତୁତ ହୋଇଥିବା ପାଲିଙ୍କିରେ ବଡ଼ଦାଣ୍ଡ ଦେଇ ଛୋଟରାୟପୁର (ଶ୍ରୀନଅର ସମ୍ମୁଖ)ଠାରେ ବିଜେ କରନ୍ତି । ସେଠାରେ ଗଉଡ଼ମାନେ ସଂଗ୍ରହ କରିଥିବା ଦୁଧ ଭାରମାନ ବାଘମୁହାଁ ବାନ୍ଧି କୋଠ ମହାଭୋଇଙ୍କୁ ଦିଅନ୍ତି ଓ ମହାଭୋଇ ଶ୍ରୀମନ୍ଦିରକୁ ଆଣନ୍ତି । ଏହାପରେ ପାଲିଙ୍କି ସହ ସେବକ ମହାଭୋଇ ଘଣ୍ଟାଛତା କାହାଳୀ ପଟୁଆରରେ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରନ୍ତି । ସେଠାରେ ମହାଭୋଇ ଗୋଦୋହନ କରି ପାଲିଙ୍କି ସହ ଦୁଧ ଭାରମାନ ଘେନି ଶ୍ରୀମନ୍ଦିର ନାଟମନ୍ଦିର ସାମନାକୁ ଆସନ୍ତି । ସେଠାରେ ଭିତରଛ ମହାପାତ୍ର ମଣୋହି କରାଇବା ପରେ ରାମକୃଷ୍ଣ ମହାଲକ୍ଷ୍ମୀ ମନ୍ଦିରରେ ଖଟଶେଯରେ ବିଜେ ହୋଇ ପ୍ରସାଦ ଲାଗି ଓ ବନ୍ଦାପନା ହୋଇ ଦୁଧ ମେଲାଣ ନୀତି ପରେ ଦକ୍ଷିଣ ଘରକୁ ବାହୁଡ଼ା ବିଜେ କରନ୍ତି ।

ମାସାନ୍ତ ଦିନ ସନ୍ଧ୍ୟା ଆରତୀ ପରେ ନବାଙ୍କ ପର୍ବରେ ଚାଉଳ ମେଲାଣ ନୀତି ନିମନ୍ତେ ସିଂହଦ୍ୱାର ଚକଡ଼ା ଉପରେ ପାହାଡ଼ା ପଡ଼ି ଧାନ ଘରଠାରୁ ବେରଭୋଇ ଓ ପ୍ରଧାନ ଚାଉଳ ବିଜେ କରାନ୍ତି । ଏଠାରେ ପ୍ରଧାନ, ଭୋଇ ବାଘମୁହାଁ ବାନ୍ଧି ତିନୋଟି ଥାଳିରେ ପାଞ୍ଚମାଣ ଲେଖାଏଁ ଚାଉଳ ମାପି ରଖନ୍ତି । ଏହାପରେ ତଳୁଛ, ପ୍ରଧାନୀ ଓ କୋଠଭୋଗ ଯୋଗାଣିଆ ବାଘମୁହାଁ ବାନ୍ଧି ଘଣ୍ଟଛତା କାହାଳୀ ସହ ପଟୁଆରରେ ଶ୍ରୀମନ୍ଦିରକୁ ଥରେ ବେଢ଼ା ପରିକ୍ରମା କରି ଇନ୍ଦ୍ରାଣୀ ମନ୍ଦିରର ସମ୍ମୁଖ ବେଢ଼ାରେ ଚାଉଳ ଥାଳିମାନ ରଖନ୍ତି । ମାସାନ୍ତ ଦିନ ମଧ୍ୟାହ୍ନ ଧୂପ ପରେ ଅଠରନଳା ନିକଟସ୍ଥ ଆଲାମଚଣ୍ଡୀଙ୍କ ମନ୍ଦିରରୁ ମକରତାଡ଼ ପଟୁଆରରେ ଶ୍ରୀମନ୍ଦିରକୁ ଆସିଥାଏ । ସନ୍ଧ୍ୟା ଧୂପ ପରେ ଏହି ଚାଉଳ ଥାଳି ଓ ତାଡ଼ମାନ ଭୋଗମଣ୍ଡପ ଘରେ ଅଧିବାସ କରି ରଖାଯାଏ । ମକର ସଂକ୍ରାନ୍ତି ଦିନ ଏହି ଚାଉଳ ମକରଚାଉଳ ଭୋଗରେ ବ୍ୟବହାର ବିଧି ଅଟେ ।

ସେହିପରି ମାସାନ୍ତ ଦିନ ଫୁଲମେଲାଣ ନୀତି ନିମନ୍ତେ ମାଳିମାନେ ବାଘମୁହାଁ ବାନ୍ଧି ମାଳଚୂଳ, ଜଳକବରମାନ ଧରି ଘଣ୍ଟଛତା କାହାଳୀ ସହ ତଳୁଛ ପ୍ରଧାନୀ ପଟୁଆରରେ ଶ୍ରୀମନ୍ଦିରକୁ ଗୋଟିଏ ଥର ବେଢ଼ା ବୁଲନ୍ତି । ସନ୍ଧ୍ୟା ଆଳତୀ ବେଶ ଲାଗି ପାଇଁ ପାଳିଆ ଖୁଣ୍ଟିଆଙ୍କୁ ପ୍ରଦାନ କରନ୍ତି । ଏହି ଦିନ ବଡ଼ ସିଂହାର ବେଶରେ ସୋଲ, ଜରି, କଇଁଥ ଅଠାରେ ପ୍ରସ୍ତୁତ ଶଙ୍ଖଚକ୍ର, ହଳମୂଷଳ, ମକରକୁଣ୍ଡଳ, ତଡ଼ଗୀ ଇତ୍ୟାଦି ଶ୍ରୀ ବିଗ୍ରହମାନେ ଲାଗି ହୁଅନ୍ତି । ଏହି ବେଶକୁ ନବାଙ୍କ ବେଶ କୁହାଯାଏ । ଭୋଗମଣ୍ଡପ ଗୃହ ପୂର୍ବରୁ ଧୂଆ ହୋଇ ଚାନ୍ଦୁଆ ବନ୍ଧା ହୋଇଥିବା ସ୍ଥାନରେ ପର୍ବଯାତ୍ରା ଯୋଗାଣିଆ ତିନୋଟି ବାଉଁଶିଆରେ ଚାଉଳ ପୂରାଇ ଭଦ୍ରାସନରେ ମୁରୁଜ କାଟି ରଖନ୍ତି । ପରେ ଚେମେଡି, ପତନି, ଫୁଲ, ଚନ୍ଦନ ଦେଇ ଅଧିବାସ କରିବା ପରେ ତଡ଼ାଉ ମୁଦ ଦିଅନ୍ତି । ଏହାପରେ ବଡ଼ସିଂହାର ବେଶ ହୋଇସାରି ବଡ଼ସିଂହାର ଭୋଗ ଛାମୁକୁ ଆସିଥାଏ । ଭୋଗ ଆସିଲା ପରେ ଦକ୍ଷିଣଘରୁ ମଦନମୋହନ ରତ୍ନସିଂହାସନକୁ ବିଜେ କରନ୍ତି ଓ ତିନିବାଡ଼ରେ ତିନିଜଣ ପାଳିଆ

ପୂଜାପଣ୍ଡା ଭୋଗ ଲଗାନ୍ତି । ଏହି ଭୋଗ ସମୟରେ ଟେରା ପଡ଼ିବା ପୂର୍ବରୁ ମହାଜନ, ପାଳିଆ ଖୁଣ୍ଟିଆ, ଗରାବଡୁ, ଅଖଣ୍ଡ ଭିତରେ ରହନ୍ତି । ଭୋଗ ସରିଲା ପରେ ଆଜ୍ଞାମାଳ ପାଇ ମଦନମୋହନ ମହାଜନଙ୍କ ହାତରେ ରତ୍ନସିଂହାସନ ଚାରିପଟେ ସାଢ଼େ ଚାରିବେଢ଼ା ବୁଲନ୍ତି ଏବଂ ପ୍ରତି ବେଢ଼ାର ଆରମ୍ଭ ବେଳକୁ ଟେରା ନିକଟରେ ପ୍ରଧାନୀ ରହି କାହାଳିଆକୁ ଡ଼ାକ ଦିଅନ୍ତି । ବେଢ଼ା ସରିଲାପରେ ଟେରା ଫିଟା ଯାଏ । ଏହାପରେ ଆଜ୍ଞାମାଳ ପାଇ ମଦନମୋହନ ପାଲିଙ୍କିରେ ବିଜେ ହୋଇ ଶ୍ରୀମନ୍ଦିର ଚାରିପଟେ ଘଣ୍ଟଛତା କାହାଳୀ ପଟୁଆରରେ ସାଢ଼େ ଚାରିବେଢ଼ା କରି ଜୟବିଜୟ ଦ୍ୱାର ଲଣ୍ଡାବର୍ଡ଼କୁ ବିଜେ କରନ୍ତି । ସେଠାରେ ପ୍ରସାଦ ଲାଗି ଓ ବନ୍ଦାପନା ହୋଇ ଦକ୍ଷିଣଘରକୁ ବାହୁଡ଼ା ବିଜେ କରନ୍ତି ।

ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଉପଲକ୍ଷେ ରାତ୍ରରୁ ଦ୍ୱାର ଫିଟା ହୋଇ ଭିତରଶୋଧ, ମଙ୍ଗଳଆରତୀ ଓ ତଡ଼ପ ଲାଗି, ଭୋରୁ ଅବକାଶ ନୀତି ଶେଷ ହେବା ପରେ ଫୁଟା ପହରଣା ଲାଗିହୋଇ ତ୍ରିମୁଣ୍ଡିରେ ମକରଚୂଳ ଲାଗି ସହିତ ମାଳଫୁଲ ଓ କର୍ପୂର ଲାଗି ପରେ ଶ୍ରୀବିଗ୍ରହମାନଙ୍କର ବେଶ ଶେଷ ହୁଏ । ଏହାପରେ ରୋଷହୋମ, ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ହୋଇଥାଏ । ପାଣିପଡ଼ି ସକାଳ ଗୋପାଳବଲ୍ଲଭ ନୀତି ଓ ସକାଳ ଧୂପ କୋଠଭୋଗ ହୁଏ । ପରେ ତିନବାଡ଼ରେ ମୈଲମ ହୋଇ ଯାତ୍ରାଙ୍ଗୀ ମହାସ୍ନାନ, ଘଣ୍ଟଛତା, ଘଟୁଆରୀ ଘରୁ ଚନ୍ଦନ ବିଜେ ହୋଇ ସର୍ବାଙ୍ଗ ଚନ୍ଦନଲାଗି, ନୂଆ ଲୁଗା ଲାଗି, ମାଳଚୂଳ ଲାଗି ହେବା ପରେ ଛଅମୂର୍ତ୍ତି ଅଳଙ୍କାର ଲାଗି ହୋଇ ମକର ବେଶ ଶେଷ ହୁଏ । ଏହାପରେ ଘଣ୍ଟଛତା, ପାଣିପଡ଼ି ମଧ୍ୟାହ୍ନ ଧୂପ, ଚତୁର୍ଦ୍ଧାମୂର୍ତ୍ତିଙ୍କର ଅପରାହ୍ନ ଘଣ୍ଟଛତା, ମକରବେଢ଼ା ଓ ଭୋଗ ହୋଇଥାଏ । ପରେ ଦକ୍ଷିଣଘର ଭୋଗ, ଭୋଗମଣ୍ଡପ ଓ ସାହାଣମେଲା ଦର୍ଶନ ହୁଏ । ରୋଷରୁ ଘଣ୍ଟଛତା କାହାଳୀ ସହ ତଳିଛ ପ୍ରଧାନୀ ହାତ ପୈଠ ପୂର୍ବକ ଭୋଗ ପଟୁଆରରେ ଛାମୁକୁ ଆସିଥାଏ । ମୁଦିରସ୍ତ ପ୍ରସାଦଲାଗି କରିବା ପରେ ତିନିଜଣ ପାଳିଆ ପୂଜା ପଣ୍ଡା ଷୋଡ଼ଶୋପଚାରରେ ମଧ୍ୟାହ୍ନଧୂପ ପୂଜା କରନ୍ତି । ମଧ୍ୟାହ୍ନ ଧୂପ ଟେରା ପଡ଼ିବା ପରେ ମହାପ୍ରଭୁଙ୍କ ବାଡ଼ର ପାଳିଆ ପୂଜାପଣ୍ଡା, ପତ୍ରୀବଡୁ, ସୁଆରବଡୁ ଓ ଗରାବଡୁଙ୍କ ସମେତ ରୋଷପାଇକ ଏକ ଓଳି ଅନ୍ନ ଧରି ବାହାରକୁ ଆସି ଭିତରବେଢ଼ାରେ ଆଠଗୋଟି ସ୍ଥାନରେ ଅଷ୍ଟଦିଗପାଳମାନଙ୍କୁ ଦିଗବଳି ଦେଇ ବଳିନୀତି ଅନୁଷ୍ଠିତ ହୋଇ ଭିତରକୁ ଯାଇ ମଣୋହି ହୋଇ ଭୋଗ ଶେଷହୁଏ । ଭିତର ପୋଖରିଆ ଅଞ୍ଚଳ ଧୋପଖାଳ ହୋଇ ଓ ଟେରାବନ୍ଧା ହୋଇ ଭୋଗମଣ୍ଡପ ଗୃହକୁ ମକରଭୋଗ ନିମନ୍ତେ ପ୍ରତିହାରୀ ବେତ ଧରି ଡାକନ୍ତି । ପୂର୍ବଦିନରୁ ଶୁଦ୍ଧସୁଆର ଦ୍ୱାରା ନଡ଼ିଆ, ଘିଅ, ଶର୍କରା, ମିଠା, ଲହୁଣୀ, ମସଲା ଓ ଦୁଧ ସରରେ ପ୍ରସ୍ତୁତ ହୋଇ ଭୋଗମଣ୍ଡପ ଘରେ ଅଧିବାସ ହୋଇ ରହିଥିବା ମକରଚାଉଳକୁ ପନ୍ତିବଡୁ ସେବକମାନେ ବାଘମୁହାଁ ବାନ୍ଧି ଘଣ୍ଟଛତା କାହାଳୀ ସହ ତଳୁଛ ପଟୁଆରରେ ମୁଖ୍ୟ ମନ୍ଦିରକୁ ତିନିଥର 'ମକର ବେଢ଼ା' ପରିକ୍ରମା କରି ଛାମୁରେ ତିନୋଟି ରୂପା ଥାଳିରେ ପନ୍ତିରେ ବାଢ଼ନ୍ତି । ରୋଷରୁ 'ମକର ଚଉରାଶୀ' ଭୋଗ ଘଣ୍ଟଛତା କାହାଳୀ ସହ ତଳୁଛ ପଟୁଆରରେ ଛାମୁକୁ ଆସିଥାଏ । ମହାଭୋଇ ସେବକମାନେ ବାଘମୁହାଁ ବାନ୍ଧି ଦୁଧ ଘରଠାରୁ ଦହି ଉପରୋକ୍ତ ପ୍ରକାରେ ପଟୁଆରରେ ବିଜେ କରାଇ ମୁଖ୍ୟ ମନ୍ଦିରକୁ ଥରେ ପରିକ୍ରମା କରି ମହାସୁଆରଙ୍କୁ ଦେବାରେ ତାହା ଛାମୁରେ ପନ୍ତିରେ ବଢ଼ାଯାଏ । ପରେ ପରେ ଗୁଡ଼ିଆ ସେବକମାନେ ପୂର୍ବୋକ୍ତ ପ୍ରକାରେ ସାକର, ଫେଣା ଏବଂ ହଡ଼ପନାୟକ ସେବକମାନେ ନଳିପାନ ଓ ଛାଚିପାନ ଚାଙ୍ଗୁଡି ବେଢ଼ା କରି ଭୋଗରେ ବାଢ଼ିବା ପାଇଁ ମହାସୁଆରଙ୍କୁ ଦିଅନ୍ତି । ମୁଦିରସ୍ତ ସେବକ ପ୍ରସାଦ ଲାଗି କରିବା ପରେ ତିନିଜଣ ପାଳିଆ ପୂଜାପଣ୍ଡା ଉପରୋକ୍ତ ସମସ୍ତ ଭୋଗ ପଞ୍ଚୋପଚାରରେ ମଣୋହି କରାଇଥାନ୍ତି । ଟେରା ଫିଟିଲା ପରେ ପୂଜାପଣ୍ଡା, ପତି ମହାପାତ୍ର ଏବଂ ମୁଦିରସ୍ତ ସେବକ ତିନିବାଡ଼ରେ ବନ୍ଦାପନା କରନ୍ତି । ଏହାପରେ ସନ୍ଧ୍ୟା ଆଳତି, ସନ୍ଧ୍ୟା ଧୂପ, ରାତ୍ର ଚନ୍ଦନ ଲାଗି, ବଡ଼ସିଂହାର ବେଶ, ବଡ଼ସିଂହାର ଭୋଗ ହୋଇ ରାତ୍ର ପହୁଡ ହୁଏ । ମକର ସଂକ୍ରାନ୍ତି ଦିନ ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ରାଜସୂୟ ଯଜ୍ଞର ଫଳ ମିଳିଥାଏ ବୋଲି 'ନୀଳାଦ୍ରି ମହୋଦୟ'ରେ ଉଲ୍ଲେଖ ରହିଛି ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଗ୍ରହରାଜ ଭାବରେ ଗ୍ରହଣ କରାଯାଇଥାଏ । ତେଣୁ ମହାପ୍ରଭୁଙ୍କର ଶ୍ରେଷ୍ଠ ଦ୍ୱାଦଶଯାତ୍ରା ମଧ୍ୟରେ ମକର ସଂକ୍ରାନ୍ତି ଦିନ ଅନୁଷ୍ଠିତ ହେଉଥିବା ଉତ୍ତରାୟଣ ଯାତ୍ରା ଅନ୍ୟତମ । ଏ ସଂପର୍କରେ ସ୍କନ୍ଦ ପୁରାଣ ବିଷ୍ଣୁଖଣ୍ଡରେ

ଉଲ୍ଲେଖ ରହିଛି ଯେ ପୂର୍ବ କଳ୍ପରେ ମହର୍ଷି କଶ୍ୟପ ଓ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରୀତି ନିମନ୍ତେ ଏହି ମହୋତ୍ସବ ପାଳନ କରିଥିଲେ । ଏହି ମହାପୁଣ୍ୟମୟ ମକର ସଂକ୍ରାନ୍ତି ଦିନ ତୀର୍ଥରାଜ ମହୋଦଧିଙ୍କ ଜଳରେ ସ୍ନାନ କରି କଳ୍ପବୃକ୍ଷ ପ୍ରଦକ୍ଷିଣ ପୂର୍ବକ ଶ୍ରୀଜଗନ୍ନାଥ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କଲେ ସ୍ନାନ, ଦାନ, ତପ, ହୋମ, ସ୍ୱାଧ୍ୟାୟ ସମସ୍ତ ଫଳ ଏକତ୍ର ପ୍ରାପ୍ତି ହୋଇଥାଏ ବୋଲି ସ୍କନ୍ଦ ପୁରାଣରେ ସ୍ୱୟଂ ଜୈମିନୀ ଋଷି ମତବ୍ୟକ୍ତ କରିଛନ୍ତି । ପୁନଶ୍ଚ ଲୋକବିଶ୍ୱାସ ରହିଛି ଯେ ମହାଲକ୍ଷ୍ମୀ ଧନୁ ସଂକ୍ରାନ୍ତିଠାରୁ ନିଜ ପିତୃଗୃହକୁ ଯାତ୍ରା କରି ମକର ସଂକ୍ରାନ୍ତି ଦିନ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ସେ ସାଙ୍ଗରେ ଆଣିଥିବା ପାନଗୁଆ, ମକର ଚାଉଳ, ଧନୁମୁଆଁ ଆଦି ଶ୍ରୀଜଗନ୍ନାଥଙ୍କୁ ଭୋଗ ଲାଗି ହୋଇଥାଏ ।

ଏ.ଏଲ୍‌-୫୩, ବୀର ସୁରେନ୍ଦ୍ର ସାଏ ନଗର
ପୋ– ସହିଦ ନଗର
ଭୁବନେଶ୍ୱର-୭୫୧୦୦୭

# ମହାନଦୀର ଗାଥା

**ବୀଣାପାଣି ଚୌଧୁରୀ**

ମହାନଦୀ ତୋତେ
ପଚାରୁଛି ପ୍ରଶ୍ନ
କରି ଦେବୁ ନାହିଁ
ମୋ କଥା ନ୍ୟୂନ ।।
ଏ ଜାତି ଦେଖିଛି
ତୋତେ ନେଇ ସ୍ୱପ୍ନ
ଆଜି କାହିଁ ହେଲା
ଏତେ ବ୍ୟତିକ୍ରମ ।।
ତୋର ପରିଚୟ
ସିନା ମୋ ସମ୍ବଳ
ମୋ କଲମ ହୁଏ
ତୋ ପାଇଁ ବ୍ୟାକୁଳ ।।
ସୁକାନ୍ତି ମୁନୀଙ୍କ
ତପସ୍ୟା ବଳରେ
ପ୍ରବାହିତ ହେଲ
ଏଇ ଉତ୍କଳରେ ।।
ଅମର କଣ୍ଟକେ
ଲୁଚିଥିଲା କାୟା
ତମେ ମହାନଦୀ
ଲଗାଇଲ ମାୟା ।
ଛଇ ଛଟକରେ
ଛବିଳ ଦେଶରେ
ଗିରି କାନନରେ
ବହିତ ଆସିଲ
ଏବେ କାହିଁ ତମେ
ଅକାତ ହୋଇଲ ।।
ତମ ବିନୁ କ'ଣ
ଅଛି ପରିଚୟ
ଓଡ଼ିଶାକୁ ତମେ
ଦେଇଛ ଅଭୟ ।।
କହଲ କହ ତୁ
ଅମର ନନ୍ଦିନୀ
ସହ ସହ ଧାର
ଜଳର ଜୁଆର
କାହିଁ କେତେକାଳୁ
କାହିଁ ବାଲି ଦ୍ୱୀପ
କାହିଁ ବୋର୍ଣ୍ଣିଓ ଦ୍ୱୀପ
କାହିଁ ମାଲାଗାସୀ
ଲବଙ୍ଗର ଦ୍ୱୀପ
ସିଂହଳ ମାଳୟ
ଆଜି ବି ଗାଉଛି
ତୁମରି ଜୟ ।।
ଆମ ସୌଦାଗର
ବୋହିଲେ ବାଣିଜ୍ୟ
ବୋଇତ ଅପାର
ଇତିହାସ ସାକ୍ଷୀ
ବାଲିଯାତ୍ରା ଦେଖି
ଝୁରୁଛନ୍ତି ଲକ୍ଷ ଲକ୍ଷ
ଆମ ଦେଶବାସୀ ।।

ଉ.ମା.ଶି.ପ., ଭୁବନେଶ୍ୱର

# ମକର ସଂକ୍ରାନ୍ତି

ମହାମେଧାନନ୍ଦନାଥ ସରସ୍ୱତୀ



ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶିରେ ପ୍ରବେଶ ଦିନକୁ ସଂକ୍ରାନ୍ତି କୁହାଯାଏ । ଗୋଟିଏ ସୌରବର୍ଷରେ ସୂର୍ଯ୍ୟ ଯେଉଁ ଯେଉଁ ଦିନ କ୍ରମଶଃ ମେଷାଦି ବାର ଗୋଟି ରାଶିରେ ପ୍ରବେଶ କରନ୍ତି, ସେହି ସେହି ଦିନ ଯଥାକ୍ରମେ ଉକ୍ତ ରାଶି ନାମରେ ସଂକ୍ରାନ୍ତି ହୋଇଥାଏ । ଏଥିରୁ ମେଷ ଓ ତୁଳା ସଂକ୍ରାନ୍ତିକୁ 'ବିଷୁବତ୍', ବୃଷ, ସିଂହ, ବିଛା ଓ କୁମ୍ଭ ସଂକ୍ରାନ୍ତିକୁ 'ବିଷ୍ଣୁପଦୀ', ମିଥୁନ, କନ୍ୟା, ଧନୁ ଓ ମୀନ ସଂକ୍ରାନ୍ତିକୁ 'ଷଡ଼ଶୀତି' କୁହାଗଲା ବେଳେ କର୍କଟ ସଂକ୍ରାନ୍ତିକୁ ସୂର୍ଯ୍ୟଙ୍କର 'ଦକ୍ଷିଣାୟନ' ଏବଂ ମକର ସଂକ୍ରାନ୍ତିକୁ 'ଉତ୍ତରାୟଣ' ସଂକ୍ରାନ୍ତି ବୋଲି କୁହାଯାଇଥାଏ । ଏହି ଦିନଠାରୁ ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ଆରମ୍ଭ ହୁଏ । ବିଜ୍ଞାନମତରେ ସୂର୍ଯ୍ୟ ଡିସେମ୍ବର ମାସ ୨୩ ତାରିଖ ଦିନ ପୃଥିବୀର ଦକ୍ଷିଣଗୋଲାର୍ଦ୍ଧର ମକରକ୍ରାନ୍ତି ଉପରେ ସିଧାସଳଖ ରହି ତା'ପରେ ଉତ୍ତରାୟଣ ହୋଇଥାଆନ୍ତି । କିନ୍ତୁ ହିନ୍ଦୁ ଜ୍ୟୋତିର୍ବିଜ୍ଞାନ ମତରେ ସୂର୍ଯ୍ୟ ଜାନୁଆରୀ (ମାଘ) ମାସର ପ୍ରାୟ ୧୪/୧୫ ତାରିଖରେ ନକ୍ଷତ୍ର–ନିଷ୍ଠ ନିରୟଣ ରାଶିଚକ୍ର ଅନୁସାରେ ନିୟନ୍ତ୍ରିତ ହେଉଥିବାରୁ ତଦନୁସାରେ ଜାନୁଆରୀ ମାସର ଉକ୍ତ ଦିନ ଆମ ଭାରତର ସର୍ବତ୍ର 'ମକର ସଂକ୍ରାନ୍ତି' ପାଳିତ ହେଉଛି । ଏହି ଦିନ ସୂର୍ଯ୍ୟ ନିରୟଣ ଧନୁରାଶିର ଅନ୍ତିମ ୩୦ତମ ଅଂଶ ଅତିକ୍ରମ କରି ନିରୟଣ ମକର ରାଶିରେ ସଂକ୍ରମଣ ବା ସଂଚାର କରନ୍ତି ବୋଲି ଏହାକୁ 'ମକର ସଂକ୍ରାନ୍ତି' କୁହାଯାଏ । ସୂର୍ଯ୍ୟ ଏହି ମକର ରାଶିରେ ପ୍ରାୟ ଏକ ମାସ କାଳ ରହନ୍ତି ବୋଲି ଏହି ମାସଟିକୁ ମଧ୍ୟ 'ମକରମାସ' କୁହାଯାଏ ।

'ମକର ଦିନ ହୁଏ ବକର' ଉକ୍ତିରୁ ସୂର୍ଯ୍ୟଙ୍କ ଦକ୍ଷିଣାୟନ ଗତିକ୍ରମରେ ହେଉଥିବା ଦିନ, ତାଙ୍କର ଉତ୍ତରାୟଣ ଫଳରେ 'ବକର' ଅର୍ଥାତ୍ ବକ୍ର ବା ପରିବର୍ତ୍ତନ ହୋଇ ମକର ସଂକ୍ରାନ୍ତିଠାରୁ ଶୀତଦିନର ଛୋଟ ଦିନ କ୍ରମଶଃ ବଢ଼ି ବଢ଼ି ସୂର୍ଯ୍ୟଙ୍କ ବିଷୁବରେଖା ଉପରେ ଅବସ୍ଥାନ ବେଳେ ଦିନରାତି ସମାନ

ହୁଏ ଏବଂ ପରେ କର୍କଟକ୍ରାନ୍ତିରେ କର୍କଟ ସଂକ୍ରାନ୍ତି ବେଳକୁ ଦିନ ବଡ଼ ଓ ରାତି ସାନ ହୁଏ । ମକର ମାସରେ ସୂର୍ଯ୍ୟ କିରଣ ପ୍ରଖର ହୁଏ ବୋଲି 'ମକରେ ପ୍ରଖରୋ ରବିଃ' କୁହାଯାଏ । ସକଳ ଜୀବଜଗତର ପ୍ରାଣ ଶକ୍ତି ସୂର୍ଯ୍ୟ ଏହିଠାରୁ ଉତ୍ତରାୟଣ ଯାତ୍ରା କରନ୍ତି ଓ ଏବଂ ଏହି ଉତ୍ତରାୟଣ ଦିନ ସ୍ୱର୍ଗଦ୍ୱାର ଖୋଲାଥାଏ ବୋଲି ଲୋକ ବିଶ୍ୱାସ ଯୋଗୁଁ ଏହି ମକର ସଂକ୍ରାନ୍ତିରେ ସୂର୍ଯ୍ୟ ଦେବତାଙ୍କୁ ଭାରତୀୟ ଜନତା ମକର ଚାଉଳ ଓ ତିଳଖଜା ଦେଇ ପୂଜା କରେ, ଅର୍ଘ୍ୟ ବାଢ଼େ, ଭକ୍ତି ନିବେଦନ କରେ । ନୂଆଁ ଅରୁଆ ଚାଉଳ ସହ ନୂଆଁ ଗୁଡ଼, ଛେନା, ଦୁଧ, ଦହି, ଆଖୁ, ନଡ଼ିଆ, ରାଶି, ଅଦା ଓ କର୍ପୂର ପ୍ରଭୃତି ମିଶାଇ ଏହି ସୁସ୍ୱାଦୁ ମକର ଚାଉଳ ତିଆରି କରାଯାଇଥାଏ । ଶାରଦ ଧାନ ପୌଷ ମାସରେ ଅମଳ ହେବା ପରେ ନୂଆ ଚାଉଳରେ ପ୍ରସ୍ତୁତ ଏହି ମକର ଚାଉଳ ନବୀନ ଉଦ୍ଦୀପନାର ପ୍ରତୀକ । ମକର ସଂକ୍ରାନ୍ତିଠାରୁ ସୂର୍ଯ୍ୟ କିରଣ ଆମ ପକ୍ଷରେ ଦିନକୁ ଦିନ ଅଧିକରୁ ଅଧିକତର ସୁଲଭ ହେବ ଏବଂ ଏହି ସୂର୍ଯ୍ୟକିରଣ ପାଇ ଆମର ପାକକ୍ରିୟା ଉତ୍ତମ ରୂପେ ସଂଚାଳିତ ହେବ ବୋଲି ବୋଧହୁଏ ଏହି ମକର ଚାଉଳ ସେବନର ବିଧି ରହିଛି । ଏହି ଦିନ ଲୋକମାନେ ପରସ୍ପରକୁ ଧର୍ମଦେବତା ସୂର୍ଯ୍ୟଙ୍କ ପ୍ରସାଦ ମକର ଚାଉ ଖୁଆଇ ମକର ବସନ୍ତି ଏବଂ ଚିରଦିନ ଲାଗି ବନ୍ଧୁତା ସ୍ଥାପନ କରନ୍ତି ।

ମକର ସଂକ୍ରାନ୍ତି ବେଳକୁ ଶୀତକାଳୀନ ଖରିଫ୍ ଅମଳ ହୋଇ ଖଳାକୁ ଆସିଥାଏ । ତେଣୁ ଚାଷୀମାନେ ଆନନ୍ଦରେ ଏହି ମକର ସଂକ୍ରନ୍ତିଟିକୁ ପାଳନ କରିଥାଆନ୍ତି । ନୂଆ ଲୁଗା ପିନ୍ଧି ସୂର୍ଯ୍ୟ ଦେବତାଙ୍କୁ ଅର୍ଘ୍ୟ ବାଢ଼ିବା ପରେ ବିଭିନ୍ନ ଦେବ ମନ୍ଦିରକୁ ଯାଇ ନିଜର ଓ ନିଜ ପରିବାରର ମଙ୍ଗଳକାମନା କରିଥାଆନ୍ତି । ନୂଆ ଶସ୍ୟରେ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି କୃଷକମାନେ ଆଜିର ଏହି ଦିନଟିରେ ବନ୍ଧୁ ମିଳନ କରିଥାଆନ୍ତି । ଏଣୁ ମକର ସଂକ୍ରାନ୍ତିଟିକୁ ଏକ କୃଷିପର୍ବ ବୋଲି ଗ୍ରହଣ କରାଯାଇପାରେ ।

ଦକ୍ଷିଣ ଭାରତରେ ଏହି ମକର ସଂକ୍ରାନ୍ତିଟକୁ ନବବର୍ଷର ଆରମ୍ଭ ଦିନ ବୋଲି ଗ୍ରହଣ କରିଥାଆନ୍ତି । ନୂଆ ବୋହୂମାନେ ବାପ ଘରକୁ ଯାଇ ବାପା, ମା', ଭାଇ ଓ ଭଉଣୀଙ୍କ ସହିତ ମକରୋତ୍ସବ କରି ସେମାନଙ୍କର ଝିଅ ଜୀବନର କୋମଳ ସ୍ମୃତିଟିକୁ ବଞ୍ଚାଇ ରଖିବା ସକାଶେ ଏହି ଦିନଟିକୁ ଅନାଇ ରହିଥାଆନ୍ତି । ଭୋଗୀ, ମକର ଓ ପାଣ୍ଡୁ – ଏହି କ୍ରମରେ ସଂକ୍ରାନ୍ତିର ଉଭୟ ଦିନକୁ ମିଶାଇ ଦକ୍ଷିଣ-ଭାରତୀୟମାନେ ଏହି ଉତ୍ସବକୁ ତିନି ଧରି ପାଳନ କରିଥାଆନ୍ତି । ପ୍ରଥମ ଦିନ ଇନ୍ଦ୍ର, ଦ୍ୱିତୀୟ ଦିନ ସୂର୍ଯ୍ୟ ଓ ତୃତୀୟ ଦିନ ଗୋରୁଗାଈଙ୍କୁ ପୂଜା କରାଯାଇଥାଏ ।

ଓଡ଼ିଶାର ଭୌଗୋଳିକ ଅବସ୍ଥାନ ଉତ୍ତର ଓ ଦକ୍ଷିଣ ଭାରତର ମଧ୍ୟ ସ୍ଥଳରେ ହୋଇଥିବାରୁ ଏଠାରେ ମକର ସଂକ୍ରାନ୍ତିଟିକୁ ସମାନ ପ୍ରାଧାନ୍ୟ ଦେଇ ପାଳନ କରିଥାଆନ୍ତି । ଓଡ଼ିଶାର ଧର୍ମଶାସ୍ତ୍ରମାନଙ୍କରେ ମଧ୍ୟ ଏହାର ପାଳନ ଉପରେ ଗୁରୁତ୍ୱ ଦିଆଯାଇଛି । ଅନ୍ୟାନ୍ୟ ସଂକ୍ରାନ୍ତିର ପାଳନରେ ଯେଉଁ ପୁଣ୍ୟ ହୁଏ, ତାହା ଅପେକ୍ଷା ଏଥିରୁ କୋଟିଏ ପୁଣ୍ୟ ହୁଏ ବୋଲି କୁହାଯାଇଛି ।

ଓଡ଼ିଶାର ଆଦିବାସୀ ଅଞ୍ଚଳରେ ମକର ସଂକ୍ରାନ୍ତିଟି ଖୁବ୍ ଜାକଜମକରେ ପାଳିତ ହୁଏ । ବିଶେଷ ଭାବରେ ମୟୂରଭଞ୍ଜ ଜିଲ୍ଲାର ସାନ୍ତାଳ ସମ୍ପ୍ରଦାୟର ଆଦିବାସୀମାନେ ଏହି ପର୍ବଟିକୁ ଖୁବ୍ ଆନନ୍ଦ ଉତ୍ସାହର ସହିତ ପାଳନ କରିଥାଆନ୍ତି । ଏହି ପର୍ବରେ ସେମାନେ ତିନ୍ଦିନିଦିନ ପାଇଁ କୌଣସି କାମଧନ୍ଦା ନକରି ତାଙ୍କର ଦେବତାଙ୍କ ନିକଟରେ ପୂଜା ବାଢ଼ି ସ୍ତ୍ରୀପୁରୁଷ ସହ ମିଶି ଗୀତ ଗାଇ ମଉତ୍ସବ କରନ୍ତି । ଗୋଟିଏ କଦଳୀଗଛକୁ ପୂଜା କରି ସେମାନେ ସେଇ ଗଛକୁ ଲକ୍ଷ୍ୟ କରି ତୀର ମାରନ୍ତି । ଯାହାର ତୀର ଗଛର ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳକୁ ବିଦ୍ଧ କରେ ସେହି ଲୋକଟିକୁ ସେମାନେ ନୂଆଁ ଲୁଗା ପିନ୍ଧାଇ, ପେଟପୂରା ଖୁଆଇ, ମୁଣ୍ଡରେ ବସାଇ, ବାଜା ବଜାଇ, ସାହି ସାହି ବୁଲାଇ ସମ୍ମାନିତ କରନ୍ତି ।

ଉତ୍ତର ଭାରତରେ ମଧ୍ୟ ଆଜି ଧନୀ ଲୋକମାନେ ଅନ୍ନ ଓ ବସ୍ତ୍ର ସହ ରାଶିରେ ତିଆରି ହୋଇଥିବା କୋରା ଓ ମିଠେଇ ବାଣ୍ଟନ୍ତି । ମହାରାଷ୍ଟ୍ରରେ ରାଶି ତିଆରି ହାଲୁଆ ବଣ୍ଟାଯାଏ । ଗୟାରେ ଚୋପାଛଡ଼ା ରାଶିରେ ତିଆରି ସ୍ୱାଦିଷ୍ଟ ମିଠାଇ ପ୍ରସିଦ୍ଧ ଅଟେ । ସମଗ୍ର ଭାରତବର୍ଷରେ ଏହି ଉତ୍ସବଟି ମହାସମାରୋହରେ ପାଳିତ ହୋଇଥାଏ । ବିଭିନ୍ନ ତୀର୍ଥ ସ୍ଥାନରେ ବିଶେଷତଃ ଗଙ୍ଗାସାଗର-ସଙ୍ଗମରେ ବୁଡ଼ ପକାଇ ସକଳ

ପାପକୁ ଦୂରକରି ନବ ଜୀବନଯାପନର ପ୍ରେରଣା ଏହି ମକର ସଂକ୍ରାନ୍ତିରେ ସୂର୍ଯ୍ୟଙ୍କ ଉତ୍ତରାୟଣକୁ ଲୋକେ ଲାଭ କରି ଥାଆନ୍ତି ।

ବ୍ରହ୍ମାଣ୍ଡ ପୁରାଣରେ ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ କୃପୀ ସନ୍ତାନବତୀ ହେବା ପାଇଁ ଦୁର୍ବାସାଙ୍କୁ ପ୍ରସନ୍ନ କରି ଏହି ସମୟରେ 'ଦଧିମନ୍ଥନବ୍ରତ' ପାଳନ କରିଥିଲେ । ଏହି ବ୍ରତ ପାଳନ କରିବାକୁ ପ୍ରଥମେ ଭୂମିକୁ ଲିପି ପୋଛି ପରିଷ୍କାର କରି ତା' ଉପରେ ଗୋଟିଏ ସ୍ୱସ୍ତିକ ଚିହ୍ନ ଆଙ୍କି ସେହି ଚିହ୍ନ ଉପରେ କିଛି ଗହମ ବା ଅକ୍ଷତ ରଖି ତା' ଉପରେ ଏକ ପୂର୍ଣ୍ଣ ଦଧିଭାଣ୍ଡ ରଖାଇବାକୁ ହେବ । ମଧ୍ୟାହ୍ନ ପର୍ଯ୍ୟନ୍ତ ବ୍ରତଧାରୀ ପବିତ୍ର ମନରେ କୃଷ୍ଣଲୀଳା ପାଠ କଲା ପରେ ସେହି ଦଧିକୁ ମନ୍ଥନ କରିବେ ଏବଂ ସୁବର୍ଣ୍ଣ ନିର୍ମିତ କୃଷ୍ଣ ଓ ଯଶୋଦାଙ୍କ ପ୍ରତିମା ପୂଜା କରିବେ । ଦଧିଭାଣ୍ଡର ଚାରିପାଖରେ ସିନ୍ଦୂର ଓ କୁଙ୍କୁମ ଲଗାଇ ତାକୁ ଗୋଟିଏ ରେଶମ ବସ୍ତ୍ର ପିନ୍ଧାଇ ତା' ଦେହରେ ଗୋଟିଏ ସୁନ୍ଦର ଫୁଲହାର ପିନ୍ଧାଇ ପ୍ରଣାମ କରିବେ । ଦଧିଭାଣ୍ଡରେ ଦେବୀଙ୍କୁ ଓ ଦଧିମନ୍ଥନ ଦଣ୍ଡରେ ସୂର୍ଯ୍ୟଙ୍କୁ ଆବାହନ କରି ଆଠଦିଗରେ ଆଠଟି ଦୀପ ଜାଳି ଯଶୋଦାଙ୍କ କୋଳରେ ସ୍ତନ୍ୟପାନ କରୁଥିବା ବାଳକ କୃଷ୍ଣଙ୍କୁ ଧ୍ୟାନ କରି ପ୍ରାର୍ଥନା କରିବାକୁ ହେବ । ମକର ସଂକ୍ରାନ୍ତିରେ ଏହି ଦଧି ମନ୍ଥନ ବ୍ରତ କଲେ ନିଶ୍ଚିତ ଭାବରେ ସନ୍ତାନ ହୁଏ ବୋଲି ଲୋକ ବିଶ୍ୱାସ ରହିଛି । ଦୁର୍ବାସାଙ୍କ ଉପଦେଶରେ ଏହି ବ୍ରତ କରି ଦ୍ରୋଣପତ୍ନୀ କୃପୀ ପୁତ୍ର-ସନ୍ତାନ ଲାଭ କରିଥିଲେ ।

ସୂର୍ଯ୍ୟ ଦକ୍ଷିଣ-ଗୋଲାର୍ଦ୍ଧରେ ମକର କ୍ରାନ୍ତିଠାରେ ଥିବାରୁ ଉତ୍ତରଗୋଲାର୍ଦ୍ଧରେ ଅବସ୍ଥିତ ଆମର ଭାରତବର୍ଷରେ ଶୀତଋତୁ । ତେଣୁ ଲୋକେ ଶୀତ ଭୟରେ କମ୍ବଳଘୋଡ଼ି ହୋଇ ଦୀର୍ଘରାତି କଟାଇ ସକଳ ପ୍ରାଣ ଶକ୍ତିର ଉତ୍ସ ସୂର୍ଯ୍ୟ ଦେବତାଙ୍କ କିରଣ ପାଇବା ଲାଗି ଆକୁଳ ହୋଇଥାଆନ୍ତି । ଦେବତାମାନଙ୍କୁ ମଧ୍ୟ ଶୀତ ହେଉଥିବ ଏବଂ ସେମାନଙ୍କ ଶୀତ ଗଲେ ଆମର ମଧ୍ୟ ଶୀତ ଯିବ ବୋଲି ମର ସଂକ୍ରାନ୍ତିରେ ଦେବତାମାନଙ୍କ ନିକଟରେ ଘୃତ କମ୍ବଳ-ଲାଗିର ବ୍ୟବସ୍ଥା ହୋଇଥାଏ । ଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରା ମଧ୍ୟରେ ମକର ସଂକ୍ରାନ୍ତିକୁ ପ୍ରଧାନ ଯାତ୍ରା ଭାବରେ ସ୍ୱୀକାର କରି କୁହାଯାଇଛି – 'ଦୃଷ୍ଟ୍ୱା ମକର ସଂକ୍ରାନ୍ତି ଲିଙ୍ଗ ତ୍ରିଭୁବନେଶ୍ୱରମ୍, ଘୃତ କମ୍ବଳ ସଂଯୁକ୍ତ ମଗ୍ନିଲୋକମବାପ୍ନୁୟାତ୍ ।'

'ଶ୍ରୀବିଦ୍ୟାସ୍ୱାମୀ'
ଶ୍ରୀବିଦ୍ୟା, ପୋ: ଖଣ୍ଡଗିରି
ଭୁବନେଶ୍ୱର-୭୫୧୦୩୦



# ଓଡ଼ିଆ ଭାଷାର ତ୍ରାଣକର୍ତ୍ତା ଫକୀର ମୋହନ

**ଗୁରୁକଲ୍ୟାଣ ମହାପାତ୍ର**



ଏବର ଓଡ଼ିଆ ଭାଷା ତାହାର ପ୍ରାଚୀନତା ଓ ସମୃଦ୍ଧ ପରମ୍ପରା ଯୋଗୁଁ ଗତ ୨୦୧୪ରେ ଷଷ୍ଠ ଶାସ୍ତ୍ରୀୟ ଭାଷାର ମର୍ଯ୍ୟାଦା ଲାଭ କରିଛି । ମାତ୍ର ଏହି ଭାଷାକୁ ବଞ୍ଚାଇ ରଖିବା ଲାଗି ନିଜେ ବଞ୍ଚି ଯିଏ ସତତ ଉଦ୍ୟମ ଜାରି ରଖିଥିଲେ, ଆଉ ସାହିତ୍ୟ ସୃଷ୍ଟି କରି ଓଡ଼ିଶାରେ ଏକ ବୃହତର ପାଠକ ଗୋଷ୍ଠୀକୁ ଆମୋଦିତ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ପ୍ରଦାନ କରିଥିଲେ, ସେ ହେଉଛନ୍ତି ବ୍ୟାସକବି ଫକୀର ମୋହନ ସେନାପତି ।

ସେ ପ୍ରକୃତରେ ଥିଲେ ସଂକ୍ରାନ୍ତି ପୁରୁଷ । ସେ ୧୮୪୩ ମସିହା ଜାନୁଆରୀ ୧୪ ତାରିଖ ମକର ସଂକ୍ରାନ୍ତିରେ ବାଲେଶ୍ୱରଠାରେ ଜନ୍ମଗ୍ରହଣ କରି ଓଡ଼ିଶା ମାଟିକୁ ଧନ୍ୟ କରିଥିଲେ ଏବଂ ୧୯୧୮ ଜୁନ୍ ୧୪ ତାରିଖ ରଜ ସଂକ୍ରାନ୍ତିରେ ତାଙ୍କର ହେବାବସାନ ହେବା ପରେ ଓଡ଼ିଶାରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି ହୋଇଥିଲା । ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅବଦାନ ସକାଶେ ଶହେ ବର୍ଷ ତଳେ ବାମଣ୍ଡାର ‘ସୁର ତରଙ୍ଗିଣୀ ସାରସ୍ୱତ ସମିତି’ ତାଙ୍କୁ ‘ସରସ୍ୱତୀ’ ଉପାଧିରେ ଭୂଷିତ କରିଥିଲେ । ୧୯୧୬ରେ ବାମଣ୍ଡାର ରାଜା ତଥା ପ୍ରଖ୍ୟାତ ସାହିତ୍ୟିକ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ସେହି ଉତ୍ସବରେ ସଭାପତିତ୍ୱ କରିଥିଲେ ।

ଓଡ଼ିଆ ଭାଷା ଓ ସାହିତ୍ୟକୁ ବଞ୍ଚାଇ ରଖି ଆଧୁନିକ ଯୁଗରେ ତାହାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଥିବା ଫକୀର ମୋହନ ପ୍ରକୃତରେ ଅନନ୍ୟ । ସେତେବେଳେ ତ ରୁଗ୍ଣାବସ୍ଥାରେ ଓଡ଼ିଆ ଭାଷା ତଥା ସାହିତ୍ୟ । ନିଜେ ପେଟ ପୋଷିବା ପାଇଁ ସେ କେତେବେଳେ ଶିକ୍ଷକତାକୁ ଆଦରି ନେଇଥିଲେ ତ କେତେବେଳେ ଗଡଜାତରେ ବା ରାଜାଙ୍କ ନିକଟରେ ଦେୱାନଗିରି ବା ମେନେଜରି ବୃତ୍ତିକୁ ଅବଲମ୍ବନ କରିଥିଲେ ସେ । କିନ୍ତୁ ସଂସ୍କୃତ ଭାଷା କିମ୍ବା ବଙ୍ଗଳା ଭାଷା ଜାଣି ନଥିବା ଅଗଣିତ ଓଡ଼ିଆଙ୍କୁ ସେ ରାମାୟଣ, ମହାଭାରତ ଓ ଭଗବତ ଗୀତା ପ୍ରଭୃତି କାବ୍ୟ ଓଡ଼ିଆ ଭାଷାରେ ରଚନା କରି ଆମୋଦିତ କରିଥିଲେ । ସେ ମଧ୍ୟ ‘ଉତ୍କଳ ଭ୍ରମଣ’, ‘ପୁଷ୍ପମାଳା’ ଓ ‘ଉପହାର’ ପ୍ରଭୃତି ତିନିଗୋଟି କାବ୍ୟଗ୍ରନ୍ଥ

ସେତେବେଳେ ରଚନା କରିଥିଲେ । ସମ୍ଭବତଃ ଓଡ଼ିଆମାନଙ୍କ ନିକଟରେ ସେ ଏସବୁ ରଚନା ଲାଗି 'ବ୍ୟାସକବି'ଭାବେ ପରିଚିତ ହୋଇଥିଲେ ।

ଓଡ଼ିଆ ଭାଷାରେ ସେ ଗଳ୍ପ ଓ ଉପନ୍ୟାସ ଲେଖି ଆମ ସାହିତ୍ୟକୁ କେବଳ ସମୃଦ୍ଧ ଓ ଋଦ୍ଧିମନ୍ତ କରି ନଥିଲେ, ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠାତା ଓ ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ଜନକଭାବେ ମଧ୍ୟ ସେ ପରିଚିତ ହେଲେ । ଜଣେ ଇଂରେଜ ସାହେବ ଜେ.ଭି. ବୋଲଟନ୍ ଲଣ୍ଡନରେ ଫକୀର ମୋହନଙ୍କ ଉପରେ ଗବେଷଣା କରି ପିଏଚ୍.ଡି ବା ଡକ୍ଟରେଟ ଉପାଧି ଲାଭ କରିଥିଲେ । ଫକୀର ମୋହନଙ୍କ ଉପରେ ଇଂରାଜୀ ଭାଷାରେ ସେ ଦୁଇଗୋଟି ପୁସ୍ତକ ରଚନା ମଧ୍ୟ କରିଛନ୍ତି । ଫକୀର ମୋହନଙ୍କ 'ଆତ୍ମ ଚରିତ' (ଆତ୍ମଜୀବନୀ) ଯାହା ଓଡ଼ିଆ ଭାଷା, ସାହିତ୍ୟ, ଇତିହାସ ଓ ସାମ୍ବାଦିକତା ଉପରେ ଏକ ଅଦ୍ୱିତୀୟ ଗ୍ରନ୍ଥ, ତାହାର ଇଂରାଜୀ ଅନୁବାଦ କରିଛନ୍ତି ବୋଲଟନ୍ ସାହେବ 'My Times and I' ନାମରେ। ଏହି ପୁସ୍ତକଟିକୁ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୫ ମସିହାରେ ପ୍ରକାଶ କରିଥିଲେ । ଏହାର ଦ୍ୱିତୀୟ ସଂସ୍କରଣକୁ ୨୦୧୪ରେ ଆଉ ଥରେ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶ କରିଛନ୍ତି ଏବଂ ଅନୁବାଦକ ଡକ୍ଟର ବୋଲଟନ୍ ତାଙ୍କର ତିନି ପୁତ୍ରଙ୍କୁ ଏହି ପୁସ୍ତକଟି ଉତ୍ସର୍ଗ କରିଥିବା ପରିଲକ୍ଷିତ ହୋଇଛି । ଏହାର ମୁଖବନ୍ଧରେ ସେ ପ୍ରକାଶ କରିଛନ୍ତି–

' It's auther Phakirmohan Senapati was a distinguished Odia man of letters the first novelist of note in Odia language and the founder of modern Odia literature.' ( ଅର୍ଥାତ୍ ଏହାର ଲେଖକ ଫକୀର ମୋହନ ସେନାପତି ଥିଲେ ବିଶିଷ୍ଟ ଓଡ଼ିଆ ସାହିତ୍ୟିକ, ଓଡ଼ିଆ ଭାଷାର ପ୍ରଥମ ପ୍ରସିଦ୍ଧ ଔପନ୍ୟାସିକ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠାତା) ଡକ୍ଟର ବୋଲଟନ ତାଙ୍କର ଗବେଷଣାପ୍ରସୂତ ସନ୍ଦର୍ଭ ଭିତ୍ତିରେ ଇଂରାଜୀ ଭାଷାରେ ଆଉ ଗୋଟିଏ ପୁସ୍ତକ ରଚନା କରିଛନ୍ତି ୧୯୯୩ ମସିହାରେ । ତାହା ହେଲା 'Fakirmohan Senapati : His life and prose Fiction' ଏ ପୁସ୍ତକଟି ମଧ୍ୟ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶ କରିଛନ୍ତି । ତାଙ୍କର ଏହି ପୁସ୍ତକଟି ସମ୍ପର୍କରେ ବିଶିଷ୍ଟ ଓଡ଼ିଆ ସାହିତ୍ୟ ସମାଲୋଚକ ଶ୍ରୀ ଦାଶରଥୀ ଦାସ ଉଲ୍ଲେଖ କରିଛନ୍ତି– 'ଭାଷା ଓ ଜାତୀୟତା ବୋଧର ସମ୍ବନ୍ଧ ସ୍ୱୀକାର କରି ସେ (ଡକ୍ଟର ବୋଲଟନ୍) ନାନା ତଥ୍ୟ ଓ ପ୍ରମାଣ ବଳରେ ପ୍ରତିପାଦନ କରିଛନ୍ତି ଯେ ଦେଶାତ୍ମବୋଧ ହିଁ ଫକୀର ମୋହନଙ୍କ ସାହିତ୍ୟ ସୃଷ୍ଟିର ସର୍ବଧାତ୍ରୀ ପ୍ରେରଣା ।..... ତାଙ୍କର 'ଛ' ମାଣ ଆଠଗୁଣ୍ଠ'କୁ 'A Satire on British Law' (ବ୍ରିଟିଶ ଆଇନପ୍ରତି ବିଦ୍ରୂପ) ବୋଲି ବୋଲ୍‌ଟନ ସାହେବଙ୍କ ସମୀକ୍ଷାକୁ ଶ୍ରୀ ଦାସ ବ୍ୟାଖ୍ୟା କରିଛନ୍ତି । (ଫକୀର ମୋହନ ସାହିତ୍ୟ ସମୀକ୍ଷା : ଏକ ପରିଶୀଳନ, କୋଣାର୍କ ଜାନୁଆରୀ ୧୯୯୫ ସଂଖ୍ୟା) ।

ଫକୀର ମୋହନଙ୍କ ଗଳ୍ପ ଓ ଉପନ୍ୟାସ ପ୍ରଭୃତିରେ ଖାଣ୍ଟି ଓଡ଼ିଆ ସମେତ ପ୍ରଚଳିତ ଉର୍ଦ୍ଦୁ ଓ ହିନ୍ଦୀ ଭାଷାର ସଫଳ ପ୍ରୟୋଗ ହୋଇଥିଲେ ହେଁ, ଗଳ୍ପ ବା ଉପନ୍ୟାସଗୁଡ଼ିକର ନାମକରଣ ବଙ୍ଗଳା ବା ଅନ୍ୟାନ୍ୟ ଭାଷାର ଅନୁକରଣରେ ନହୋଇ ଖାଣ୍ଟି ଓଡ଼ିଆ ଭାଷାରେ ହୋଇଥିବା ପରିଲକ୍ଷିତ ହୋଇଥାଏ । ଫକୀର ମୋହନଙ୍କୁ ଅନୁସରଣ କରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସମେତ ଆଧୁନିକ ଓଡ଼ିଆ ଗଳ୍ପ ଓ ଉପନ୍ୟାସ ସ୍ରଷ୍ଟାଙ୍କ ମଧ୍ୟରେ ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ, ଶାନ୍ତନୁ କୁମାର ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ, ବିଭୂତି ପଟ୍ଟନାୟକ ଓ ପ୍ରତିଭା ରାୟଙ୍କ ଗଳ୍ପ ବା ଉପନ୍ୟାସମାନଙ୍କର ନାମକରଣ ଖାଣ୍ଟି ଓଡ଼ିଆ ଭାଷାରେ ହୋଇଥିବା ଦେଖାଯାଇଥାଏ ।

ବିଶିଷ୍ଟ ଓଡ଼ିଆ ସାହିତ୍ୟିକ ତଥା 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପରି ପ୍ରକାଣ୍ଡକାୟ ଭାଷାକୋଷର ପ୍ରତିଷ୍ଠାତା ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜ ଏକଦା ତାଙ୍କର ଲୋକପ୍ରିୟ 'ଆମ ଘରର ହାଲଚାଲ' ସ୍ତମ୍ଭରେ (ଯାହା 'ଉତ୍କଳ ସାହିତ୍ୟ' ପତ୍ରିକାରେ ନିୟମିତ ପ୍ରକାଶ ପାଇ ଆସୁଥିଲା) ଏକଦା ଉଲ୍ଲେଖ କରିଥିଲେ, 'ଫକୀର ମୋହନ ଉତ୍କଳର ଗଦ୍ୟକୁ ଯେଉଁ ଭାଷା ଦେଇ ଯାଇଛନ୍ତି, ସେ ଭାଷା ତତ୍‌ପୂର୍ବେ ସାହିତ୍ୟ କ୍ଷେତ୍ରରେ ପ୍ରଚଳିତ ନଥିଲା ବୋଲି କହିଲେ ଚଳେ । କି ଭାଷାର ଗ୍ରାମ୍ୟ ମାଧୁରୀ, କି ସମାଜଚିତ୍ର ଚିତ୍ରଣ, କି ମାନବ ପ୍ରକୃତି ବର୍ଣ୍ଣନ, କି ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନ ସବୁଥିରେ 'ଛ ମାଣ ଆଠ ଗୁଣ୍ଠ' ଉତ୍କଳ

ସାହିତ୍ୟର ଗଦ୍ୟ ବିଭାଗରେ ଗୋଟିଏ ନବଯୁଗର ସୂଚନା କରିଥିଲା । ଖାଣ୍ଟି ଓଡ଼ିଆ ଲେଖା ଫକୀର ମୋହନଙ୍କ ପ୍ରତି ଛତ୍ରରେ ପୂର୍ଣ୍ଣ । ସେ ନିଜେ ଅନେକ ଥର କଥା ପ୍ରସଙ୍ଗରେ ପ୍ରକାଶ କରିଥିଲେ ଯେ ତାଙ୍କ ବାଲ୍ୟକାଳରେ ଓଡ଼ିଆ ପୁସ୍ତକର ସଂଖ୍ୟା ଆଙ୍ଗୁଠି ଆଗରେ ଗଣତି ହେଉଥିଲା, କିନ୍ତୁ ତାଙ୍କ ଜୀବଦ୍ଦଶାରେ ସେ ଉତ୍କଳ ସାହିତ୍ୟ ଓ ଭାଷାର ବିଶେଷ ପୃଷ୍ଟି ଓ ଉନ୍ନତି ଦେଖି କୃତାର୍ଥ ହୋଇଥିଲେ । (ଉତ୍କଳ ସାହିତ୍ୟର ୨୨ଭାଗ ଚତୁର୍ଥ ସଂଖ୍ୟା ୧୩୨୫ ସାଲ ଶ୍ରାବଣ ସଂଖ୍ୟା)

ପ୍ରାକ୍ ସ୍ୱାଧୀନତା କାଳରେ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ମଧ୍ୟ ଓଡ଼ିଆ ଭାଷା ପ୍ରଚଳିତ ନଥିଲା । ଅଧିକାଂଶ ବିଦ୍ୟାର୍ଥୀ ସେତେବେଳେ ବଙ୍ଗଳା ଭାଷାରେ ଶିକ୍ଷାଲାଭ କରି ଆସୁଥିଲେ । କଥା ପ୍ରସଙ୍ଗରେ ଏକଥା ମୋର ପିତା ୧୦୨ ବର୍ଷରେ ପଦାର୍ପଣ କରିଥିବା ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଗୌରଚନ୍ଦ୍ର ମହାପାତ୍ର ପ୍ରକାଶ କରିଥିଲେ । ସେତେବେଳେ ଅଣ ଓଡ଼ିଆ ସରକାରୀ କର୍ମଚାରୀମାନଙ୍କ ଚକ୍ରାନ୍ତ ଯୋଗୁଁ ଓଡ଼ିଆ ଭାଷାର ସତ୍ତା ହୁଏ ତ ଲୋପ ପାଇଥା'ନ୍ତା । ଫକୀର ମୋହନ ତେଣୁ ତାଙ୍କର 'ଆତ୍ମ ଚରିତ'ରେ ଲେଖି ଯାଇଛନ୍ତି– 'ସେ ସମୟରେ ବାଲେଶ୍ୱର କଲେକ୍ଟର ଜନ୍‌ବିମ୍‌ସ ଜଣେ ଭାଷାବିତ୍ ପଣ୍ଡିତ ବୋଲି ଗଭର୍ଣ୍ଣମେଣ୍ଟରେ ପରିଚିତ ଥିଲେ । ଆମମାନଙ୍କର ଦରଖାସ୍ତ ତାଙ୍କ ହଜୁରରେ ଦାଖଲ ହେବାରୁ ଅନୁକୂଳ ମତ ପ୍ରକାଶ କରି କମିଶନର ସାହେବଙ୍କ ସମୀପକୁ ପଠାଇଦେଲେ । ଓଡ଼ିଆ ଅତି ପ୍ରାଚୀନ ସ୍ୱତନ୍ତ୍ର ଭାଷା । ଏହି ଭାଷା ଦେଶରେ ବହୁଳ ରୂପରେ ଶିକ୍ଷା ଦିଆଯିବା ଉଚିତ । ଏହି ମର୍ମରେ ଖଣ୍ଡିଏ ଇଂରାଜୀ ପୁସ୍ତକ ମଧ୍ୟ ଲେଖି ସରକାରଙ୍କୁ ପଠାଇ ଦେଲେ । ଓଡ଼ିଶାର ପରମବନ୍ଧୁ ଟି. ରେଭେନ୍ସା ସେସମୟରେ ଉତ୍କଳର କମିଶନର । କଲେକ୍ଟରଙ୍କ ପ୍ରେରିତ ଦରଖାସ୍ତରେ ଆପଣାର ବିଶେଷରୂପେ ଅନୁକୂଳ ମତ ଲେଖି ଗଭର୍ଣ୍ଣମେଣ୍ଟକୁ ପଠାଇ ଦେଲେ । ସରକାରୀ ହୁକୁମ ଆସିଲା– ଓଡ଼ିଶାର ସମସ୍ତ ସ୍କୁଲରୁ ବଙ୍ଗଭାଷା ସମ୍ପୂର୍ଣ୍ଣ ରୂପେ ଉଠାଇ ଦିଆଯାଉ ଏବଂ ଉତ୍କଳ ଭାଷାର ବହୁଳ ପ୍ରଚାର ନିମନ୍ତେ ସ୍ଥାନେ ସ୍ଥାନେ ସ୍କୁଲ ସ୍ଥାପିତ ହେଉ । କଲେକ୍ଟର ମହାତ୍ମା ଜନ୍ ବିମସ୍ ଏବଂ କମିଶନର ମହାତ୍ମା ଟି. ରେଭେନ୍ସାଙ୍କ ଅନୁଗ୍ରହ ଚିରକାଳ ଉତ୍କଳବାସୀ ସ୍ମରଣ କରିବେ ।'

ଯେତେବେଳେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଅଭାବ ରହିଥିଲା, ସେତେବେଳେ ଫକୀର ମୋହନ ପାଠ୍ୟପୁସ୍ତକ ମଧ୍ୟ ସ୍କୁଲ ପିଲାମାନଙ୍କ ପାଇଁ ରଚନା କରି ସେ ଅଭାବ ପୂରଣ କରିଥିଲେ । ବିଶିଷ୍ଟ ସାହିତ୍ୟ ସମାଲୋଚକ, ଡକ୍ଟର କୃଷ୍ଣଚରଣ ବେହେରା ଲେଖିଛନ୍ତି, 'ଏହା ବ୍ୟତୀତ ଫକୀର ମୋହନଙ୍କ 'ଓଡ଼ିଆ ବ୍ୟାକରଣ', ଦୁଇ ଭାଗରେ ବିଭକ୍ତ 'ଭାରତବର୍ଷର ଇତିହାସ' ଓ 'ଅଙ୍କମାଳା' ମଧ୍ୟ ପ୍ରକାଶିତ ହୋଇ ସ୍କୁଲ ପାଠ୍ୟ-ପୁସ୍ତକ ରୂପେ ଚଳୁଥିଲା । (ଫକୀର ମୋହନ ଦେଶ ଓ କାଳ, ପ୍ରଗତି ସାହିତ୍ୟ, ଅଗଷ୍ଟ ୧୯୫୮) ।

ଏବେ ତ ଓଡ଼ିଆ ଭାଷାକୁ ଓଡ଼ିଆ ସମ୍ବାଦପତ୍ର, ପତ୍ରପତ୍ରିକା ପ୍ରଭୃତି ବଞ୍ଚାଇ ରଖିଛନ୍ତି । କଲେଜ ପାଠ୍ୟକ୍ରମରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଛାତ୍ରଛାତ୍ରୀମାନଙ୍କର ଆଦର ହ୍ରାସ ପାଉଥିବା ମଧ୍ୟ ଦୁଃଖର ବିଷୟ । ଓଡ଼ିଆ ଭାଷା ସରକାରୀ ଆଇନ ୧୯୫୪କୁ ସଂଶୋଧନ କରି ନିୟମାବଳି ପ୍ରସ୍ତୁତ କରିବା ପରେ ଏବେ ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ ପ୍ରଚଳିତ ହୋଇପାରିଛି । ମାତ୍ର ଆମମାନଙ୍କର ମନୋବୃତ୍ତି ନଥିବାରୁ ଆମେ ଇଂରାଜୀ ଓ ହିନ୍ଦୀ ଭାଷା ଉପରେ ଅଧିକ ନିର୍ଭରଶୀଳ ହୋଇ ପଡୁଛୁଁ ଏବଂ ଆମ ପିଲାମାନଙ୍କୁ ଇଂରାଜୀ ମାଧ୍ୟମରେ ଶିକ୍ଷାଦାନ କରାଯାଉଥିବା ପବ୍ଲିକ ସ୍କୁଲମାନଙ୍କରେ ପାଠ ପଢାଇ ଆପଣାକୁ ଆପେ ଗର୍ବବୋଧ କରୁଛୁଁ । ଏହା ଫଳରେ ଫକୀର ମୋହନ ସେନାପତି ଜୀବନ ବ୍ୟାପୀ ସାଧନା କରି ଯେଉଁ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିଥିଲେ, ତାହା ନିରର୍ଥକ ହୋଇଯିବ । ଏଥିପ୍ରତି ଆମେମାନେ ସଚେତନ ହେବା ଦରକାର ।

ବରିଷ୍ଠ ସାମ୍ବାଦିକ ଓ ଲେଖକ
କ୍ୱାର୍ଟର ନଂ ଭିଏ ୨୯/୩
ୟୁନିଟ୍–୨, ଭୁବନେଶ୍ୱର–୯



# ଶ୍ରୀଜଗନ୍ନାଥଙ୍କ ଭକ୍ତ ବାଲିଗାଁ ଦାସିଆ

ଜାନକୀ ବଲ୍ଲଭ ପଟ୍ଟନାୟକ

ଭାରତବର୍ଷ ସାଧୁ, ସନ୍ଥ, ଭକ୍ତମାନଙ୍କ ଦେଶ । ତନ୍ମଧ୍ୟରେ ଉତ୍କଳ ଭୂମି ପରମ ପବିତ୍ର । ଏଠି ମଧ୍ୟ କେତେ ଭକ୍ତ ସାଧୁ ଜନ୍ମ ଗ୍ରହଣ କରି ଭକ୍ତି ବଳରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନନ୍ଦିତ କରି ତାଙ୍କର ପ୍ରିୟ ଭାଜନ ହୋଇ ପାରିଛନ୍ତି । ତନ୍ମଧ୍ୟରୁ ଭକ୍ତ ଦାସିଆ ଅନ୍ୟତମ । ଅନେକେ ତାଙ୍କୁ ଦାସିଆ ବାଉରୀ ବୋଲି ଜାଣନ୍ତି । ଭକ୍ତ ଭଗବାନଙ୍କର ସବୁଠୁ ପ୍ରିୟ । ଯୋଗୀ, ଜ୍ଞାନୀ, କର୍ମୀ ଏ ସମସ୍ତଙ୍କଠାରୁ ଭକ୍ତ ଭଗବାନଙ୍କର ଅତ୍ୟନ୍ତ ପ୍ରିୟ–ନିଜ ଜନଚ । ଭକ୍ତ ଦାସିଆଙ୍କ ଘର ଓଡିଶାର ପୁରୀ ଜିଲ୍ଲା ଅନ୍ତର୍ଗତ ପିପିଲି ନିକଟରେ । ଗାଁ ନାମ ବାଲିଗାଁ । ପିପିଲିଠାରୁ ପୁରୀ ଯିବା ବାଟରେ ୧୦ କି.ମି. ଗଲେ ବାଲିଗାଁ । ଏଇ ଗାଁରେ ଖଦାଳ ଜାତିରେ ଦାସିଆଙ୍କ ଜନ୍ମ । ପେଶା ଥିଲା ଲୁଗା ବୁଣିବା, ସେ ଭାରି ଗରିବ ଥିଲେ ଜାଗତିକ ଦୃଷ୍ଟିରୁ । ଭକ୍ତି ଓ ପରମାର୍ଥରେ ସେ ଥିଲେ ଧନୀ । ଶ୍ରୀଜଗନ୍ନାଥଙ୍କର ସେ ଥିଲେ ପରମ ଭକ୍ତ । ଶ୍ରୀଜଗନ୍ନାଥଙ୍କ ନାମ, ଗୁଣ, ଲୀଳା ସର୍ବଦା ତାଙ୍କର ସ୍ମରଣ ହେଉଥିଲା । ବାଲିଗାଁ ପଞ୍ଚକୋଶ ମଧ୍ୟରେ ବୋଲି କାହା କାହା ମତ । ତାଙ୍କ ସ୍ତ୍ରୀଙ୍କ ନାମ ସାରିଆ । କାହା ମତରେ ମାଳତୀ, ତାଙ୍କର ସନ୍ତାନ ସନ୍ତତି ନଥିଲା । ଜଗନ୍ନାଥ ହିଁ ତାଙ୍କର ପିତା, ମାତା, ସନ୍ତାନ ସବୁ କିଛି । ଗାଁଟି ରତ୍ନଚିରା ନଦୀ କୂଳରେ ଡେଇଶିପୁର ନିକଟରେ ଜାତିରେ ଶୁଦ୍ରହେତୁ ପୁରୀ ଶ୍ରୀମନ୍ଦିର ମଧ୍ୟକୁ ଯାଇ ପାରୁନଥିଲେ । ମାତ୍ର ଶ୍ରୀଜଗନ୍ନାଥ ତ ଭାବ ବା ପ୍ରେମର ଠାକୁର । ପ୍ରେମ–ଭଲ ପାଇବା ଯେଉଁଠି, ମହାପ୍ରଭୁ ସେଇଠି । ଭାବକୁ ନିକଟ ଅଭାବକୁ ଦୂର । ଦାସିଆ ମଧ୍ୟ ଥିଲେ ଭାରି ନାମ ସଂକୀର୍ତ୍ତନ ପ୍ରିୟ । ଗାଁରେ ନାମ ସଂକୀର୍ତ୍ତନ ହେଲେ ସେ ନିଶ୍ଚୟ ଯାଇ ଦୂରରେ ବସି ପାଳିଧରନ୍ତି, ତନ୍ମୟ ହୋଇଯାଆନ୍ତି । ନାମ କୀର୍ତ୍ତନ ବେଳେ ତାଙ୍କୁ କେବଳ ହିଁ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଦେଖାଯାଆନ୍ତି ।



ଦାସିଆଙ୍କ ସମୟ କାହାରି କାହାରି ମତରେ ପଞ୍ଚଦଶ, ଷୋଡଶ ବା ସପ୍ତଦଶ ଶତାବ୍ଦୀରେ । ଓଡିଆ ପଞ୍ଚସଖାଙ୍କ ସହ ତାଙ୍କର ସାକ୍ଷାତ୍ ହୋଇଥିବା ଶୁଣାଯାଏ । ମାତ୍ର ଏ ବିଷୟରେ ଗବେଷକମାନଙ୍କ ଭିନ୍ନ ମତ ଅଛି । ତାଙ୍କର ଜନ୍ମ କାର୍ତ୍ତିକ ଶୁକ୍ଳପକ୍ଷ ଏକାଦଶୀ ଏବଂ ଦେହାନ୍ତ ମାଘ ଶୁକ୍ଳ ପକ୍ଷ ଏକାଦଶୀ । ଜନ୍ମ ଓ ମୃତ୍ୟୁରୁ ମଧ୍ୟ ସେ ଯେ ବିଷ୍ଣୁଙ୍କ ପ୍ରିୟ ଏହା ସ୍ପଷ୍ଟ ହୁଏ । ଆମେ ସମସ୍ତେ ଜାଣିଛେ ଯେ ତାଙ୍କ ପ୍ରେରିତ ନଡିଆ ଶ୍ରୀଜଗନ୍ନାଥ ହସ୍ତ ପ୍ରସାରି ସାକ୍ଷାତ୍ ଗ୍ରହଣ କରିଥିଲେ । ସେ ଜଗନ୍ନାଥଙ୍କ ଭକ୍ତ ହେତୁ ବୈଷ୍ଣବ ଥିଲେ । କାମୁକ ବ୍ୟକ୍ତି ସର୍ବତ୍ର ସ୍ତ୍ରୀ ଦର୍ଶନ କରେ ଲୋଲୁପ ଦୃଷ୍ଟିରେ । ହରିଭକ୍ତ ଭାବୁକ, ପ୍ରେମିକ ସେହିପରି ସର୍ବତ୍ର ଶ୍ରୀ ହରିଙ୍କୁ ଦର୍ଶନ କରିଥାଏ । ଯାହାଁ ଯାହାଁ ନେତ୍ର ପଡେ ତାହା ତାହା କୃଷ୍ଣସ୍ଫୁରେ । ଶ୍ରୀଜଗନ୍ନାଥାଭିନ୍ନ ଭକ୍ତ ଭାବଧାରୀ ଶ୍ରୀଚୈତନ୍ୟ ମହାପ୍ରଭୁ ନୀଳ ପର୍ବତ, ନୀଳ ସମୁଦ୍ର ଦେଖି ଗୋବର୍ଦ୍ଧନ ଓ ଯମୁନା ଜ୍ଞାନ

କରୁଥିଲେ ଏବଂ ଭଗବାନ ନାମ ଶୁଣି ମୂର୍ଚ୍ଛିତ ହୋଇ ଯାଉଥିଲେ । ସେହିପରି ଦାସିଆଙ୍କ ଜୀବନରେ ଦେଖାଯାଏ ଥରେ ତାଙ୍କ ସ୍ତ୍ରୀ ଜାଉକରି ଶାଗ ଭାଜିଥିଲେ । ଜାଉ ମଧ୍ୟଭାଗରେ ଶାଗକୁ ରଖିଦେଇଥିଲେ, ତାହା ଦାସିଆଙ୍କ ମନରେ ଧଳା ମଧ୍ୟରେ କଳା ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କ ଚକା ଆଖିର ସ୍ମୃତି ଆଣିଲା । ଖାଇବା ବନ୍ଦ ହୋଇଥାଏ । ସେ ଜଗନ୍ନାଥଙ୍କ ପ୍ରେମରେ ବିଭୋର ହୋଇ ହସି, କାନ୍ଦି, ନାଚିଲେ । ଏହା ଦେଖି ସ୍ତ୍ରୀ ଭାବିଲେ ୟାଙ୍କଠାରେ କ'ଣ ଭୂତ ଲାଗିଲା କି । ପଡୋଶୀଙ୍କୁ ଡାକିଲେ । ଲୋକେ ମଧ୍ୟ ସେୟା କହିଲେ । କିନ୍ତୁ ପାଖ ଗାଁ ପ୍ରହରାଜପୁରର ଜଣେ ବ୍ରାହ୍ମଣ ଏ ଭକ୍ତି ରହସ୍ୟ ବୁଝି ପାରି କହିଲେ ଯେ କଳାହାଣ୍ଡି ମଧ୍ୟରେ ଧଳା ଜାଉ ଭିତରେ କଳା ଶାଗ ଦେଖି ଦାଶରଥିଙ୍କର ଶ୍ରୀଜଗନ୍ନାଥଙ୍କ ଚକାଆଖି ମନେପଡିବାରୁ ସେ ଭକ୍ତି ଓ ପ୍ରେମରେ ଉନ୍ମତ୍ତ ହେଉଛନ୍ତି, ୟାଙ୍କୁ ଭୂତଲାଗି ନାହିଁ । ଦାସିଆଙ୍କ ସ୍ତ୍ରୀଙ୍କୁ ସେ ବ୍ରାହ୍ମଣ କହିଲେ ଯେ ଜାଉ ମଧ୍ୟରୁ ଶାଗକୁ ଅଲଗା କରି ରଖିଦିଅ । ସେପରି କରିବାରୁ ଦାଶରଥିଙ୍କ ବାହ୍ୟଜ୍ଞାନ ଆସିଲା, ସେ ପ୍ରକୃତିସ୍ଥ ହୋଇଗଲେ ।

ଥରେ ତାଙ୍କର ଇଚ୍ଛା ହେଲା ମହାପ୍ରଭୁଙ୍କୁ ନଡିଆଟିଏ ସମର୍ପଣ କରନ୍ତେ । ବୁଣୁଥିବା ଲୁଗା ବିକି ଚଳନ୍ତି । ଥରେ ଜଣେ ବ୍ରାହ୍ମଣଙ୍କ ନଡିଆ ଗଛ ଦେଖି ତାଙ୍କୁ ଖଣ୍ଡିଏ ବୁଣିଥିବା ଲୁଗା ପରିବର୍ତ୍ତେ ନଡିଆଟିଏ ଦେବାକୁ କହିଲେ । ବ୍ରାହ୍ମଣ ଦେଖିଲେ ଲୁଗାର ଦାମ ନଡିଆଠାରୁ ବେଶି । ଏଣୁ ଏଥିରେ ସେ ରାଜି ହୋଇଗଲେ । ନଡିଆଟି ପାଇ ଦାସିଆଙ୍କର ଶ୍ରୀଜଗନ୍ନାଥଙ୍କ କଥା ମନେ ପଡିଲା । ବାଟରେ ଜଣେ ବ୍ରାହ୍ମଣ ଶ୍ରୀଜଗନ୍ନାଥଙ୍କ ପାଇଁ ଆମ୍ବ, ପଣସ, କଦଳୀ ଆଦି ନେଇ ପୁରୀ ଯାଉଥାନ୍ତି । ଦାସେ ତାଙ୍କୁ କହିଲେ ମହାପ୍ରଭୁଙ୍କୁ କହିବ ବାଲିଗାଁ ଦାସିଆ ଏଇ ନଡିଆଟି ଦେଇଛି ତାଙ୍କ ପାଇଁ । ସେ ଯଦି ନିଜ ହାତରେ ନଡିଆଟି ଗ୍ରହଣ କରିବେ ଦେଇଦେବ ନତୁବା ଫେରାଇ ଆଣି ମୋତେ ଦେବ । ବ୍ରାହ୍ମଣ ହସିଲେ, ଭାବିଲେ ଇଏ ପାଗଳ, ଡେରି ହେବ ଏହା ସଙ୍ଗେ କଥା ହେଲେ । ସାଙ୍ଗରେ ନଡିଆଟିକୁ ନେଇଗଲେ । ନିଜେ ନେଇଥିବା ଦ୍ରବ୍ୟମାନ ଶ୍ରୀଜଗନ୍ନାଥଙ୍କ ସେବକକୁ ଦେଇଦେଲେ । ଦାସିଆ କହିଥିବା ଅନୁସାରେ ଗରୁଡ ସ୍ତମ୍ଭ ପାଖେ ମହାପ୍ରଭୁଙ୍କୁ ଚାହିଁ ଦାସିଆ କହିଥିବା କଥା ନିବେଦନ କଲେ । ଆଶ୍ଚର୍ଯ୍ୟ– ହଠାତ୍ ରତ୍ନସିଂହାସନରୁ ଏକ ଅଦୃଶ୍ୟ ହସ୍ତ ପ୍ରସାରିତ ହୋଇ ନଡିଆଟି ତାଙ୍କ ହାତରୁ ମହାପ୍ରଭୁ ନେଇଗଲେ । କ୍ରମେ ଏ ଖବର ସର୍ବତ୍ର ବ୍ୟାପୀ ଗଲା । ଶୁଦ୍ର ଦାସିଆ ବାଉରୀର ପ୍ରଦତ୍ତ ନାରିକେଳ ମହାପ୍ରଭୁ ସ୍ୱହସ୍ତରେ ନେଇଗଲେ । ଦାସିଆଙ୍କୁ ସମସ୍ତେ ଭକ୍ତ ଶିରୋମଣି ବୋଲି କହିଲେ । ସାଧୁ ବୈଷ୍ଣବ ବୋଲି ଜାଣିଲେ ।

ସେହିପରି ଆଉ ଦିନେ ଦାସିଆଙ୍କ ମନହେଲା ମହାପ୍ରଭୁଙ୍କୁ ପାଚିଲା ଆମ୍ବ ଖୁଆଇବାକୁ । ବୁଣିଥିବା ଲୁଗା ପରିବର୍ତ୍ତେ କିଛି ପାଚିଲା ଆମ୍ବ ଧରି ଏଥର ସେ ନିଜେ ପୁରୀ ଗଲେ । ବଡଦାଣ୍ଡରେ ସେହି ପାଚିଲା ଆମ୍ବର ରଂଗ ଦେଖି ତା' ବାସନାରେ ବ୍ରାହ୍ମଣମାନଙ୍କର ଲୋଭ ହେଲା । ଦାସିଆଙ୍କଠୁ ଛଡାଇ ନେବାକୁ ପରସ୍ପର କଳି ଲାଗିଲେ । ତେଣେ ହଠାତ୍ ନୀଳଚକ୍ରରୁ ଶୂନ୍ୟରୁ ଆମ୍ବତକ କିଏ ନେଇଗଲା । ବ୍ରାହ୍ମଣମାନେ ବିସ୍ମିତ ହେଲେ । ସେଣେ ଦେଖିଲା ବେଳକୁ ଚୋପା ଓ ଟାକୁଆ ଗୁଡାକ ରତ୍ନସିଂହାସନ ତଳେ ପଡିଛି । ଭକ୍ତି ଓ ପ୍ରେମର କି ଅଲୌକିକ ଶକ୍ତି ! ରକ୍ ଶାକ ବିଦୁର ଘରେ ଖାଏ । ଭକ୍ତି ଓ ଭାବରେ ବିଦୁରଙ୍କ ଘରେ କଦଳୀ ଚୋପା ମଧ୍ୟ ମହାପ୍ରଭୁ ଖାଇଦେଲେ । ଏଣୁ ଏ ସମସ୍ତ କଥା କ୍ରମେ ଜଣାପଡିବାରୁ ଦାସିଆଙ୍କୁ ସମସ୍ତେ ଭକ୍ତ ସାଧୁ ଜ୍ଞାନ କଲେ । ଏହା ମହାପ୍ରଭୁଙ୍କ ଅଶେଷ କୃପା । ଏମିତି ଦାସିଆଙ୍କ ପ୍ରତି ମହାପ୍ରଭୁଙ୍କ ଅଯାଚିତ କୃପା ଓ ପ୍ରେମ ଜଣାପଡିବାରୁ ସମସ୍ତେ ଜାଣିଲେ ଯୋଗ, ଜପ, ତପ, ପୂଜା, ପାଠଦ୍ୱାରା ନୁହେଁ ଅନନ୍ୟ ଭକ୍ତି ହେଲେ ପ୍ରଭୁ ଭକ୍ତର ବଶ ହୋଇଯାଆନ୍ତି । ଦାସିଆଙ୍କ ଖ୍ୟାତି ପ୍ରଚାର ହେଲା । ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କଲେ । ଏମିତି ଦାସିଆଙ୍କ ସହ ମହାପ୍ରଭୁଙ୍କର ଅନେକ ଅନେକ ଲୀଳା ହୋଇଛି । ଏଇ କେତୋଟି କଥା ଲୋକମୁଖରେ ପ୍ରଚାରିତ ସିନା ହୋଇଗଲା ହେଲେ ଭକ୍ତ ଭଗବାନଙ୍କ ଅସରନ୍ତି ପ୍ରେମଲୀଳା କ'ଣ ସବୁ ପ୍ରଘଟ ହେବ ? ଦାସିଆଙ୍କ ଏ ସମସ୍ତ କଥା ଭକ୍ତକବି ରାମଦାସଙ୍କ ବିରଚିତ ଓଡିଆ 'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥରେ ଅତି ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି । ଦାସିଆ ପ୍ରତ୍ୟହ ଶ୍ରୀନାମ କୀର୍ତ୍ତନ କରୁଥିଲେ ଏବଂ ଓଡିଆ ଭାଗବତ ନିଜ ସହଧର୍ମିଣୀଙ୍କୁ ଶୁଣାଉଥିଲେ । ପରସ୍ପର ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଲୀଳା ସେ ଭକ୍ତିର ସହ ଶ୍ରବଣ କୀର୍ତ୍ତନ କରନ୍ତି ।

ଦାସିଆଙ୍କ ଜନ୍ମ ଓ ସାଧନା ପୀଠ ନିକଟରେ ଏକ ପୁଷ୍କରିଣୀ ଥିଲା । ତା' ନାମ ଗୋଠ ଗାଡିଆ । ସେଥିରୁ କେହି ମାଛ ମାରନ୍ତି ନାହିଁ । ଥରେ ଜଣେ ଚୋରି କରି ମାଛନେଇ

ରାନ୍ଧିବାରୁ କଡେଇଯାକ ରକ୍ତ ହୋଇଗଲା । ଏଣୁ ଭୟରେ କେହି ସେ ଦିନଠୁ ଆଉ ଗୋଠ ଗାଡିଆରୁ ମାଛ ମାରିଲେନି । ସେ ଗାଡିଆ ପାଣି ସିଞ୍ଚିହେଲେ ଅନେକ ରୋଗ ମଧ୍ୟ ଦୂର ହୋଇଯାଏ । ସେହି ଗୋଠ ଗାଡିଆକୁ ଲାଗି ତୁଳସୀ ଚଉରା, ତୁଳସୀବଣ ଏବଂ ଦାସିଆଙ୍କର ମାତ୍ର ୪ ଡିସିମିଲି ଘର ଡିହ । ତାଙ୍କ ଦେହାନ୍ତ ପରେ ଗୋଠଗାଡିଆ ପୋଖରୀ କୂଳରେ ତାଙ୍କର ସମାଧି ପୀଠ ହୋଇଛି । ଗୋଠ ଗାଡିଆରେ ତାଙ୍କ ସ୍ତ୍ରୀଙ୍କୁ ଦାସିଆ ନନ୍ଦିଘୋଷ ରଥୋପରି ଉପବିଷ୍ଟ ଶ୍ରୀଜଗନ୍ନାଥଙ୍କୁ ଦେଖାଇଥିଲେ ଏବଂ ଦାସିଆଙ୍କୁ ପରୀକ୍ଷା କରିବାକୁ ଆସିଥିବା ଓଡିଆ ପଞ୍ଚସଖା (ଶ୍ରୀବଳରାମ–ଜଗନ୍ନାଥ–ଅଚ୍ୟୁତ–ଯଶୋବନ୍ତ–ଶିଶୁ ଅନନ୍ତ) ଙ୍କ ପାଇଁ ଦାସିଆ ମହାପ୍ରଭୁଙ୍କୁ ପ୍ରାର୍ଥନା କରିବାରୁ ମହାପ୍ରଭୁ ଗାଡିଆ ମଧ୍ୟରେ ତାଙ୍କ ଦଶାବତାରମାନଙ୍କୁ ଦେଖାଇଥିଲେ ପଞ୍ଚସଖାଙ୍କୁ । ଏଥିରୁ ଦାସିଆଙ୍କ ଭକ୍ତି ସାଧନାର ଉତ୍କର୍ଷତା ଜଣାପଡେ । ଓଡିଶା ରାଜ୍ୟ ସଂଗ୍ରହାଳୟରେ ଦାସିଆଙ୍କ ପ୍ରଣୀତ ଭକ୍ତି ମାଳିକା ଓ ଦାସିଆ ଭାଗବତ ପୋଥି ଦୁଇଟି ଅଛି । ଏଥିରୁ ଅନେକ ତଥ୍ୟ ମିଳେ । ମାତ୍ର ଏହା ତାଙ୍କ ରଚିତ ବା ତାଙ୍କ ନାମରେ ଅନ୍ୟ କିଏ ଲେଖିଛନ୍ତି ଏବଂ ପଞ୍ଚସଖାମାନଙ୍କ ସହ ତାଙ୍କର ଦେଖାହେବା ବିଷୟ ଏହା ଗବେଷଣା ସାପେକ୍ଷ । ଗବେଷକମାନେ ମଧ୍ୟ ଏ ବିଷୟରେ ଭିନ୍ନ ଭିନ୍ନ ମତ ପୋଷଣ କରନ୍ତି । ପଞ୍ଚଦଶ ଶତାବ୍ଦୀର ପଞ୍ଚସଖା ଦାସିଆଙ୍କ ସମସାମୟିକ କି ନାହିଁ ? ଏସବୁ ଅଧିକ ଗବେଷଣାର ଅପେକ୍ଷା ରଖେ ।

ଦାସିଆଙ୍କ ଜନ୍ମଭୂମି ଉପରେ ବା ପାର୍ଶ୍ୱରେ ବାଲିଗାଁରେ ଏକ ପ୍ରାଚୀନ ମଠ ଅଛି ତା'ର ନାମ 'ରାଧାମୋହନ ମଠ' । ଏହି ମଠରେ ଶ୍ରୀରାଧାକୃଷ୍ଣ, ପତିତପାବନ ଜଗନ୍ନାଥଙ୍କ ସହ ଶ୍ରୀଚୈତନ୍ୟ, ନିତ୍ୟାନନ୍ଦ, ଅଦ୍ୱୈତାଦିଙ୍କ କମନୀୟ ବିଗ୍ରହ ଅଛନ୍ତି । ଗୌଡୀୟ ସଂପ୍ରଦାୟର ବୈଷ୍ଣବମାନେ ଏହି ମଠର ପୂଜକ । ମଠଟି ପ୍ରାଚୀନ ହେତୁ ଏହା ସହ ଦାସିଆଙ୍କ ସଂପର୍କ ଥିବା ଅନୁମାନ କରାଯାଏ । ଦାସିଆ ତିଳକ ଧାରଣ କରି ନାମ ସଂକୀର୍ତ୍ତନ କରିବା କଥା ଅନେକ ଗବେଷକ ଲେଖିଛନ୍ତି । ମଠଟିରେ ଶ୍ରୀଚୈତନ୍ୟ ଓ ତାଙ୍କ ପାର୍ଷଦଙ୍କ ବିଗ୍ରହ ଥିବାରୁ ଏବଂ ମଠଟି ଦାସିଆଙ୍କ ଡିହରେ ବା ଘର ପାର୍ଶ୍ୱରେ ଥିବାରୁ ସେ ଗୌଡୀୟ ବୈଷ୍ଣବ ଥିବା ଜଣାପଡେ । ଗୌଡୀୟ ବୈଷ୍ଣବମାନେ ଶ୍ରୀଗୌରାଙ୍ଗ, ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କୁ ଏକ ଭାବି ପୂଜା କରନ୍ତି । ଯିଏ ଗୌର ସେଇ କୃଷ୍ଣ ସେଇ ଜଗନ୍ନାଥ । ଶ୍ରୀ ରାଧାମୋହନ ମଠରେ ଥିବା ପୋଥି ଇତ୍ୟାଦି ଗବେଷଣା କଲେ ସଠିକ୍ ତଥ୍ୟ ଲୋକଲୋଚନକୁ ଆସିପାରନ୍ତା ।

ଭକ୍ତଦାସିଆ ସ୍ମୃତି କମିଟି, ବାଲିଗାଁ–ପୁରୀ ପକ୍ଷରୁ ୨୦୧୫ ରେ ପ୍ରକାଶିତ ନବକଳେବର ସଂଖ୍ୟା ଭକ୍ତ ଦାସିଆ ପତ୍ରିକାରେ ଭକ୍ତ ଶିରୋମଣି ଦାସିଆ ବାଉରୀ ଶୀର୍ଷକ ପ୍ରବନ୍ଧରେ ଅଧ୍ୟାପକ ଡଃ ଅଶୋକ କୁମାର ମହାନ୍ତି (ଡେଲାଙ୍ଗ କଲେଜ) ଲେଖିଛନ୍ତି ଯେ ଦାସିଆଙ୍କ ରଚନାରୁ ରାମଚନ୍ଦ୍ରଦେବ (୨ୟ)ଙ୍କ ପୁତ୍ର ବୀରକେଶରୀ ଦେବଙ୍କ ସଂପର୍କରେ ସୂଚନା ମିଳୁଥିବାରୁ ସେ ପ୍ରାୟ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭ ସମ୍ଭବତ ୧୬୨୦–୧୬୩୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନ୍ମ ହୋଇଥିବାର ଅନୁମାନ କରାଯାଏ । ଗଜପତି ପ୍ରତାପରୁଦ୍ରଙ୍କ ସମୟ ଖ୍ରୀ.ଅ ୧୪୯୭–୧୫୩୪, ଓଡିଆ ପଞ୍ଚସଖାମାନେ ମଧ୍ୟ ଏହି ସମୟର ବୋଲି କୁହାଯାଏ । ସେତେବେଳକୁ ଶ୍ରୀଚୈତନ୍ୟ ଦେବ ୧୫୧୦ ରେ ଓଡିଶା ଆସି ୧୫୩୩ ରେ ପୁରୀରେ ଅପ୍ରକଟ ହୋଇଥିଲେ । ପଞ୍ଚସଖାମାନେ ଶ୍ରୀଚୈତନ୍ୟଙ୍କ ଭଗବତ୍ତା ସ୍ୱୀକାର କରି ତାଙ୍କ ସମ୍ବନ୍ଧରେ ଲେଖିଛନ୍ତି । ପୁଣି ଅନେକ ଗବେଷକଙ୍କ ମତ ଯେ ଓଡିଆ ପଞ୍ଚସଖାମାନେ ପରସ୍ପର ସମସାମୟିକ ଥିଲେ କି ନାହିଁ ତାହା ମଧ୍ୟ ସଠିକ କହିହେବନି । ଉତ୍କଳ ପାଠକ ସଂସଦ ପକ୍ଷରୁ ପ୍ରକାଶିତ ଓଡିଶାରେ ସାଧୁସନ୍ଥ ପୁସ୍ତକ (ପ୍ରଥମ ସ୍ତବକ)ରେ ମହାପୁରୁଷ ଶିଶୁ ଅନନ୍ତ ଦାସ ଶୀର୍ଷକ ପ୍ରବନ୍ଧରେ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ ମହାଶୟ ଲେଖିଛନ୍ତି ଯେ ଚୈତନ୍ୟଙ୍କ ଅନୁଗାମୀ ପଞ୍ଚ ମହାଜନ ବା ଷଡଗୋସ୍ୱାମୀଙ୍କ ଅନୁକରଣରେ ଉତ୍କଳୀୟ ମତବାଦର ପରିପୋଷକ ପାଞ୍ଚଜଣଙ୍କୁ ନେଇ ପଞ୍ଚସଖାର ପରିକଳ୍ପନା ହେଲା । ଏମାନଙ୍କର ଭାବଧାରା କେବେହେଲେ ଚୈତନ୍ୟଙ୍କ ମତର ଅନୁସରଣ କରିନଥିଲା କିମ୍ବା ଏ ପାଞ୍ଚଜଣ ଗୋଟିଏ ଗୁରୁ ପରଂପରାର ବା ଗୋଟିଏ ଆଦର୍ଶର ଅନୁଗାମୀ ନଥିଲେ । ଏପରିକି ଏକ ମତବାଦ ପ୍ରଚାର ଉଦ୍ଦେଶ୍ୟରେ ମଧ୍ୟ ଏମାନଙ୍କର କୌଣସି ସଂଘବଦ୍ଧ ଉଦ୍ୟମ ବା ସଖ୍ୟ ନଥିଲା ।

ଦାସିଆ ପୀଠ ସଂଲଗ୍ନ ଶ୍ରୀରାଧାମୋହନ ମଠରେ ପ୍ରସାଦ ସ୍ୱରୂପ ଜାଉ, ଶାଗ, କାଞ୍ଜି ଇତ୍ୟାଦି ଭୋଗ ହୁଏ । ଏବେ ଭକ୍ତମାନେ ସେଠାକୁ ଗଲେ ମଧ୍ୟ କାଞ୍ଜି ପାଣି ମଠ

ତରଫରୁ ବିତରଣ କରାଯାଏ, ରାଧାମୋହନ ମଠକୁ ଦାସିଆ ଆଶ୍ରମ ବୋଲି ଆଗରୁ ସମସ୍ତେ ଜାଣନ୍ତି । ମଠରେ ୪ ପାଞ୍ଚ ବଖରା ପୁରୁଣା ଚାଳ ଘର । ତାରି ସାମନାରେ ଗୋଠ ଗାଡିଆ ପୋଖରୀ କୂଳରେ ମାଟିକୁଦ (ଗମ୍ବୁଜାକାର) ଉପରେ ତୁଳସୀ ଅଛନ୍ତି ତାହାହିଁ ଦାସିଆଙ୍କ ସମାଧିପୀଠ । ତା'ଉପରେ ସ୍ମୃତି ଗୃହ ନିର୍ମିତ ହୋଇଛି, ନିର୍ମାଣ ବେଳେ ମାଟିତଳୁ ମହାବୀର ମୂର୍ତ୍ତି ଓ ଶିଳପୁଆଟିଏ ମିଳିଥିଲା, ତାହା ଏବେ ରାଧାମୋହନ ମଠରେ ଦାସିଆଙ୍କ ସ୍ମାରକୀଭାବେ ପୂଜା ପାଉଛନ୍ତି । ଉକ୍ତ ମଠର ବିଶେଷ ଜମିବାଡି ନାହିଁ । କେବଳ ନଡିଆ ଯାହା କିଛି ବିକ୍ରିହୁଏ ସେଥିରେ ମଠର ଅନ୍ୟାନ୍ୟ ଖର୍ଚ୍ଚ ଚଳିଯାଏ । ୨୦୦୮ ବନ୍ୟା ସମୟରେ ସମସ୍ତ ଗ୍ରାମବାସୀମାନଙ୍କୁ ଏହି ମଠରେ ପ୍ରସାଦ ରନ୍ଧା ଯାଇ ବିତରଣ କରାଯାଇଥିଲା । ପୂର୍ବେ ଦାସିଆଙ୍କ ବଂଶଧରଙ୍କ ନିର୍ମିତ ତାଙ୍କ ସମାଧି ପୀଠଟିରେ ମଧ୍ୟ ଏହି ମଠ ପକ୍ଷରୁ ଫୁଲ ପାଣି ଦିଆଯାଇ ସଂକୀର୍ତ୍ତନ ହେଉଥିଲା ।

ପରବର୍ତ୍ତୀ କାଳରେ ୨୦୦୯ ମସିହାରୁ ଭକ୍ତ ଦାସିଆ ସ୍ମୃତି କମିଟି ପକ୍ଷରୁ ଜୁନ୍ ୨୯ରୁ ଜୁଲାଇ ୨ ବାହୁଡା ମଧ୍ୟରେ ଏଠାରେ ଏକ ସୁନ୍ଦର ମନ୍ଦିରରେ ଶ୍ରୀଜଗନ୍ନାଥ ବଳଦେବ ସୁଭଦ୍ରା ସୁଦର୍ଶନାଦି ଚତୁର୍ଦ୍ଧାମୂର୍ତ୍ତି, ବିଷ୍ଣୁ ମନ୍ଦିରର ପାର୍ଶ୍ୱବିଗ୍ରହଙ୍କ ସହ ମନ୍ଦିର ସାମନାରେ ଦାସିଆ ଯୋଡ ହସ୍ତରେ ନାରିକେଳ ଧରି ଶ୍ରୀଜଗନ୍ନାଥଙ୍କୁ ଯାଚୁ ଥିବାର ମୂର୍ତ୍ତି ନିର୍ମିତ ହୋଇ ନିୟମିତ ପୂଜାର୍ଚ୍ଚନା, ପ୍ରସାଦ ନିବେଦନ କରାଯାଉଛି । ତତ୍ ସହ ତୁଳସୀ ଉଦ୍ୟାନ, ଭକ୍ତ ବିଶ୍ରାମାଗାର, ପାଠାଗାର, ସଭାମଂଚ, ଲକ୍ଷ୍ମୀ, ହନୁମାନ ମନ୍ଦିରାଦି ମଧ୍ୟ ନିର୍ମିତ ହୋଇ ଶ୍ରୀକ୍ଷେତ୍ରକୁ ମହାପ୍ରଭୁଙ୍କ ସେବା ପାଇଁ ତୁଳସୀ, ପଦ୍ମଫୁଲ ଆଦି ଯାଉଛି । ଗଜପତି ମହାରାଜ ଶ୍ରୀଦିବ୍ୟସିଂହ ଦେବଙ୍କ ନିର୍ଦ୍ଦେଶାନୁସାରେ ଏଠାରୁ ଫୁଲ ତୁଳସୀ ସହ ନଡିଆଟିଏ ମଧ୍ୟ ମହାପ୍ରଭୁଙ୍କ ପାଇଁ ପଠାଯାଉଛି । ସର୍ବୋପରି ପୂର୍ବାପେକ୍ଷା ସ୍ଥାନଟିର ଅନେକ ଉନ୍ନତି ସାଧିତ ହୋଇଥିଲେ ମଧ୍ୟ ଦାସିଆ ସମାଧି ସ୍ମୃତିପୀଠ ସହ ବହୁ କାଳରୁ ଅଙ୍ଗାଙ୍ଗୀ ଜଡିତ ଶ୍ରୀରାଧାମୋହନ ମଠଟି ପ୍ରତି କାହାର ବିଶେଷ ନଜର ପଡୁନାହିଁ । ଏହି ସର୍ବପ୍ରାଚୀନ ମଠଟି ବର୍ତ୍ତମାନ ମଧ୍ୟ ଉପେକ୍ଷିତ । ସେଠାର ପ୍ରାଚୀନ ରାଧାମୋହନ ମଠରେ ଶ୍ରୀଜଗନ୍ନାଥ ଓ ଶ୍ରୀଚୈତନ୍ୟଙ୍କ ବିଗ୍ରହ ମଧ୍ୟ ନିତ୍ୟ ବୈଷ୍ଣବମାନଙ୍କ ଦ୍ୱାରା ଆରାଧିତ । ସ୍ୱୟଂ ଶ୍ରୀଜଗନ୍ନାଥ ହିଁ ଭକ୍ତ ଭାବ ଧାରୀ ଶ୍ରୀଗୌରାଙ୍ଗ ହୋଇ ନିଜ ସେବା ନିଜ ଭକ୍ତି କିପରି ହେବ ତାହା ଶିକ୍ଷା ଦେଇଥିଲେ । ଏଣୁ ଆଶ୍ଚର୍ଯ୍ୟ କଥା ଭକ୍ତ ଦାସିଆଙ୍କ ମୂର୍ତ୍ତି କିପରି ହେବ ଏହାର ଯୋଜନା ସ୍ୱୟଂ ଶ୍ରୀଗୌର ଜଗନ୍ନାଥ ଶ୍ରୀକୃଷ୍ଣ ଚୈତନ୍ୟ ଦାସ ନାମଧାରୀ ଏକ ଯୁବକ ରୂପେ ଆସି ଶ୍ରୀରାଧାମୋହନ ମଠର ମହନ୍ତଙ୍କଠାରୁ ଦୀକ୍ଷା ନେଇ ସେଠି କିଛି ଦିନ ସେବାକରି ପରେ ଗୁଜୁରାଟର ଏକ ମହାବୀର ମନ୍ଦିରରେ ଯାଇ ରହିଲେ । ସେଠି ଏକ ପାଠାଗାରରେ ପୁସ୍ତକ ଅଧ୍ୟୟନ ସମୟରେ 'ଭକ୍ତମାଳା' ପୁସ୍ତିକାଟିଏ ଦେଖିଲେ, ସେଥିରେ ଦାସିଆଙ୍କର ଏକ ଛୋଟ ଚିତ୍ର ଥିଲା । ତା'ରି ଅବଲମ୍ବନରେ ଦାସିଆଙ୍କର ୫ଟି ଚିତ୍ର ଅଙ୍କାଯାଇ ବର୍ତ୍ତମାନ ବାଲିଗାଁ ଦାସିଆ ସମାଧିପୀଠ ସନ୍ନିକଟ ଶ୍ରୀଜଗନ୍ନାଥ ମନ୍ଦିର ସାମନାରେ ସ୍ଥାପନ କରାଯାଇଥିବା ଦାସିଆଙ୍କ ପୂର୍ଣ୍ଣାବୟବ ମୂର୍ତ୍ତିଟିଏ ରାଜ୍ୟ ସଂସ୍କୃତି ବିଭାଗ ଦ୍ୱାରା ବଛାଯାଇ ସେହିପରି ଭାବେ ନିର୍ମାଣ କରାଯାଇ ସେଠାରେ ସ୍ଥାପନ କରାଯାଇଛି । ଏହା ମହାପ୍ରଭୁଙ୍କ ଇଛା ବୋଲି ମନେହୁଏ ।

ସ୍ଥାନୀୟ ଲୋକ ଓ ବିଧାୟକଙ୍କ ଚେଷ୍ଟାରେ ବର୍ତ୍ତମାନ ଦାସିଆ ପୀଠଟି ଏକ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ପାଇଛି । ଦାସିଆ ଥିଲେ ଅଚଳା ଦାସ୍ୟ ଭକ୍ତିର ବିଗ୍ରହ । ତାଙ୍କ ଦୃଢ ଭକ୍ତି ସମ୍ବନ୍ଧରେ 'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥ ଲେଖକ ରାମଦାସ ମହାଶୟ ଲେଖିଛନ୍ତି ସେ ଶ୍ରୀଜଗନ୍ନାଥଙ୍କୁ କ'ଣ ମାଗିଥିଲେ , ଯେଉଁଥିରୁ ଦାସିଆଙ୍କ ଅନନ୍ୟ ଭକ୍ତିର ପରିଚୟ ମିଳିଥାଏ ।

ବରେ ମୋ ପ୍ରୟୋଜନ ନାହିଁ । ଏତକ ଦେବ ଭାବଗ୍ରାହୀ
ତୋ ଭକ୍ତ ମାନଙ୍କ ଚରଣେ । ମୋ ମନ ଥାଉ ଅନୁକ୍ଷଣେ ।
ଯେବେ ମୁଁ ମନରେ ଭାବିବି । ତୁମ୍ଭ ଦର୍ଶନ ପାଉଥିବି ।
ଏ ବର ମୋତେ ଆଜ୍ଞା ହେଉ । ଅଧିକ ଲୋଡା ନାହିଁ ଆଉ ।

ବୁଢୀ ବଗିଚା, ଜିଲ୍ଲା– ଖୋର୍ଦ୍ଧା



# ବହୁମୁଖୀ ପ୍ରତିଭାର ପ୍ରତୀକ ବିଜୁ ପଟ୍ଟନାୟକ

**ଶ୍ରୀନିବାସ ଆଚାର୍ଯ୍ୟ**



ଜନନୀ ଜନ୍ମଭୂମିଶ୍ଚ, ସ୍ୱର୍ଗାଦପି ଗରିୟସୀ ।

ଏହି ଶ୍ଳୋକର ସାରମର୍ମକୁ ଯେଉଁମାନେ ଜୀବନର ବ୍ରତ ରୂପେ ଆଦରି ନେଇଥାନ୍ତି ଏହାକୁ ବାସ୍ତବ ରୂପରେ କାର୍ଯ୍ୟ କରିବା ସହ ମାନବ ସମାଜର କଲ୍ୟାଣରେ ବିନିଯୋଗ କରି ତାଙ୍କ ଶରୀରର ପ୍ରତ୍ୟେକ ରକ୍ତ କଣିକାରେ ଏହାକୁ ଜାଗ୍ରତ କରିଛନ୍ତି, ସେ ହେଉଛନ୍ତି ସମଗ୍ର ଓଡ଼ିଶାବାସୀଙ୍କର ପୂଜ୍ୟ ଅଶେଷ ପ୍ରତିଭାର ଅଧିକାରୀ ସ୍ୱର୍ଗତ ବିଜୁ ପଟ୍ଟନାୟକ । ନୂତନ ଓଡ଼ିଶା ନିର୍ମାଣ ପାଇଁ ତାଙ୍କର ଉତ୍ସର୍ଗୀକୃତ ଅତୁଳନୀୟ ଅବଦାନର ପଟାନ୍ତର ନାହିଁ । ଜାତି, ଧର୍ମ, ବର୍ଣ୍ଣ, ଧନୀ, ଦରିଦ୍ର ଓ ରାଜନୈତିକ ନିର୍ବିଶେଷରେ ସେ ଥିଲେ ଓଡ଼ିଶାବାସୀଙ୍କର ପ୍ରାଣବିନ୍ଦୁ ସଦୃଶ । ଓଡ଼ିଶା ଭୂଖଣ୍ଡର ସାମାଜିକ, ଆର୍ଥିକ, ଭୌଗୋଳିକ ଓ ରାଜନୈତିକ ମାନଦଣ୍ଡର ବୈପ୍ଳବିକ ପରିବର୍ତ୍ତନ କରିବାରେ ସେ ଥିଲେ ଅଦ୍ୱିତୀୟ ଓଡ଼ିଆ ସନ୍ତାନ । ଓଡ଼ିଆ ଜାତି ଓ ଓଡ଼ିଶାର ଧ୍ୱଜାକୁ ବିଶ୍ୱ ଦରବାରରେ ସୁପରିଚିତ କରାଇବାରେ ସେ ଥିଲେ ପ୍ରଥମ ପୁରୁଷ । କେବଳ ତାଙ୍କରି ଅସୀମ ସାହସିକତା, ନିର୍ଭୀକତା, ଅତୁଳନୀୟ ତ୍ୟାଗ, ନିରବଚ୍ଛିନ୍ନ ସାଧନା, ନିଷ୍ଠାପର କର୍ତ୍ତବ୍ୟ, ବଳିଷ୍ଠ ନେତୃତ୍ୱ ଓ ନିଃସ୍ୱାର୍ଥପର ସେବା ଫଳରେ ସେ ହୋଇ ପାରିଥିଲେ ସମଗ୍ର ବିଶ୍ୱବାସୀଙ୍କ ପାଖରେ ଲବ୍ଧ ପ୍ରତିଷ୍ଠିତ । ଏଥିପାଇଁ ଓଡ଼ିଶାବାସୀ ଗର୍ବିତ ଓ ଗୌରବାନ୍ୱିତ ।

୧୯୧୬ ମସିହା ମାର୍ଚ୍ଚ ମାସର ୫ ତାରିଖଟି ଥିଲା ଓଡ଼ିଶା ପାଇଁ ଏକ ପବିତ୍ର ତଥା ଅମୃତମୟ ଦିବସ । ଏହି ଦିବସରେ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଅଶାଲତାଙ୍କ ଔରସରୁ କଟକର ତୁଳସୀପୁରସ୍ଥିତ ଆନନ୍ଦ ଭବନରେ ଜନ୍ମଲାଭ କରିଥିଲେ ବିଜୁ ପଟ୍ଟନାୟକ । ପିତାଥିଲେ ଉଚ୍ଚ ଶିକ୍ଷିତ ଓ ସରକାରୀ କର୍ମଚାରୀ । ମାତା ଥିଲେ ସୁଗୃହିଣୀ ଧର୍ମପରାୟଣା ଓ ଆଦର୍ଶ ମହିଳା । ୩ ଭାଇ ଓ ଗୋଟିଏ ଭଉଣୀ ମଧ୍ୟରେ ସେ ଥିଲେ ଦ୍ୱିତୀୟ ସନ୍ତାନ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି, ଭବିଷ୍ୟତରେ ବିଜୁବାବୁ ଜଣେ ମହାପୁରୁଷ ହେବାର ଆଭାସ ବାଲ୍ୟଜୀବନରୁ ଜଣାପଡିଥିଲା । ବାଲ୍ୟଜୀବନରେ ତାଙ୍କ ମାତା ତାଙ୍କୁ ଜାତି ଓ ଦେଶ ପ୍ରୀତିର

କାହାଣୀମାନ ଶୁଣାଇଥିଲେ। ପିତାଙ୍କର ଆଦର୍ଶବାଦୀ କାର୍ଯ୍ୟକଳାପ, ପରୋପକାରୀ ଗୁଣଗୁଡିକରେ ସେ ଅନୁପ୍ରାଣିତ ହୋଇଥିଲେ। ପିତାମାତାଙ୍କ ନୀତି ଆଦର୍ଶ, ଅଜା, ଆଈଙ୍କର ଶୃଙ୍ଖଳିତ ମହତଗୁଣ ତାଙ୍କ ଭବିଷ୍ୟତ ଜୀବନର ପଥପ୍ରଦର୍ଶକ ହୋଇଥିଲା । ବାଲ୍ୟ ଜୀବନରେ ବିଜୁବାବୁଙ୍କର ନିର୍ଭୀକତା, ଦୁସାହସିକତା, ଦୃଢ଼ମନା ଓ ବୀରତ୍ୱ ଇତ୍ୟାଦି ଗୁଣଗୁଡିକର ବିକଶିତ ହୋଇଥିଲା।

ଜାତିର ପିତା ମହାତ୍ମା ଗାନ୍ଧୀ କଟକର ସ୍ୱରାଜ ଆଶ୍ରମରେ ଥିଲାବେଳେ, ବିଜୁବାବୁ ତାଙ୍କୁ ଦେଖା କରିବାକୁ ଯାଇଥିଲେ । ବିପୁଳ ଜନଗହଳିରେ ଠେଲାପେଲା ମଧ୍ୟରେ ଯିବା ସମୟରେ ଗୋରା ସିପାହୀର ଲାଠିମାଡରେ ତାଙ୍କ ମୁଣ୍ଡ ଫାଟି ରକ୍ତ ସ୍ରାବ ହେଉଥିଲା। ଧୈର୍ଯ୍ୟର ସହ ରକ୍ତଭିଜା ମୁଣ୍ଡକୁ ହାତରେ ଜାବୁଡିଧରି ମଧ୍ୟ ଛୁଟି ଚାଲିଥିଲେ ଗାନ୍ଧୀଙ୍କ ଦର୍ଶନାଭିଳାଷେ। କଟକର ମିଶନ ସ୍କୁଲରେ ପଢ଼ିଲାବେଳେ ଜଣେ ଇଂରେଜ ସାହେବ ବିମାନରେ ଆସିଥିଲେ। ସେହି ବିମାନଟି ସ୍କୁଲ ପଡିଆରେ ଅବତରଣ କରିଥିଲା। ସେହି ବିମାନକୁ କେତେଜଣ ପୋଲିସ ଜଗିଥିଲେ ମଧ୍ୟ ବିଜୁବାବୁ ସେହି ବିମାନରେ ହାତ ଲଗାଇ ଦେଇଥିଲେ। ଏହା ଦେଖି ଜଗୁଆଳି ପୋଲିସ ବିଜୁବାବୁଙ୍କୁ ଭର୍ତ୍ସନା କରିବା ସଂଗେସଂଗେ ବେତ୍ରାଘାତ କରିଥିଲେ। ଏହାର ପ୍ରତି ଜବାବରେ ସେ ଜଣେ ଦକ୍ଷବିମାନ ଚାଳକ ହେବେ ବୋଲି ଶପଥ କରିଥିଲେ। ଏଥିରୁ ବିଜୁ ବାବୁଙ୍କର ଦୃଢ଼ମନା ଓ ଜିଦ୍‌ଖୋର ମନୋବୃତ୍ତିର ପ୍ରମାଣ ମିଳେ। ରେଭେନ୍‌ସା କଲେଜରେ ପଢୁଥିବା ବେଳେ ଦୁଇଜଣ ସାଥୀଙ୍କ ସହିତ କଟକରୁ ସୁଦୂର ପେଶୱାରକୁ ସାଇକଲରେ ଯାତ୍ରା କରିଥିଲେ। ଏଥିରୁ ତାଙ୍କର ଅସୀମ ସାହସିକତା ଓ ବୀରତ୍ୱର ପରିଚୟ ଜଣାପଡେ। ଛାତ୍ର ଜୀବନରେ ସେ ଥିଲେ ଶିକ୍ଷକମାନଙ୍କର ପ୍ରିୟଭାଜନ ଓ ସାଙ୍ଗସାଥୀମାନଙ୍କୁ ସ୍ନେହ, ଶ୍ରଦ୍ଧା ଓ ପ୍ରେମର ଡୋରିରେ ବାନ୍ଧି ରଖିଥିଲେ। ଖେଳ କସରତ ଓ ସାଇକଲ ଯାତ୍ରାଥିଲା ତାଙ୍କର ବେଶୀ ଆଗ୍ରହ। ଜଣେ ଦକ୍ଷ ସାଂଗଠନିକ ହେବାର କୌଶଳ ଶିକ୍ଷାଲାଭ କରିଥିଲେ ଶିକ୍ଷାକ୍ଷେତ୍ରରୁ। ନିଜ ଜନ୍ମଭୂମି ଓ ଭାଷାର ସର୍ବାଙ୍ଗୀନ ଉନ୍ନତି ଥିଲା ତାଙ୍କ ଜୀବନର ପରମ ବ୍ରତ।

କଟକସ୍ଥିତ ମିଶନ ବିଦ୍ୟାଳୟରେ ବାଲ୍ୟଶିକ୍ଷା ସମାପ୍ତ କରି ରେଭେନ୍ସା ବିଶ୍ୱବିଦ୍ୟାଳୟରେ ଆଇ.ଏସ୍‌ସି ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ। ବି.ଏସ୍‌ସି ପଢୁଥିବା ବେଳେ ସେ ଉଡାଜାହାଜ ଚଳାଇବା ତାଲିମ ପାଇଁ ମନ ବଳାଇଥିଲେ। ଦୀର୍ଘ ୩ ବର୍ଷଧରି ବିମାନଚାଳକ ତାଲିମ୍ ଶିକ୍ଷାଲାଭ କରିଥିଲେ। ଉଚ୍ଚ ସୋପାନରେ ଉପନୀତ ପାଇଁ ସମସ୍ତ ଶିକ୍ଷାନୁଷ୍ଠାନ ଥିଲା ବିଜୁବାବୁଙ୍କ ପାଇଁ ଏକ ସାଧନାପୀଠ।

ଈଶ୍ୱରଙ୍କର ଅଶେଷକୃପା, ଗୁରୁଜନମାନଙ୍କର ଶୁଭ ଆଶୀର୍ବାଦ ଓ ପ୍ରଗାଢ଼ ଇଚ୍ଛାଶକ୍ତି ଓ ନିରବଚ୍ଛିନ୍ନ କର୍ତ୍ତବ୍ୟ ଫଳରେ ସେ ଜଣେ ଯୁବ ପାଇଲଟ ରୂପେ Indian National Airwaysରେ ନିଯୁକ୍ତି ପାଇଥିଲେ। ପରବର୍ତ୍ତୀ ସମୟରେ ଜଣେ ସୁଦକ୍ଷ ବୀର, ସାହସୀ ପାଇଲଟ ହିସାବରେ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିବାର ସୌଭାଗ୍ୟ ଲାଭ କରିଥିଲେ। ତତ୍କାଳୀନ ସମୟରେ ଗୋରା ଲୋକଙ୍କଦ୍ୱାରା ବହୁ ପ୍ରଶଂସାର ପାତ୍ର ହୋଇ ପାରିଥିଲେ। ସେ ପାଇଲଟ୍ ଥାଇ ବହୁ ଅସାଧ୍ୟ କାର୍ଯ୍ୟକୁ ସୁଚାରୁରୂପେ ସମ୍ପାଦନ କରି ବିଶ୍ୱ ଦରବାରରେ ଓଡ଼ିଆ ପୁଅର ନାମ ଓ ଯଶ ରଖିଥିଲେ।

୧୯୩୯ ମସିହାରେ ତାଙ୍କର ଜ୍ଞାନ ଦେବୀଙ୍କ ସହିତ ବିବାହ ହୋଇଥିଲା। ସେତେବେଳେ ଜ୍ଞାନ ଦେବୀଙ୍କ ପିତାଙ୍କର ଏମ୍.ଏନ୍ ରାଧାକ୍ରିଷ୍ଣନ ଆଣ୍ଡ କୋ ଲିମିଟେଡ ନାମକ ଏକ ବ୍ୟବସାୟ ସଂସ୍ଥା ଥିଲା। ବିବାହର ୩ବର୍ଷ ପରେ ଇଂରେଜ ସରକାରଙ୍କ ଦ୍ୱାରା ଗିରଫ ହୋଇଥିଲେ। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବିଜୁବାବୁ ନିଜ ଜୀବନକୁ ବିପନ୍ନ କରି ଚୀନ୍‌ର କେତେକ ବିପ୍ଳବୀଙ୍କୁ ସାହାଯ୍ୟ କରିଥିଲେ।

ଆମ ଦେଶକୁ ଏକ ନିଷ୍ଠୁର ଓ ଅତ୍ୟାଚାରୀ ଇଂରେଜ ସରକାର ଶାସନ କରୁଥିଲେ। ତାଙ୍କର ବେପରୁଆ ଶାସନ ଓ ଶୋଷଣ ନୀତି ଫଳରେ ଆମ ଦେଶର ସାମାଜିକ, ଆର୍ଥିକ, ରାଜନୈତିକ ଓ ଭୌଗୋଳିକ ମାନଦଣ୍ଡ କ୍ରମଶଃ ଦୁର୍ବଳ ଆଡକୁ ମୁହାଁଇଥିଲା। ଇଂରେଜ ସରକାରଙ୍କୁ ବିତାଡିତ କରି ଏକ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ର ଗଠନ ପାଇଁ ଭାରତୀୟମାନଙ୍କ ଦ୍ୱାରା ଚାଲିଥିଲା ସଂଗ୍ରାମ। ଏହି ସଂଗ୍ରାମର କର୍ଣ୍ଣଧାର ଥିଲେ ଆମ ଜାତିର ପିତା ମହାତ୍ମା ଗାନ୍ଧୀ। ଗାନ୍ଧିଜୀଙ୍କର କର ବା ମର ଡାକରାରେ ସମସ୍ତ

ଭାରତବାସୀ ବିଶ୍ୱାସ ରଖି ଜାରି ରଖିଥିଲେ ସେହି ମୁକ୍ତିକାମୀ ଆନ୍ଦୋଳନ। ଏହି ଆନ୍ଦୋଳନରେ କେନ୍ଦ୍ରୀୟ ନେତୃବର୍ଗ ଥିଲେ ଜୟପ୍ରକାଶ ନାରାୟଣ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଜବାହରଲାଲ ନେହେରୁ, ଲାଲବାହାଦୁର ଶାସ୍ତ୍ରୀ, ବାଳ ଗଙ୍ଗାଧର ତିଳକ ଓ ଡ. ହରେକୃଷ୍ଣ ମହତାବ । ପ୍ରଥମେ ବିଜୁବାବୁଙ୍କର ସାକ୍ଷାତ ହୋଇଥିଲା ଜୟପ୍ରକାଶ ନାରାୟଣଙ୍କ ସହିତ ଓ ସେ ଥିଲେ ବିଜୁବାବୁଙ୍କର ପରମ ରାଜନୈତିକ ଗୁରୁ। ମହାତ୍ମା ଗାନ୍ଧୀ ଓ ପଣ୍ଡିତ ନେହେରୁଙ୍କର ନୀତି ଆଦର୍ଶରେ ଅନୁପ୍ରାଣିତ ହୋଇ ପାଇଲଟ ଚାକିରି ଛାଡି ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ କାର୍ଯ୍ୟକରିବାକୁ ଚାହିଁଥିଲେ ମଧ୍ୟ ପୂଜ୍ୟଗୁରୁ ଜୟପ୍ରକାଶ ନାରାୟଣ ବାରଣ କରିଥିଲେ। ଅପର ପକ୍ଷରେ ଉତ୍କଳ କେଶରୀ ଡ.ହରେକୃଷ୍ଣ ମହତାବ, ଉତ୍କଳମଣି ଗୋପବନ୍ଧୁ ଦାସ ଓ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସହିତ ତାଙ୍କର ଥିଲା ନିବିଡ ସମ୍ପର୍କ। ଇଂରେଜ ସରକାରଙ୍କର କୁଶାସନର ତାଡନାକୁ ହୃଦୟଙ୍ଗମ କରି ଦୃଢ଼ମନା, ଅଟଳ ବିଶ୍ୱାସୀ ଓ ବୀର ସଂଗ୍ରାମୀ ବିଜୁବାବୁ ସଂକଳ୍ପ କରିଥିଲେ ଦେଶ ସ୍ୱାଧୀନ ହେବା ଏକାନ୍ତ ଆବଶ୍ୟକ। ଇଂରେଜ ଶାସନାଧୀନରେ ଚାକିରି କରି ମଧ୍ୟ ସେ ପରୋକ୍ଷ ଭାବରେ କାର୍ଯ୍ୟ କରିଥିଲେ ସଂଗ୍ରାମର ସପକ୍ଷରେ। ସ୍ୱାଧୀନତା ସଂଗ୍ରାମର ସମସ୍ତ ଗୁପ୍ତ ପ୍ରଚାରପତ୍ର ତାଙ୍କ ବିମାନରେ ନେଇ ବିତରଣ କରୁଥିଲେ। ତେଣୁ ସେ ହୋଇଗଲେ ସର୍ବଭାରତୀୟ ସ୍ତରରେ ଅତ୍ୟନ୍ତ ଲୋକପ୍ରିୟ।

ବିଜୁବାବୁଙ୍କ ସମସ୍ତ ଗୁପ୍ତ କାର୍ଯ୍ୟ ଇଂରେଜ ସରକାର ଜାଣିବାପରେ ଦିଲ୍ଲୀରେ ଗିରଫକରି ଲାଲକିଲ୍ଲା ଜେଲରେ ବନ୍ଦୀକରି ରଖିଥିଲେ। ପରେ ଫିରୋଜବାଦ ଜେଲରେ କେତେଦିନ ରହିବାପରେ କଟକ ଜେଲକୁ ସ୍ଥାନାନ୍ତରିତ ହୋଇଥିଲେ। କଟକ ଜେଲରୁ ମୁକ୍ତି ପାଇ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରି ଜଣେ ନେତୃସ୍ଥାନୀୟ ଟାଣୁଆ ନେତା ହୋଇପାରିଥିଲେ। ଇଣ୍ଡୋନେସିଆରେ ଚାଲିଥିଲା ସ୍ୱାଧୀନତା ଆନ୍ଦୋଳନ। ଇଣ୍ଡୋନେସିଆକୁ ସ୍ୱାଧୀନ କରିବା ପାଇଁ ବିଜୁବାବୁଙ୍କର ଥିଲା ଅତୁଳନୀୟ ଅବଦାନ। ପଣ୍ଡିତ ଜବାହରଲାଲଙ୍କ ପରାମର୍ଶକ୍ରମେ ତାଙ୍କ ପୁରୁଣା ଡାକୋଟା ବିମାନରେ ଇଣ୍ଡୋନେସିଆ ଯାଇ ଡ.ସୁକର୍ଣ୍ଣ, ଡ.ଅହମ୍ମଦ ହଟ୍ଟା ଓ ଡଃ. ସାହାରିୟରଙ୍କୁ ଶତ୍ରୁମାନଙ୍କ କବଳରୁ ରେଙ୍ଗୁନ ବାଟଦେଇ ଭାରତକୁ ନେଇ ଆସିଥିଲେ। ସେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କର ଜୀବନ ରକ୍ଷାକରିବା ଅବସରରେ ଶତ୍ରୁପକ୍ଷର ବନ୍ଧୁକର ଗୁଳି ଓ ବୋମା ତାଙ୍କର କିଛି କରିପାରିଲା ନାହିଁ। ବିଜୁବାବୁ ଶତ୍ରୁପକ୍ଷର ଜବାବରେ ପ୍ରତ୍ୟୁତ୍ତର ଦେଇ କହିଥିଲେ, ଯଦି ମୋ ବିମାନକୁ ଗୁଳି କରାଯାଏ ତେବେ ଭାରତର ଆକାଶପଥରୁ ସମସ୍ତ ଡଚ୍ ବିମାନକୁ ଧ୍ୱଂସ କରିବାକୁ ଭାରତ ପଛାଇବ ନାହିଁ।

ଇଣ୍ଡୋନେସିଆର ଗଣତନ୍ତ୍ର ସରକାର ବିଜୁବାବୁଙ୍କର ନିର୍ଭୀକତା, ସାହସିକତା ଓ ବିଚକ୍ଷଣ ଜାହାଜ ଚାଳକର ରଣକୌଶଳରେ ଖୁସି ହୋଇ ଭୂରିଭୂରି ପ୍ରଶଂସା କରିଥିଲେ। ବିଜୁବାବୁଙ୍କର ଏପରି ଦୁଃସାହସିକ କାର୍ଯ୍ୟରେ ମୁଗ୍ଧହୋଇ ଇଣ୍ଡୋନେସିଆ ସରକାର ଅନେକ ପୁରସ୍କାର ପ୍ରଦାନ କରିଥିଲେ, ଯାହାର ମୂଲ୍ୟ ପ୍ରାୟ ୫୦୦କୋଟି ଟଙ୍କା ହେବ। ବିଜୁବାବୁ ଏହାକୁ ପ୍ରତ୍ୟାଖାନ କରିଥିଲେ । ଇଣ୍ଡୋନେସିଆ ସରକାର ବିଜୁବାବୁଙ୍କୁ ପୁନରାୟ ସବୁଠାରୁ ବଡ ସମ୍ମାନ 'ଭୂମିପୁତ୍ର' ଉପାଧିରେ ସମ୍ମାନିତ କରିଥିଲେ।

ବିଜୁବାବୁ ୧୯୬୧ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ତାଙ୍କର ବଳିଷ୍ଠ ନେତୃତ୍ୱ, କୁଶଳୀ କୂଟନୀତି ଓ ଜନହିତକର କାର୍ଯ୍ୟରେ ଆଶାପୋଷଣ କରି ଓଡ଼ିଶାବାସୀ ବିଜୟ କରାଇଥିଲେ। ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହି ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ତଥା ଶିଳ୍ପ, କଳକାରଖାନା, ଖଣି, ବନ୍ଦର, ରାସ୍ତାଘାଟ, ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ ଇତ୍ୟାଦି ନିର୍ମାଣର ଶୁଭାରମ୍ଭ କରିଥିଲେ।

ଦେଶ ଓ ଜାତିର ଉନ୍ନତିମୂଳକ କାର୍ଯ୍ୟକୁ ବାସ୍ତବ ରୂପରେ ପରିଣତ କରିବାକୁ ପ୍ରୟାସ ଜାରି ରଖିଥିଲେ। ତାଙ୍କରି ବଳିଷ୍ଠ ନେତୃତ୍ୱ, ଅସୀମ ସାହସ ବଳରେ ନିର୍ମାଣ କରିଥିଲେ ପାରାଦୀପ ବନ୍ଦର, ଏକ୍ସପ୍ରେସ ହାଇୱେ, ବାଲିମେଳା ତାପଜ ବିଦ୍ୟୁତ କାରଖାନା, ତାଳଚେର ତାପଜ ପ୍ରକଳ୍ପ, ସୁନାବେଡା ମିଗ୍‌ବିମାନ କାରଖାନା ସମେତ ପ୍ରତ୍ୟେକ ଜିଲ୍ଲା ସ୍ତରରେ ଶିଳ୍ପ କଳକାରଖାନା ନିର୍ମାଣରେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିଗଲା ଇତିହାସ ପୃଷ୍ଠାରେ।

ସେ ଥିଲେ ନୂତନ ଓଡ଼ିଶାର ନିର୍ମାତା। ସବୁଠାରୁ ସେ ଭଲପାଉଥିଲେ 'କଳିଙ୍ଗ' ଶବ୍ଦକୁ । ଅତୀତରେ ଓଡ଼ିଶାର

ନାମଥିଲା କଳିଙ୍ଗ । ତେଣୁ କଳିଙ୍ଗ ନାମକୁ ସାର୍ଥକ କରିବା ପାଇଁ ସେ ଗଢ଼ିଥିଲେ କଳିଙ୍ଗ ନାମରେ ଅଶେଷ ପ୍ରକଳ୍ପ । ସେଗୁଡିକ ହେଲା କଳିଙ୍ଗ ଟ୍ୟୁବ୍ସ, କଳିଙ୍ଗ ପତ୍ରିକା, କଳିଙ୍ଗ ଏୟାରୱେଜ, କଳିଙ୍ଗ ପୁରସ୍କାର, କଳିଙ୍ଗ ରେଫ୍ରିଜେରେଟର ଇତ୍ୟାଦି ।

ଅନନ୍ତ ଆକାଶ ଯେପରି ଅସୀମ, ଅସରନ୍ତି ଠିକ୍ ସେପରି ବିଜୁବାବୁଙ୍କର ଓଡ଼ିଶା ପାଇଁ ଅବଦାନ ଅସୀମ, ଅସରନ୍ତି ଓ ଅମାପ । ବିଜୁବାବୁଙ୍କର ଗଠନମୂଳକ କାର୍ଯ୍ୟ ଓଡ଼ିଶାର ମାନଚିତ୍ରକୁ ସମ୍ପୂର୍ଣ୍ଣ ରୂପେ ପରିବର୍ତ୍ତନ କରି ଏକ ନୂତନ ଓଡ଼ିଶା ଗଠନ କରିବାରେ ସମର୍ଥ ହୋଇପାରିଥିଲା । ପୂର୍ବରୁ ଥିବା ୧୩ଟି ଜିଲ୍ଲାକୁ ୩୦ଟି ଜିଲ୍ଲାରେ ପରିବର୍ତ୍ତନ କରାଇ ପ୍ରଶାସନ ବ୍ୟବସ୍ଥାକୁ ସରଳ କରିବାରେ ସେ ଥିଲେ ପ୍ରଥମ ।

ନାରୀମାନେ ଆତ୍ମନିର୍ଭରଶୀଳ ହୋଇପାରିଲେ ସମାଜର ଅଧିକାଂଶ ସମସ୍ୟା ସମାଧାନ ହୋଇପାରିବ ବୋଲି ବିଜୁବାବୁଙ୍କର ଥିଲା ଆତ୍ମବିଶ୍ୱାସ । ତେଣୁ ନାରୀଶିକ୍ଷା ଉପରେ ସେ ଗୁରୁତ୍ୱ ଦେଉଥିଲେ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମଧ୍ୟ ବାଳିକା ବିଦ୍ୟାଳୟ ଖୋଲିବା ସଂଗେ ସଂଗେ ସେମାନଙ୍କ ପାଇଁ ମାସିକ ବୃତ୍ତି ବ୍ୟବସ୍ଥା କରିଥିଲେ । ସେ ଥିଲେ ଭାରତର ପ୍ରଥମ ବ୍ୟକ୍ତି ଯେ କି ମହିଳାମାନେ ପଞ୍ଚାୟତ ନିର୍ବାଚନରେ ପ୍ରାର୍ଥୀ ହେବାର ଆଇନ ପ୍ରଣୟନ କରିଥିଲେ । ମହିଳା ଓ ହରିଜନ, ଆଦିବାସୀମାନେ ନିର୍ବାଚନରେ ପ୍ରାର୍ଥୀ ପାଇଁ ସ୍ଥାନ ସଂରକ୍ଷଣ ପାଇଁ ଆଇନ ପ୍ରଣୟନ କରିଥିଲେ । ତା'ଛଡା ମହିଳା ବିକାଶ ନିଗମ ମଧ୍ୟ ସ୍ଥାପନ କରିଥିଲେ ।

ଓଡ଼ିଶା ଭୂଖଣ୍ଡ, ଜାତି ଓ ଭାଷାର ଉନ୍ନତି ପାଇଁ ବିଜୁବାବୁ ତାଙ୍କ ସମଗ୍ର ଜୀବନଟିକୁ ଉତ୍ସର୍ଗ କରିଥିଲେ । ତେଣୁ ସଦାସର୍ବଦା ଦିଲ୍ଲୀ ପାର୍ଲିଆମେଣ୍ଟରେ ଓଡ଼ିଶା ପାଇଁ ଦୃଢ଼ ଦାବୀ କରିବା ସଂଗେ ସଂଗେ ଗଣମାଧ୍ୟମରେ ଓଡ଼ିଶାର ସମସ୍ତ ଅସୁବିଧା ସମାଧାନ ପାଇଁ ଦାବୀ କରୁଥିଲେ । ତାଙ୍କର ବଳିଷ୍ଠ ଉଦ୍ୟମ ଫଳରେ ଓଡ଼ିଶାର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହୋଇ ହଜାର ହଜାର ଯୁବକଯୁବତୀ କର୍ମନିଯୁକ୍ତି ପାଇଥିଲେ । ଓଡ଼ିଶାର ପୂର୍ବ ଗୌରବ, କଳା, ସଂସ୍କୃତି ଫେରାଇ ଆଣିବାରେ ସେ ସମର୍ଥ ହୋଇଥିଲେ । ଅତୀତରେ ସାଧବ ପୁଅ ଦେଶ ବିଦେଶରେ ବାଣିଜ୍ୟ କରି ଓଡ଼ିଶାକୁ ଏକ ବୈଭବଶାଳୀ ରାଜ୍ୟରେ ପରିଣତ କରିଥିଲେ । ସେହି ସ୍ମୃତିରେ ବିଜୁବାବୁ ବୋଇତ ବନ୍ଦାଣ ଉତ୍ସବର ଶୁଭାରମ୍ଭ କରିଥିଲେ ।

ନାରୀମାନଙ୍କୁ ସମାଜରେ ସମାନ ଅଧିକାର ଦେବା ପାଇଁ ବିଦ୍ୟାଳୟରେ ପିଲାମାନଙ୍କର ନାମ ଲେଖାଇଲାବେଳେ ପିତାଙ୍କ ନାମ ସହ ମାତାଙ୍କ ନାମ ଲେଖିବା ପାଇଁ ବ୍ୟବସ୍ଥା କରିଥିଲେ । ଯାହାକି ଆଜି ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଉଅଛି ।

ଆଜି ଆମ୍ଭମାନଙ୍କ ପାଖରେ ଉତ୍କଳପ୍ରେମୀ ଓ ଜନନାୟକ ବିଜୁବାବୁ ନାହାନ୍ତି ସତ କିନ୍ତୁ ତାଙ୍କର ଅମ୍ଳାନ ସ୍ମୃତି ରହିଗଲା ଅମର ହୋଇ ଯୁଗଯୁଗ ଧରି । ଆଜିର ନାଗରିକ ତାଙ୍କରି ନୀତି ଆଦର୍ଶରେ କାର୍ଯ୍ୟକରିବା ଏକାନ୍ତ କାମ୍ୟ ।

ପ୍ଲଟ୍ ନଂ.୭୮୫ / ୧୨୪୦
ଦୁର୍ଗାମାଧବ ନଗର, ଲେନ୍ ନଂ.୮,
ଭରତପୁର, ଭୁବନେଶ୍ୱର



# ଆଧ୍ୟାତ୍ମିକ ଓ ପ୍ରାକୃତିକ ସୌନ୍ଦର୍ଯ୍ୟର ସମନ୍ୱୟ ଶ୍ରୀନୀଳମାଧବ

କୃଷ୍ଣଚନ୍ଦ୍ର ସୁଆର



ଶ୍ରୀଜଗନ୍ନାଥଙ୍କର ଆଦି ରୂପ ଶ୍ରୀ ନୀଳମାଧବଙ୍କ ପୀଠ ଓଡିଶାର ପ୍ରାଚୀନ ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ଓ ପ୍ରସିଦ୍ଧ ଅଟେ ।

ନୟାଗଡ ଜିଲ୍ଲାର କଣ୍ଟିଲୋ ଗ୍ରାମରେ ପବିତ୍ର ମହାନଦୀ କୂଳରେ ଏହି ପୀଠ ଅବସ୍ଥିତ । ଏକଦା ଏହା ନୌବାଣିଜ୍ୟର ଏକ ପ୍ରମୁଖ କେନ୍ଦ୍ରସ୍ଥଳ ଥିଲା । ନୀଳମାଧବଙ୍କ ବ୍ୟତୀତ ଏହି କ୍ଷେତ୍ର କଂସା ପିତଳ ବାସନ ଶିଳ୍ପ ପାଇଁ ପ୍ରସିଦ୍ଧ ଅଟେ । ରାଜଧାନୀରୁ ପ୍ରାୟ ୮୦ କିଲୋମିଟର ଓ ନୟାଗଡଠାରୁ ମାତ୍ର ୩୦ କି.ମି. ଦୂରରେ ଏହା ଅବସ୍ଥିତ ।

ଇତିହାସରୁ ଜଣାଯାଏ ଏହି ଗ୍ରାମ ପର୍ବତ ପାହାଡ ଘେରା ଘଞ୍ଚ କଣ୍ଟାବଣ କଣ୍ଟେଇ କୋଳି ଗଛରେ ପରିପୂର୍ଣ୍ଣ ଥିବାରୁ ଏହାର ନାମ 'କଣ୍ଟିଲୋ' ହୋଇଛି । ମହାନଦୀର ଦକ୍ଷିଣ ପାର୍ଶ୍ୱ ତଥା ବ୍ରହ୍ମାଦି ପର୍ବତ ଉପରେ ନୀଳମାଧବଙ୍କ ମନ୍ଦିର ଅବସ୍ଥିତ । ସୁଉଚ୍ଚ ପର୍ବତର ପାଦକୁ ଛୁଇଁ ପୁଣ୍ୟତୋୟା ମହାନଦୀ କୁଳୁକୁଳୁ ନାଦ କରି ବହି ଯାଉଛି । ନଦୀଗର୍ଭଠାରୁ ପାହାଡର ଉଚ୍ଚତା ପ୍ରାୟ ଦୁଇଶହ ଫୁଟ ହେବ । ଏଠାକାର ସବୁଜ ବନାନୀ, ମହାନଦୀର ପାଣି, ପୀଠସ୍ଥଳୀ, ଦିଗନ୍ତ ବିସ୍ତାରି ପାହାଡ, ଚତୁଃପାର୍ଶ୍ୱର ବିଭିନ୍ନ ଦେବାଦେବୀ, ଶବରପଲ୍ଲୀ ଓ ସୁଉଚ୍ଚରୁ ଡିଆଁଡେଇଁ କରୁଥିବା ଅନେକ ମାଙ୍କଡ ସାଙ୍ଗକୁ ନୌକାବିହାରର ସ୍ୱର୍ଗୀୟ ସୁଷମା ଅତ୍ୟନ୍ତ ରମଣୀୟ ଓ ଏଠାକାର ସୂର୍ଯ୍ୟାସ୍ତ ଅତ୍ୟନ୍ତ ଚିତ୍ତାକର୍ଷକ ।

ମନ୍ଦିରଟି ବଉଳମାଳା ପଥରରେ ତିଆରି । ଅନୁମାନ କରାଯାଏ, ଏହି ମନ୍ଦିର ପୁରୀ, କୋଣାର୍କ, ଭୁବନେଶ୍ୱର ମନ୍ଦିରମାନଙ୍କ ନିର୍ମାଣ କାଳର ପୂର୍ବରୁ ନିର୍ମିତ । ବହୁ କାଳ ପୂର୍ବେ କଣ୍ଟିଲୋ ବୌଦ ରାଜ୍ୟ ଅନ୍ତର୍ଗତ ଥିଲା । ତେଣୁ ବୌଦର କୌଣସି ରାଜା ଏହି ମନ୍ଦିର ନିର୍ମାଣ କରିଥିବେ ବୋଲି ଲୋକ

ବିଶ୍ୱାସ ରହିଛି । ଏଠାରେ ନୀଳମାଧବ ଶବର ଦେବତା ରୂପେ ପରିଚିତ । ତାଙ୍କ ବାମ ପାଦ ନଖରୁ ଅତି ଛୋଟିଆ ଝରଣା ଅନବରତ ବହି ଯାଉଛି । ତେଣୁ ପୁରାଣ ବର୍ଣ୍ଣିତ ବିଷ୍ଣୁ ନଖ କୋଣରୁ ଗଙ୍ଗା ଏଠାରେ ଜୀବନ୍ତ ବୋଲି ଅନେକେ କହନ୍ତି । ନୀଳମାଧବଙ୍କ ମୂର୍ତ୍ତି କମନୀୟ, ଚତୁର୍ଭୁଜ ଓ ପୂର୍ବମୁଖା । ବାଳସୂର୍ଯ୍ୟର ପ୍ରଥମ କିରଣ ତାଙ୍କ ପାଦପଦ୍ମକୁ ସ୍ପର୍ଶ କରିଥାଏ । ପର୍ବତରେ ଶୀର୍ଷ ଦେଶକୁ ଯାଇ ଠାକୁରଙ୍କୁ ଦର୍ଶନ କରିବାକୁ ହେଲେ ୫୪ଟି ପାହାଚ ଅତିକ୍ରମ କରିବାକୁ ହୁଏ । ମନ୍ଦିରରେ ଚାରିଟି ଦ୍ୱାର ରହିଛି । ପୂର୍ବ ଦ୍ୱାରରେ ସିଂହ, ପଶ୍ଚିମରେ ବାଘ, ଉତ୍ତରରେ ହସ୍ତୀ ଏବଂ ଦକ୍ଷିଣରେ ଅଶ୍ୱ ରହିଛି । ମନ୍ଦିର ପରିବେଶକୁ ଲାଗି ତିନିଶହ ଫୁଟ ଲମ୍ବର ମେଘନାଦ ପାଚେରି ରହିଛି । ମନ୍ଦିର ପୂର୍ବ ପାର୍ଶ୍ୱ ତଥା ସିଂହଦ୍ୱାର ନିକଟରେ ଠାକୁରଙ୍କ ରାସ ମଣ୍ଡପ ଓ ରଘୁନାଥ ମଠ, ପଶ୍ଚିମ ଦ୍ୱାର ପାଖରେ ରାସବିହାରୀ ମଠ, ଉତ୍ତର ପାର୍ଶ୍ୱରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ମନ୍ଦିର ଓ ଦକ୍ଷିଣ ପାର୍ଶ୍ୱରେ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଓ ରୋହିଣୀକୁଣ୍ଡ ରହିଛି ।

ଶ୍ରୀମନ୍ଦିର ବେଢ଼ାରେ ବିଭିନ୍ନ ଦେବାଦେବୀ ରହିବା ଭଳି ଏଠାରେ ମଧ୍ୟ ପତିତପାବନ, ସୂର୍ଯ୍ୟ, ନୃସିଂହ, କ୍ଷେତ୍ରପାଳ, ଅନନ୍ତ ଶୟନ, ବଟ ଗଣେଶ, ବଟେଶ୍ୱର ମହାଦେବ, ବାଟମଙ୍ଗଳା, କାଶୀ ବିଶ୍ୱନାଥ, ରଘୁନାଥ, କମଳା, ସରସ୍ୱତୀ, ଷଷ୍ଠୀ ଦେବୀ, ସାକ୍ଷୀ ଗୋପୀନାଥ, ମହାଲକ୍ଷ୍ମୀ, ବିଷ୍ଣୁ ପାଦପଦ୍ମ, ବେଢ଼ା କାଳିକା, ଦୁର୍ଗା ଓ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଆଦି ଦେବାଦେବୀ ମନ୍ଦିର ଚତୁଃପାର୍ଶ୍ୱରେ ଘେରି ରହିଛନ୍ତି । ଏଠାରେ ଥିବା ପଦ୍ମାଦ୍ରୀ ପାହାଡ ଦେଶରେ ହନୁମାନ ଜୀଉ ବିରାଜିତ ।

ଶ୍ରୀକ୍ଷେତ୍ରରେ ବାରମାସରେ ତେର ପର୍ବ ଅନୁଷ୍ଠିତ ହେଉଥିବା ପରି ଏଠାରେ ବିଧି ବିଧାନ ଅନୁଯାୟୀ ବିଭିନ୍ନ ପର୍ବପର୍ବାଣି ଓ ମେଳା ମହୋତ୍ସବ ପାଳନ ହୋଇଥାଏ । ପ୍ରତିବର୍ଷ ମାଘମାସ ଶୁକ୍ଳପକ୍ଷ ଏକାଦଶୀ ବା ପବିତ୍ର ଭୈମୀ ଏକାଦଶୀରେ ମାଘ ମେଳା ଅନୁଷ୍ଠିତ ହୁଏ । ଏହା ଏକାଦଶୀଠାରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଜାକଜମକ ସହକାରେ ପାଳନ କରାଯାଏ । ଏହି ଦିନ ମହାନଦୀରେ ସ୍ନାନ କରି ନୀଳମାଧବଙ୍କୁ ଦର୍ଶନ କଲେ କୋଟି ପୁଣ୍ୟ ମିଳେ ବୋଲି ବିଶ୍ୱାସ ରହିଛି । ଏତଦ୍‌ବ୍ୟତୀତ ମହାଷ୍ଟମୀରେ ଏଠାରେ ବେଶ୍ ଗହଳି ହୋଇଥାଏ । ବିଶେଷ କରି କାର୍ତ୍ତିକ ମାସରେ ପଞ୍ଚୁକ ପାଞ୍ଚଦିନ ବ୍ୟାପୀ ଠାକୁରଙ୍କ ବିଭିନ୍ନ ବେଶ ଅନୁଷ୍ଠିତ ହୁଏ । ଚନ୍ଦନ ଯାତ୍ରା ଏଠାରେ ଏକୋଇଶ ଦିନ ବ୍ୟାପୀ ହୋଇଥାଏ । ଚନ୍ଦନପୋଖରୀରେ ଠାକୁର ଚାପ ଖେଳନ୍ତି ଓ କଣ୍ଟିଲୋ ଗ୍ରାମର ପ୍ରାୟ ସମସ୍ତ ଘର ବିମାନରେ ଦୁଆର ଦୁଆର ବୁଲି ଭୋଗ ଖାଆନ୍ତି । କାର୍ତ୍ତିକ ପୂର୍ଣ୍ଣିମୀ ବେଳେ ଠାକୁରଙ୍କର ଶରତ ରାସ ହୁଏ । ଛୋଟ ପିଲାମାନେ କୃଷ୍ଣ ଓ ଗୋପୀ ବେଶ ହୋଇ ରାସଲୀଳା ନୃତ୍ୟ ଆକାରରେ ଦର୍ଶକମାନଙ୍କୁ ପରିବେଷଣ କରି ଅଭିଭୂତ କରିଥାନ୍ତି । ଝୁଲଣ ଯାତ୍ରା ମଧ୍ୟ ବହୁ ଜନସମାଗମ ମଧ୍ୟରେ ପାଳନ କରାଯାଇଥାଏ ।

ଏହି ତୀର୍ଥସ୍ଥାନର ନିକଟରେ ସିଦ୍ଧେଶ୍ୱର ମହାଦେବ, ମା' ନାରାୟଣୀ, ଗୋକୁଳାନନ୍ଦ ଜୀଉ, ବିଶ୍ୱାବସୁ ସ୍ମୃତିପୀଠ, କାଳିଆ ପଲ୍ଲୀ, ଲଳିତା ମାଧବ ମନ୍ଦିର ଓ ମଣିଭଦ୍ରାର କଳାପାଟ ପୀଠ ଅବସ୍ଥିତ ।

ଏହି ପୀଠର ଆଦି ଦେବତା ହେଉଛନ୍ତି ସିଦ୍ଧେଶ୍ୱର ମହାଦେବ । ନୀଳମାଧବଙ୍କ ଆବିର୍ଭାବ ପୂର୍ବରୁ ବାବା ସେଠାରେ ଥିଲେ । ବାବାଙ୍କର ମହିମା ଅପାର । ସମସ୍ତ ଭକ୍ତଙ୍କର କାମନା ସିଦ୍ଧ କରୁଥିବାରୁ ତାଙ୍କୁ ସିଦ୍ଧେଶ୍ୱର କୁହାଯାଏ । ଜୀଉଙ୍କ ଦକ୍ଷିଣ ପାର୍ଶ୍ୱରେ ସେ ଅବସ୍ଥାନ କରିଛନ୍ତି । ସିଦ୍ଧେଶ୍ୱରଙ୍କ ବଡ ବିଶେଷତ୍ୱ ହେଉଛି ଏଠାରେ ଶତାଧିକ ମାଠିଆ ଜଳ ଲାଗି କଲେ ମଧ୍ୟ ନିମିଷକ ମଧ୍ୟରେ ପାତାଳଗାମୀ ହୋଇଯାଉଥିବାରୁ ପାଦୋଦକ ପାଇବା ସମ୍ଭବ ହୁଏନି । ଏହାଛଡା ଏହାଙ୍କ ବୈଶିଷ୍ଟ୍ୟ ହେଉଛି ସୂର୍ଯ୍ୟଙ୍କ ଗତିର ବିପରୀତ ଦିଗକୁ ଲିଙ୍ଗ ଆପେ ଆପେ ଢ଼ଳିଥାଏ । ନୀଳମାଧବଙ୍କ ପୂର୍ବ ଦିଗରୁ ପ୍ରାୟ ଦୁଇ କିଲୋମିଟର ଦୂରରେ ପଥର ଚକଡା ଗ୍ରାମରେ ମା' ନାରାୟଣୀଙ୍କ ପୀଠ ଅବସ୍ଥିତ । ମା'ଙ୍କର ଅଶେଷ ମାହାତ୍ମ୍ୟ ରହିଛି । ତାଙ୍କ ମସ୍ତକରୁ ଫୁଲ ଖସିଲେ ମନସ୍କାମନା ପୂରଣ ହୁଏ ବୋଲି ବିଶ୍ୱାସ କରାଯାଏ । ଏହା ବ୍ୟତୀତ ମା'ଙ୍କ ମନ୍ଦିର ପ୍ରାଙ୍ଗଣରେ ଥିବା ପୋଖରୀରେ ସନ୍ତାନ ସନ୍ତତି ହେଉନଥିବା ମାନସିକଧାରୀ ମହିଳାମାନେ ସ୍ନାନ କଲେ ପୁତ୍ରବତୀ ହୋଇଥାନ୍ତି ବୋଲି ବିଶ୍ୱାସ ରହିଛି ।

କିମ୍ବଦନ୍ତୀ ଅନୁଯାୟୀ ଶବର ରାଜା ବିଶ୍ୱାବସୁ ମହାନଦୀ କୂଳରେ ଥିବା ଏହି ପର୍ବତ ପାହାଡ ଘେରା ବ୍ୟାଘ୍ର ଗୁମ୍ଫାରେ ନୀଳମାଧବଙ୍କୁ ଆପଣାର କୁଳଦେବତା ରୂପେ ସ୍ଥାପନା କରି

ଶାବରୀୟ ପଦ୍ଧତିରେ ଅତ୍ୟନ୍ତ ନିଷ୍ଠାର ସହ ପୂଜା କରୁଥିଲେ । ଏତଦ୍‌ବ୍ୟତୀତ ବହୁ ପ୍ରାଚୀନ କାଳରେ ନାମାସୁର ଓ କାମାସୁର ନାମକ ଅସୁର ଦ୍ୱୟ ଭଗବାନ ଶିବଙ୍କ ଆଶିଷରେ ବଳୀୟାନ ହୋଇ ପ୍ରବଳ ଅତ୍ୟାଚାର କରୁଥିଲେ । ଏଥିରେ ଅସହ୍ୟ ହେବାରୁ ଦେବ, ଦାନବ ସମସ୍ତେ ଅତିଷ୍ଠ ହୋଇ ବ୍ରହ୍ମାଙ୍କୁ ପ୍ରାର୍ଥନା କରିବାରୁ ସେ ଦୁହିଁଙ୍କୁ ବିନାଶ କରିବା ନିମନ୍ତେ ଏଠାରେ ତପସ୍ୟାରତ ଥିଲେ ଓ ଭଗବାନ ବିଷ୍ଣୁ ତାଙ୍କୁ ଏଠାରେ ମାଧବ ରୂପରେ ଦର୍ଶନ ଦେଇଥିଲେ । ତେଣୁ ଏହି ପାହାଡକୁ ବ୍ରହ୍ମାଦ୍ରୀ ପାହାଡ ବୋଲି କୁହାଯାଏ । ମନ୍ଦିର ତଟ ଦେଶରେ ପ୍ରବାହିତ ମହାନଦୀ, ଚିତ୍ରୋପ୍ତଳା, କୁଆଁରିଆ ନଦୀର ସଂଗମସ୍ଥଳ (ତ୍ରିବେଣୀ ସଂଗମ)ରେ ପବିତ୍ର ଭୌମୀ ଏକାଦଶୀ ଦିନ ଶ୍ରଦ୍ଧାଳୁ ଭକ୍ତମାନେ ବୁଡ ପକାଇ ପୁଣ୍ୟ ଅର୍ଜନ କରିବା ସହ ମୋକ୍ଷ ହେବାର ପ୍ରବାଦ ଅଛି । ଏକ ଜନଶ୍ରୁତି ଅନୁଯାୟୀ ମର୍ଯ୍ୟାଦାପୁରୁଷ ପ୍ରଭୁ ଶ୍ରୀରାମଚନ୍ଦ୍ର ବନବାସ ସମୟରେ ରାମନାଥ, ସିଂହନାଥ ଓ ବୈଦ୍ୟନାଥ ଆଦି ଶିବଶକ୍ତି ସ୍ଥାପନା କରି ମାଘମାସ ଶୁକ୍ଳପକ୍ଷ ଏକାଦଶୀ ଦିନ ପ୍ରଭୁ ନୀଳମାଧବଙ୍କୁ ଦର୍ଶନ କରିଥିଲେ ।

ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା, ନଦୀରେ ଗାଧୋଇବା ସହ ଏଠାରେ ପିକ୍‌ନିକ୍‌ର ମଜା ସତରେ ନିଆରା । ଠାକୁର ଦର୍ଶନ ଓ ଅବସର ବିନୋଦନ ନିମନ୍ତେ ଦୂର ଦୂରାନ୍ତରୁ ବହୁ ଛାତ୍ର ଛାତ୍ରୀ, ଦର୍ଶକ, ଭାବୁକ, କବି ଓ ପର୍ଯ୍ୟଟକ ଏହାର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ବର୍ଷର ପ୍ରାୟ ସବୁ ସମୟରେ ଏଠାକୁ ଆସିଥାନ୍ତି ।

କ୍ଷେତ୍ରଟି ସଂପ୍ରତି ରାଜ୍ୟ ସରକାରଙ୍କ ପର୍ଯ୍ୟଟନସ୍ଥଳୀର ମାନ୍ୟତା ପାଇବା ସଂଗେ ଦେବୋତ୍ତର ବିଭାଗ ଅଧୀନରେ ରହିଛି । ଏଠାରେ ବହୁ ଉଚ୍ଚା ଉଚ୍ଚା ପାହାଚ ଯୋଗୁଁ ବୟସ୍କ ଓ ଛୋଟ ପିଲାମାନେ ଠାକୁର ଦର୍ଶନ କରିବା ନିମନ୍ତେ ଗଲାବେଳେ ଭାରି ଅସୁବିଧାର ସମ୍ମୁଖୀନ ହୁଅନ୍ତି । ତେଣୁ ପାହାଚଗୁଡିକୁ ସିମେଣ୍ଟ, ଇଟା ଯୋଡେଇ କରି କମ୍ ଉଚ୍ଚତା ସଂପନ୍ନ କଲେ ଅନାୟାସରେ ଯାଇ ହୁଅନ୍ତା । ପର୍ଯ୍ୟଟକମାନଙ୍କ ଗହଳିକୁ ଆଖି ଆଗରେ ରଖି ଯାତ୍ରୀ ନିବାସସ୍ଥଳୀ ଆଉ କେତୋଟି ନିର୍ମାଣ କରିବା ଓ ବେଢାରେ ଅଧିକ ବିଦ୍ୟୁତ୍ ଆଲୋକ (ଏଲ୍.ଇ.ଡି) ବ୍ୟବସ୍ଥା କରିବା ସମେତ ଏକାକାଳୀନ ଅଧିକ ସଂଖ୍ୟକ ପର୍ଯ୍ୟଟକ ନିରାପତ୍ତା ପୋଷାକ ପିନ୍ଧି ଯାତାୟାତ କଲା ଭଳି ନୌକା ବିହାର ନିମନ୍ତେ ଉନ୍ନତମାନର ବିଦ୍ୟୁତ୍ ଚାଳିତ ଲଂଚ ଠିକ୍ କେରଳର କନ୍ୟାକୁମାରୀ ଭଳି ପ୍ରଚଳନ କରାଗଲେ ସରକାରଙ୍କର ରାଜସ୍ୱ ଆଦାୟ ହେବା ସାଙ୍ଗକୁ ପର୍ଯ୍ୟଟକମାନେ ଅଧିକ ଆମୋଦ ଲାଭ କରନ୍ତେ ।

ତୀର୍ଥକ୍ଷେତ୍ର ନୀଳମାଧବ ବାସ୍ତବରେ ସୌନ୍ଦର୍ଯ୍ୟର ଗନ୍ତାଘର । କଳନାଦିନୀ ନିର୍ଝରିଣୀ, ବଣ ପାହାଡର ଶ୍ୟାମଳିମା ଉଦ୍ୟାନର ପୁଷ୍ପିତ ଛବିଳ ରୂପସମ୍ଭାର, ଆମ୍ର କୁଂଜର ବିଜନତା, ପକ୍ଷୀକଣ୍ଠର କାକଳି, ପ୍ରଭାତ ପ୍ରଦୋଷର ମଧୁର ସମାବେଶ, ସମୀପବର୍ତ୍ତୀ ବହୁ ଦେବ ମନ୍ଦିର, ପବିତ୍ର ଆଧ୍ୟାତ୍ମିକ ସ୍ଥଳୀ ତଥା ସବୁଜ କେଦାରର ପ୍ରାକୃତିକ ଦୃଶ୍ୟରାଜି ଦେଖଣାହାରିଙ୍କୁ ଆତ୍ମ ବିଭୋର କରିବା ସଙ୍ଗେ ସଙ୍ଗେ ପ୍ରାଣରେ ଭାବାନ୍ତର ସୃଷ୍ଟି କରେ ।

ଏମ୍.ଆଇ.ଜି.ଓ୍ୱାନ୍ –୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର–୧୬



# ଗଣତନ୍ତ୍ରର ପ୍ରେରଣା

ଚନ୍ଦ୍ରମଣି ସେଠୀ

ଭାରତୀୟ ସମ୍ବିଧାନ ପୃଥିବୀର ବୃହତ୍ତମ ଲିଖିତ ସମ୍ବିଧାନ । ଏହି ବୃହତ୍ ଲିଖିତ ସମ୍ବିଧାନର ସ୍ରଷ୍ଟା ଥିଲେ ଭାରତର ବିଶିଷ୍ଟ ଆଇନଜ୍ଞ ଡକ୍ଟର ବି.ଆର୍.ଆମ୍ବେଦକର । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଆମ ଦେଶ ଭାରତବର୍ଷ ବିଦେଶୀ ଶାସକ ଇଂରେଜମାନଙ୍କ କବଳରୁ ମୁକ୍ତ ହୋଇ ଏକ ସ୍ୱାଧୀନ ରାଷ୍ଟ୍ରର ମାନ୍ୟତା ଲାଭ କଲା ।

ସ୍ୱାଧୀନତା ପରେ ବିଶାଳ ଭାରତବର୍ଷକୁ ଶୃଙ୍ଖଳାଭିତ୍ତିକ ଶାସନ ଯୋଗାଇ ଦେବାପାଇଁ ଭାଳେଣି ପଡ଼ିଲା । ରାଷ୍ଟ୍ରର ବରିଷ୍ଠ ରାଜନୈତିକ ନେତୃବୃନ୍ଦ ଯଥା ପଣ୍ଡିତ ଜବାହରଲାଲ୍ ନେହେରୁ, ବାଳ ଗଙ୍ଗାଧର ତିଳକ, ଗୋପାଳକୃଷ୍ଣ ଗୋଖଲେ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଇତ୍ୟାଦିଙ୍କ ଚିନ୍ତାଧାରା ରାଷ୍ଟ୍ରର ଶାସନ ନିମିତ୍ତ ପ୍ରୟୋଗ କରାଗଲା । ରାଷ୍ଟ୍ରର ସୁଶାସନ ପାଇଁ ଏକ ଆଇନ୍ ଖସଡ଼ା ବା ଲିଖିତ ସମ୍ବିଧାନର ଆବଶ୍ୟକ ପଡ଼ିଲା । ଏହି ସମ୍ବିଧାନ ପ୍ରଣୟନ ପାଇଁ ଭାରତର ତୁଙ୍ଗ ବୁଦ୍ଧିଜୀବୀ ଯଥା ବିଶିଷ୍ଟ ଆଇନଜ୍ଞ ଡକ୍ଟର ବି.ଆର୍. ଆମ୍ବେଦକରଙ୍କୁ ଦାୟିତ୍ୱ ଅର୍ପଣ କରାଗଲା । ବିଶାଳ ଭାରତବର୍ଷ ପାଇଁ ଓ ସମସ୍ତ ଜନସାଧାରଣଙ୍କ ହିତକୁ ଦୃଷ୍ଟିରେ ରଖି ଏକ ଆଇନ୍ ଖସଡ଼ା ବା ସମ୍ବିଧାନ ପ୍ରଣୟନ କରିବା ଜଣଙ୍କ ପକ୍ଷେ ଅସମ୍ଭବ ହୋଇ ପଡ଼ିଲା । ତେଣୁ ଡକ୍ଟର ବି.ଆର୍. ଆମ୍ବେଦକର ଏକ କମିଟି ଓ ଏକାଧିକ ସବ୍ କମିଟି ଗଠନ କରିଥିଲେ । କମିଟି ଓ ସବ୍ କମିଟିର ସଦସ୍ୟମାନେ ସେମାନଙ୍କର ମାନସିକ ମନ୍ଥନ କରି ବିଭିନ୍ନ ଦେଶର ଲିଖିତ ଓ ଅଲିଖିତ ସମ୍ବିଧାନର ନିୟମାବଳୀକୁ ଅନୁସରଣ କରି ସେମାନଙ୍କର ମତାମତ ସାବ୍ୟସ୍ତ କରିଥିଲେ । ମୁଖ୍ୟତଃ ଆମେରିକା ସମ୍ବିଧାନର ବହୁ ନିୟମାବଳୀ ସମ୍ବିଧାନ ପାଇଁ ସାବ୍ୟସ୍ତ କରାଯାଇଥିଲା । ଏହି ସମ୍ବିଧାନ ପ୍ରଣୟନ ପାଇଁ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇଥିଲେ ହେଁ ଉକ୍ତ ସାଧନା ଫଳବତୀ ହୋଇଥିଲା । ଦୀର୍ଘ ଦିନର ସାଧନା କେବେ ବିଫଳ ହୁଏ ନାହିଁ । ଭାରତବର୍ଷର ଜନସାଧାରଣଙ୍କ ମଙ୍ଗଳ ବା ହିତ ସହିତ ରାଷ୍ଟ୍ରର ସର୍ବାଙ୍ଗୀନ ଉନ୍ନତି ପାଇଁ ଏହି ସମ୍ବିଧାନ ଉଦ୍ଦିଷ୍ଟ ହେଲା । ଦୀର୍ଘ ବର୍ଷର ଅକ୍ଳାନ୍ତ ଉଦ୍ୟମ ଯୋଗୁଁ ଏହି ସମ୍ବିଧାନ ସମ୍ପୂର୍ଣ୍ଣ ହୋଇଥିଲା । ୧୯୪୯ ମସିହା ନଭେମ୍ବର ୨୬ ତାରିଖ ଦିନ ଆମ ସମ୍ବିଧାନ ପୂର୍ଣ୍ଣାଙ୍ଗ ରୂପ ନେଇଥିଲା । ଏହି ଦିବସକୁ ଆମ ସମ୍ବିଧାନର ଜନ୍ମଦିନ କୁହାଯାଏ । ଏହି ସମ୍ବିଧାନ ୩୯୫ଟି ଧାରା ଓ ୯ଟି ଅନୁଚ୍ଛେଦ ଦ୍ୱାରା ଆବଦ୍ଧ । ଏହା ହେଉଛି ଲିଖିତ ସମ୍ବିଧାନମାନଙ୍କ ମଧ୍ୟରେ ପୃଥିବୀର ବୃହତ୍ତମ ଲିଖିତ ସମ୍ବିଧାନ । ଏହି ବୃହତ୍ ସମ୍ବିଧାନକୁ ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଦେଶର ମଙ୍ଗଳ ବା ସୁଶାସନ ନିମନ୍ତେ ଉତ୍ସର୍ଗ କରାଗଲା । ସେହି ଦିନଟିକୁ ସାଧାରଣତନ୍ତ୍ର ଦିବସ, ଗଣତନ୍ତ୍ର ଦିବସ ବା ଜନରାଜ୍ୟ ଦିବସ ରୂପେ ଘୋଷଣା କରାଗଲା । ଭାରତବର୍ଷକୁ ଏକ ବଳିଷ୍ଠ ରାଷ୍ଟ୍ରରେ ପରିଣତ କରିବା ପାଇଁ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଶପଥ ପାଠ କରାଯିବା ସଙ୍ଗେ ସଙ୍ଗେ ଭାରତର ଜନସାଧାରଣଙ୍କୁ ଉଦ୍‌ବୋଧନ ଦିଆଗଲା ।

ପ୍ରତିବର୍ଷ ଜାନୁଆରୀ ୨୬ ତାରିଖକୁ ଗଣତନ୍ତ୍ର ଦିବସ ରୂପେ ପାଳନ କରାଯାଉଛି । ଏହି ଦିବସ ସାରା ଭାରତବର୍ଷର ଜନସାଧାରଣଙ୍କ ପାଇଁ ଏକ ଶପଥ ପାଠର ଦିବସ । ଜାତୀୟ

ପତାକା ସାରା ଦେଶର ସ୍କୁଲ୍, କଲେଜ, ବିଶ୍ୱବିଦ୍ୟାଳୟ, ପ୍ରତ୍ୟେକ ସରକାରୀ ଓ ବେସରକାରୀ ଅନୁଷ୍ଠାନମାନଙ୍କରେ ଉଡୁଥାଏ । ଜାତିକୁ ସରସ, ସୁନ୍ଦର, ବଳିଷ୍ଠ କରି ରାଷ୍ଟ୍ରକୁ ବହିଃଶତ୍ରୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଏହି ପତାକା ତଳେ ଶପଥ ପାଠ କରାଯାଏ । ବହୁ ନେତୃସ୍ଥାନୀୟ ବ୍ୟକ୍ତିବିଶେଷ ଏହି ଜାତୀୟ ଉତ୍ସବରେ ସାମିଲ୍ ହୋଇ ଜନସାଧାରଣଙ୍କୁ ଗଣତନ୍ତ୍ରର ମୂଲ୍ୟବୋଧ ବିଷୟରେ ଅବଗତ କରାଇଥା'ନ୍ତି । ଗଣତନ୍ତ୍ରର ମୂଳମନ୍ତ୍ର ହେଉଛି ଗଣ ଉନ୍ନତି ସାଧନା । ଗଣତନ୍ତ୍ରର ମୂଲ୍ୟବୋଧ ସମସ୍ତ ଜନମାନସରେ ଜାଗ୍ରତ ହେଲେ ଗଣତନ୍ତ୍ରର ସୁଫଳ ପ୍ରାପ୍ତି ହେବ ।

ଗଣତାନ୍ତ୍ରିକ ଭାବ ହୃଦୟରୁ ସ୍ୱତଃ ଜାଗ୍ରତ ହୁଏ । ଯେତେବେଳେ ଜାତିର ଗୌରବ ନିମ୍ନଗାମୀ ହୁଏ, ସେତେବେଳେ ଜାତିପ୍ରେମୀମାନେ ଜାତିକୁ ଉଦ୍ଧାର କରିବା ପାଇଁ ଅଗ୍ରସର ହୋଇଥା'ନ୍ତି । ବଣମଲ୍ଲୀ ତା'ର ଚହଟ ବାସ ଦ୍ୱାରା ବଣକୁ ମହକାଇଲା ପରି ଗଣତନ୍ତ୍ର ଭାବନାର ମହକ ଜନ ମାନସକୁ ବିଭୋର କରିପକାଏ । ଗଣତନ୍ତ୍ର ଶାସନରେ ପ୍ରତ୍ୟେକ ନାଗରିକ ଜଣେ ଜଣେ ଜାଗ୍ରତ ପ୍ରହରୀ । ଯଦି ପ୍ରତ୍ୟେକ ବ୍ୟକ୍ତିବିଶେଷ ଜାତିର ଉନ୍ନତି ପାଇଁ ଚେତନଶୀଳ ନହେବେ, ତେବେ ଜାତିର ଉନ୍ନତି ଅସମ୍ଭବ । ଜାତିପ୍ରେମ ପାଇଁ କେବଳ ଚେତନା ଶକ୍ତିର ଜାଗ୍ରତ ହିଁ ସମ୍ବଳ ।

ଆମର ଲିଖିତ ବୃହତ ସମ୍ବିଧାନ ଆମ ଜାତିର ପ୍ରାଣପିଣ୍ଡ । ବାସ୍ତବ କ୍ଷେତ୍ରରେ ସେଥିରେ ଲିଖିତ ଥିବା ନିୟମାବଳୀକୁ ଦେଶର ହିତ ପାଇଁ ପ୍ରୟୋଗ କରିବା ଅପରିହାର୍ଯ୍ୟ ।

ଆଜି ଗଣତନ୍ତ୍ର ଦିବସ ସାରା ଭାରତବର୍ଷରେ ଅତି ଆନନ୍ଦ ଉଲ୍ଲାସ ସହିତ ପାଳନ କରାଯାଉଛି । ଦିଲ୍ଲୀର ଲାଲକିଲ୍ଲା ଆଜି ଜନ ସମୁଦ୍ରରେ ଉତ୍ସବ ମୁଖର । ଜାତୀୟ ପତାକା ଉଡ଼ି ଦେଶବାସୀଙ୍କୁ ପ୍ରେରଣା ଦେଉଛି ଯେ, ସମସ୍ତେ ଏକତ୍ରିତ ହୋଇ ଏକ ମହାନ୍ ଶକ୍ତିଶାଳୀ ରାଷ୍ଟ୍ର ଗଠନ କରି ଭାରତବର୍ଷକୁ ବଳିଷ୍ଠ କର । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ଠୁଳ ହୋଇ ଭାରତମାତାର ଜୟଗାନ କର । ସମସ୍ତ ଶକ୍ତି ଏକତ୍ରିତ ହେଲେ ଭାରତ ବିଶ୍ୱରେ ତା'ର ମାନ୍ୟତା ପ୍ରତିଷ୍ଠା କରିପାରିବ । ଏ ଦେଶ ଭାରତବର୍ଷ ହେଉଛି ମୋର, ମୁଁ ଏହି ଦେଶର, ମୋର ଜାତି ଭାରତୀୟ, ଏହି ଭାବ ସମସ୍ତଙ୍କ ହୃଦୟରେ ଜାଗ୍ରତ ହେଲେ, ଭାରତ ବିଶ୍ୱରେ ତା'ର ପ୍ରକୃତ ମର୍ଯ୍ୟାଦା ଲାଭ କରିପାରିବ ।

ହୃଦୟରେ ଅନ୍ତର୍ନିହିତ ଭାବ ଜାଗ୍ରତ ହୋଇ ସଭିଙ୍କ ତୁଣ୍ଡରେ ଭାରତମାତାର ଜୟ ଧ୍ୱନି ଉଚ୍ଚାରଣ ହେଲେ ନିଶ୍ଚୟ ଭାରତମାତା ଗର୍ବରେ ଉତ୍‌ଫୁଲ୍ଲିତ ହେବ ଏବଂ ତା' ସହିତ ଦେଶରେ ଗଣତନ୍ତ୍ରର ସୁରକ୍ଷା ହୋଇ ଭାରତବର୍ଷ ପ୍ରଗତି ପଥରେ ବିଶ୍ୱରେ ଅଗ୍ରସର ହେବ ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ
ମଧୁପାଟଣା, କଟକ-୧୦



# ଅନନ୍ୟ ଲୋକନାଟକ ଧନୁଯାତ୍ରା

**କୁଞ୍ଜ ବିହାରୀ ସାହୁ**

ବିଶିଷ୍ଟ ଇଂରେଜୀ ନାଟ୍ୟକାର ସେକ୍‌ସପିୟରଙ୍କ ମତରେ– ସମଗ୍ର ପୃଥିବୀ ହେଉଛି ଏକ ରଙ୍ଗମଂଚ । ସମସ୍ତ ଜନତା ନାଟକୀୟ ଢଙ୍ଗରେ ଆପଣାର ସ୍ୱ ସ୍ୱ ଅଭିନୟ ଶେଷ କରି ଜୀବନର ଚିରନ୍ତନ ସତ୍ୟକୁ ପ୍ରତିପାଦନ କରିଥାନ୍ତି । ଯେଉଁଥିରେ ନୃତ୍ୟ, ଗୀତ, ଓ କଥାନିକାର ବିଭିନ୍ନ ଚରିତ୍ର ଶାଣିତ ଭାବରେ ପରିସ୍ଫୁଟନ ହୋଇଥାଏ ।

ଆଲୋଚନାର ପରିସରଭୁକ୍ତ ଲୋକନାଟକରେ ସାଧାରଣ ଜନତାର ସୁଖ–ଦୁଃଖ, ପ୍ରାପ୍ତି–ଅପ୍ରାପ୍ତି, ସମସ୍ୟା ଓ ଅଙ୍ଗେନିଭା ଅନୁଭୂତିର ଏକ ନିଛକ ମର୍ମସ୍ପର୍ଶୀ କଥାବଳୀର ଘଟଣାକ୍ରମ ଘଟିଥାଏ, ଯାହାକି ପୁରାଣ, କାବ୍ୟ ସାହିତ୍ୟର ସୁନ୍ଦର–ଲାଳିତ୍ୟପୂର୍ଣ୍ଣ ଉପସ୍ଥାପନାରେ ପରିବେଷଣ କରାଯାଇଥାଏ । ଭାରତୀୟ ଧର୍ମ, ସଂସ୍କୃତି, ଦର୍ଶନ ସାହିତ୍ୟକୁ ଲୋକମୁଖରେ ପରିପ୍ରକାଶ କରାଇବା ଲୋକନାଟକର ଏକ ବିଶେଷ ଅଂଶ । ଗବେଷକଙ୍କ ମତରେ– ଲୋକ ସଂସ୍କୃତି ମୌଖିକ ଭାବରେ କିମ୍ବା ପରମ୍ପରା ମଧ୍ୟରେ ଚଳି ଆସୁଥିବା ଏକ ବିଶିଷ୍ଟ ବିଭବ । ସାଧାରଣତଃ ଲୋକକାହାଣୀ, ଲୋକଗୀତ, ଧନ୍ଦା, ରୁଚି ପ୍ରବାଦ ପ୍ରବଚନ କିମ୍ବା ପାରମ୍ପରିକ ଯନ୍ତ୍ରପାତି, ବ୍ୟବହାରିକ ବସ୍ତୁ କିମ୍ବା ପାରମ୍ପରିକ ପଦ୍ଧତି ବା ପାରମ୍ପରିକ ବିଶ୍ୱାସକୁ ଲୋକ ସଂସ୍କୃତି ଭାବେ ଗ୍ରହଣ କରାଯାଇପାରେ ।



ଯାତ୍ରା ଲୋକନାଟକର ଏକ ବିଭାଗ । ଲୋକ ସଂସ୍କୃତି ସହ ନିବିଡ ଆତ୍ମୀୟତା ପ୍ରକଟିତ ହୋଇପାରିଛି । ଭବଭୂତିଙ୍କ ଉତ୍ତର ଚରିତ ଓ ମହାବୀର ଚରିତ ଗ୍ରନ୍ଥରେ ଯାତ୍ରା ଶବ୍ଦର ଉଲ୍ଲେଖ କରାଯାଇଛି । ଯାତ୍ରା ଶବ୍ଦର ଅର୍ଥ ଗମନ କରିବା । ଯା ଧାତୁରୁ ଏହା ସୃଷ୍ଟି । ଶବ୍ଦତତ୍ତ୍ୱବୋଧରେ ଯାତ୍ରାର ଅର୍ଥ ଉତ୍ସବ, ଦେବୋତ୍ସବ, ନୃତ୍ୟୋତ୍ସବ ବୋଲି ପରିଗଣିତ ହୋଇଛି । ଯେଉଁ ଧର୍ମୀୟ ଉତ୍ସବରେ ଦେବତାମାନେ ନିଜ ଆସନ ପରିତ୍ୟାଗ କରି ଜନମାନସଙ୍କ ହୃଦୟରେ ଆସ୍ଥାନ ଜମାନ୍ତି ଏବଂ ଗୀତ, ବାଦ୍ୟ, ନୃତ୍ୟ ସହିତ ଅନ୍ୟତ୍ର ଗମନ କରନ୍ତି, ତାହାକୁ ଯାତ୍ରା କୁହାଯାଏ । ଏପରିକି ସ୍ଥଳ ବିଶେଷରେ ଦୁଷ୍ଟ ସଂହାର କରି ସାଧୁ–ସନ୍ଥମାନଙ୍କୁ ପରିତ୍ରାଣର ମାର୍ଗ

ଦେଖାନ୍ତି । ଉତ୍କୃଷ୍ଟ କଳାରେ ପରିପୂର୍ଣ୍ଣ ଓଡ଼ିଶା ଲୋକ ସଂସ୍କୃତି, ଲୋକ କଳା, ଭାସ୍କର୍ଯ୍ୟ, ସ୍ଥପତି ସଙ୍ଗୀତରେ ବୈଭବଶାଳୀ । ସୁଦୂର ପ୍ରସାରି ଏହାର ଅନ୍ତଃସ୍ୱର । ଓଡ଼ିଶାର ବରଗଡ଼ ଜିଲ୍ଲା ଉପରୋକ୍ତ ବିଭାଗରେ ବିଭବମଣ୍ଡିତ । ଏହି ଜିଲ୍ଲାରେ ଅନୁଷ୍ଠିତ ହୋଇଆସୁଥିବା ବିଭିନ୍ନ ଯାନିଯାତ୍ରା ଯଥା ଶୀତଳଷଷ୍ଠୀ, କଳସ ଯାତ୍ରା, ପୁଷପୁନି, ଛତର ଯାତ୍ରା, ନୂଆଁଖାଇ ପରି ଲୋକନାଟକର ପୃଷ୍ଠଭୂମିରେ ଠିଆ ହୋଇଥିବା ବିଶାଳ ଧନୁଯାତ୍ରା ଅନନ୍ୟ ଏବଂ ଏହା ସଂସ୍କୃତି-ପରମ୍ପରାର ଅଭୁଲା ମିଶ୍ରଣ । ତେଣୁ ଲୋକନାଟକରେ ଧନୁଯାତ୍ରାର ସ୍ଥିତି ଓ ପ୍ରଗତି ଗତିଶୀଳ । ଏକ ଖୋଲାମଂଚର ବିଭବମୟ ପରିବେଶ ଓ କଳା-ସଂସ୍କୃତି-କଳାକାରମାନଙ୍କ ତ୍ରିବେଣୀ ସଙ୍ଗମରେ ଏହି ଯାତ୍ରା ପ୍ରତ୍ୟେକ ଦର୍ଶକମାନଙ୍କ ମନରେ ଆନନ୍ଦ-ଉଲ୍ଲାସର ବସା ବାନ୍ଧେ । ସାଧାରଣତଃ ଯାତ୍ରା ନାଟକର କଳାକାରମାନେ ଗୋଟିଏ ରାତ୍ରିର ଆଧାରରେ ଅଭିନୟ କରନ୍ତି ଅଥଚ ଧନୁଯାତ୍ରାରେ କଳାକାରମାନେ ଦୀର୍ଘ ୧୧ ଦିନ ଧରି ନିଜସ୍ୱ ଶୈଳୀର ପରାକାଷ୍ଠା ପ୍ରଦର୍ଶନ କରିଥାନ୍ତି । ଧନୁଯାତ୍ରାର ବିଭିନ୍ନ ଆସରରେ ଚରିତ୍ର ସମୂହର ବାସ୍ତବ-ଚରିତ୍ର-ରସସୃଷ୍ଟିକାରୀ ହୋଇଥାଏ । ଧନୁଯାତ୍ରାରେ ଲୋକକଳାର ସୂକ୍ଷ୍ମ ଉପାଦାନ ଯଥା ଲୋକମଂଚ କୌଶଳ, ବେଶଭୂଷା, ପୋଷାକ-ପରିଚ୍ଛଦ, ଲୋକଗୀତ, ଲୋକନୃତ୍ୟ, ଲୋକବାଦ୍ୟ, ଗୋପପୁରର (ଅମ୍ବାପଲୀ) ଚିତ୍ରକଳାର ଏକ ମନୋରଞ୍ଜନଧର୍ମୀ ରୂପରେଖ ବାରି ହୋଇପଡ଼େ ।

ଧନୁଯାତ୍ରା ଏକ ନିର୍ଦ୍ଦିଷ୍ଟ ମଂଚରେ ଅନୁଷ୍ଠିତ ନ ହୋଇ ଜିଲ୍ଲାର ବିଭିନ୍ନ ସ୍ଥାନରେ, ଭିନ୍ନ ଭିନ୍ନ ପ୍ରାକୃତିକ ପରିବେଶରେ ଭ୍ରାମ୍ୟମାଣ ଲୋକନାଟକ ରୂପେ ପରିଚିତି ଲାଭ କରିଛି । ସାଧାରଣତଃ ଜିଲ୍ଲାପାଳଙ୍କ ସମ୍ମିଳନୀ କକ୍ଷରେ ଧନୁଯାତ୍ରାର ପ୍ରସ୍ତୁତି ବୈଠକ ବସେ । ଏହି ବୈଠକରେ ଜିଲ୍ଲାପାଳ ଅଧ୍ୟକ୍ଷତା କରିଥାନ୍ତି । ମହୋତ୍ସବର ଆବାହକ ଓ ବିଭିନ୍ନ ବିଭାଗର ଉଚ୍ଚ ପଦସ୍ଥ ଅଧିକାରୀ ତଥା ଆରକ୍ଷୀ ଅଧୀକ୍ଷକ ଯୋଗଦାନ କରି ଧନୁଯାତ୍ରାର ସଫଳ କାର୍ଯ୍ୟସୂଚୀ ଉପସ୍ଥାପନା କରିଥାନ୍ତି । ବରଗଡର ଅଧିଷ୍ଠାତ୍ରୀ ଦେବୀ ମା' ସମଲେଶ୍ୱରୀଙ୍କ ପୀଠରେ ଆବାହନୀ ପୂଜାର୍ଚ୍ଚନା ଅନୁଷ୍ଠିତ ହୋଇ ଦେବୀଙ୍କ ଆଜ୍ଞାମାଳ ଗ୍ରହଣ କରାଯାଏ । ପରେ ପରେ ଏକ ଶୋଭାଯାତ୍ରାରେ ବିଭିନ୍ନ ବାଦ୍ୟର ତାଳେ ତାଳେ ସହର ପରିକ୍ରମା କରି ସଂଚାର ପଡିଆରେ ଉପସ୍ଥିତ ହେବାକୁ ପଡ଼େ । ସେଠାରେ ରାଜପୁରୋହିତଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ଅଷ୍ଟପୂଜା, ନାଗପୂଜା, ଭୂମିପୂଜା, ବାସ୍ତୁପୂଜା, କଳସ ପୂଜା, ସ୍ତମ୍ଭ ଓ ଧ୍ୱଜା ପୂଜାର ଆୟୋଜନ କରାଯାଇଥାଏ । ବରଗଡ଼ ଧନୁଯାତ୍ରାର ଅଧକ୍ଷ (ଜିଲ୍ଲାପାଳ) ଓ ଉପାଧ୍ୟକ୍ଷଙ୍କ ଶୁଭେଚ୍ଛା ସହ ଧ୍ୱଜା ଓ ସ୍ତମ୍ଭ ସ୍ଥାପନା କରାଯାଏ । ଶୁଭ ସ୍ତମ୍ଭ ସ୍ଥାପନା ପରେ ବିଧିବଦ୍ଧ ଭାବେ ଧନୁଯାତ୍ରା ମଂଚ ନିର୍ମାଣ, କଳାକାର ଚୟନ ଏବଂ ଅନ୍ୟାନ୍ୟ ବିଧି ପରମ୍ପରା ଅନୁଯାୟୀ ଆରମ୍ଭ ହୋଇଥାଏ । ପୂଜାକାର୍ଯ୍ୟ ସଂଚାଳନରେ ମହୋତ୍ସବ କାର୍ଯ୍ୟକ୍ରମ ପରିଚାଳନା କମିଟିର ଆବାହକ, ଉପକମିଟି ଆବାହକ ଓ ସହ-ଆବାହକ ତଥା ସଦସ୍ୟଗଣ ଉପସ୍ଥିତ ରହି ଧନୁଯାତ୍ରା ମହୋତ୍ସବର ଶୁଭକାମନା କରିଥାନ୍ତି । ଏତଦ୍ ବ୍ୟତୀତ କିଛି କଳାକାର ମଧ୍ୟ ଏହି ଶୁଭ ସ୍ତମ୍ଭ ସ୍ଥାପନାରେ ସହଯୋଗ କରନ୍ତି ।

ପ୍ରାକ୍ ସ୍ୱାଧୀନତା ସମୟରେ ବି ପଶ୍ଚିମ ଓଡ଼ିଶାର ବରଗଡ଼ ଥିଲା ସଂସ୍କୃତିର ପର୍ଯ୍ୟାପ୍ତ ପୀଠ । ସ୍ୱାଭିମାନ ଚେତନାଧର୍ମୀ ଜନସାଧାରଣ ଖୁବ୍ ସଂସ୍କୃତି ମନସ୍କ ଏବଂ ଇଂରେଜମାନଙ୍କ ଏକଚାଟିଆ ଶାସନକୁ ପ୍ରତ୍ୟକ୍ଷଭାବେ ନ ହେଲେ ବି ପରୋକ୍ଷଭାବେ ପୌରାଣିକ ଆଖ୍ୟାୟିକାକୁ ପାଥେୟକରି ବିଭିନ୍ନ ସମୟରେ ନୃତ୍ୟ-ଗୀତ-ନାଟକ ପରିବେଷଣ କରୁଥିଲେ । ଗୌନ୍ତିଆମାନଙ୍କ ପ୍ରୋତ୍ସାହନରେ ଧନୁଯାତ୍ରାର ଅୟମାରମ୍ଭ । ଯାହାହେଉନା କାହିଁକି, ସେହି ପରିପ୍ରେକ୍ଷୀରେ କଳା ସୃଜନର ସ୍ୱାକ୍ଷର ବହନ କରି ଆସିଲା ଧନୁଯାତ୍ରା ଏକ ଖୋଲା ମଂଚରେ । ଧନୁଯାତ୍ରା ଅପେରା ଓ ମଂଚ ନାଟକଠୁ ସଂପୂର୍ଣ୍ଣ ନିଆରା । ପୌରାଣିକ କଥାବସ୍ତୁର ଆଧାରରେ ଶ୍ରୀକୃଷ୍ଣଙ୍କ ଗୋପଲୀଳା ଏବଂ ମଥୁରା ଲୀଳାର ସାର୍ଥକ ଅଭିନୟ ହିଁ ଧନୁଯାତ୍ରାର ମୁଖ୍ୟ ଉପଜୀବ୍ୟ ।

ଯୁଧିଷ୍ଠିର ଶତପଥିଙ୍କ ଲାଳିତ୍ୟପୂର୍ଣ୍ଣ ସଂଳାପ, ଉଚ୍ଚକୋଟୀର ଅଭିନୟ, ବଳିଷ୍ଠ ଚେହେରା, ଭୋଜପୁରୀ, ହିନ୍ଦୀ ଭାଷାରେ ପାଣ୍ଡିତ୍ୟ ଏବଂ ପ୍ରତ୍ୟେକ ଦିନ ନୂଆ ନୂଆ

ପୋଷାକପିନ୍ଧାଧାରୀ ବେଶ କାଳକାଳକୁ ସ୍ମରଣୀୟ । ୧୯୮୦ ମସିହାରୁ କିଛିବର୍ଷ ଉଗ୍ରସେନ ଭୂମିକାରେ ବ୍ରହ୍ମା ପ୍ରଧାନ ନିଖୁଣଭାବେ ଅଭିନୟ କରିଆସୁଥିଲେ । ସେ କହନ୍ତି– ସେତେବେଳେ ବିଜୁଳିବତୀ ବଦଳରେ ପେଟ୍ରୋମାକ୍ସ ଲାଇଟ୍‌ରେ ଏବଂ ବିନା ପାରିଶ୍ରମିକରେ କଳାକାରମାନେ ଜୀବନ୍ତ ଅଭିନୟ କରୁଥିଲେ । ବରଗଡ ଧନୁଯାତ୍ରାର ବିଶେଷତ୍ୱ ହେଲା ଆଂଚଳିକ ଭାଷାରେ ସଂଳାପ ଲିଖନ, କଥନ ଏବଂ ସର୍ବୋପରି ସାଧାରଣ ଜନତାଙ୍କ ମନକୁ ଛୁଇଁଲା ପରି ପରିବେଷଣ । ଅବସ୍ଥାକୁ ଦୃଷ୍ଟିରେ ରଖି ପରିବେଶ ଓ ପ୍ରସଙ୍ଗ ପ୍ରତି ମୋହଗ୍ରସ୍ତ ହୋଇ ଚରିତ୍ରଗଣ ସଂଳାପରେ ପରିବର୍ତ୍ତନ କରିଥାନ୍ତି । ଲିଖିତ ସଂଳାପକୁ ସାମାନ୍ୟ ବଦଳାଇ ନିଜ ମନରୁ ସଂଳାପ ସୃଷ୍ଟି କରିଥାନ୍ତି । ଏହାଦ୍ୱାରା ସେହି ଚରିତ୍ରମାନଙ୍କର ଉପସ୍ଥିତି ବୃଦ୍ଧି ଏବଂ ସ୍ୱକୀୟ ପ୍ରତିଭାର ପରିସ୍ଫୁଟନ ହୋଇଥାଏ । ଏହି ଧନୁଯାତ୍ରାର ବୈଶିଷ୍ଟ୍ୟ ଯେ ଗୋପପୁରରେ କୃଷ୍ଣ ଲୀଳାର ଅଦ୍ଭୁତପୂର୍ବ ତଥା ଅଲୌକିକ ପ୍ରଦର୍ଶନ ଦେଖିବାକୁ ମିଳିଥାଏ । ଅନେକ ଭକ୍ତଙ୍କର ମାନସିକ ପୂରଣ ହୋଇଥିବାର ନଜିର ରହିଛି । ଏବେ ବି ଗୋପପୁରରେ ଅନୁଷ୍ଠିତ ହେଉଥିବା ନାଟକୀୟ ପରିବେଷଣରେ ଶ୍ରଦ୍ଧାଳୁ ଭକ୍ତମାନଙ୍କର ଆଖି ଦୁଇଟାରୁ ଆନନ୍ଦାଶ୍ରୁ ଝରିପଡେ । ଅମ୍ପାପଲ୍ଲୀ ଗାଆଁ ଗୋପପୁର ଗାଆଁର ରୂପ ନିଏ । ଝୋଟି, ଚିତା, ଚିତ୍ର, ଲିପାପୋଛାର ଅନନ୍ୟ ସୌନ୍ଦର୍ଯ୍ୟ ସଭିଙ୍କ ଆଖିରେ ଗୋପପୁର ଗାଆଁର ମାନଚିତ୍ର ଆଙ୍କିଦିଏ । ଅଭିନେତା ଓ ଅଭିନେତ୍ରୀମାନଙ୍କର ଚରିତ୍ର ଚିତ୍ରଣ ଜୀବନ୍ତ ଜୀବନ୍ତ ପରି ଲାଗେ । ଏଭଳି ଦୃଶ୍ୟରାଜି ବୋଧହୁଏ କୌଣସି ଯାତ୍ରାରେ ଦେଖିବାକୁ ମିଳେ ନାହିଁ ।

କେତେକ ଗବେଷକଙ୍କ ମତରେ – ଶ୍ରୀଚୈତନ୍ୟ ମହାପ୍ରଭୁ ପଶ୍ଚିମବଂଗର ଦୀୟା ଦ୍ୱୀପରୁ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶା ଆଗମନ କରିଥିଲେ । ଓଡ଼ିଶା ଓ ପୂର୍ବ ମଧ୍ୟପ୍ରଦେଶର ବୈଷ୍ଣବ ଧର୍ମର ଭକ୍ତମାନଙ୍କ ମଧ୍ୟରୁ କତିପୟ କଳାକାର ସଂଚାର ମୃଦଙ୍ଗ ବାଦନ ସହିତ ଗୀତ ଓ ନୃତ୍ୟ ମାଧ୍ୟମରେ କୃଷ୍ଣ ଲୀଳାମୃତକୁ ପାନ କରେଇବା ଅଭିପ୍ରାୟ ନେଇ ବାହାକ୍ ଯାତ୍ରା ଆରମ୍ଭ କରିଥିଲେ । ଏହି ଯାତ୍ରା ପରେ ଧନୁଯାତ୍ରାର ଜନ୍ମଦାତା ବୋଲି ଅଭିହିତ ରହିଛି ।

ପୌଷମାସରେ ଧନୁଯାତ୍ରା ଅନୁଷ୍ଠିତ ହେବାର ତାତ୍ପର୍ଯ୍ୟ ହେଲା– କୃଷି ପ୍ରଧାନ ବରଗଡ଼ ଜିଲ୍ଲାର ଅଧିବାସୀମାନେ ଧାନ ଅମଳ କରି ପୌଷ ମାସରେ ବିଶ୍ରାମ ନେବା ପୂର୍ବକ ଆନନ୍ଦ ଉଲ୍ଲସିତ ରୁହନ୍ତି । ଏ ମାସରେ ମଧ୍ୟ ବିବାହ କାର୍ଯ୍ୟସୂଚୀ ନଥାଏ, ଆମୋଦ ଦାୟକ ପାଣିପାଗରେ ଯାନି–ଯାତ୍ରା, ମେଳା–ଉତ୍ସବକୁ ଆଦରି ନିଅନ୍ତି । କୃଷ୍ଣ ହେଉଛନ୍ତି ଗୋପାଳକ ଓ ଗୋରକ୍ଷକ । ବଡ଼ଭାଇ ବଳରାମ ହେଉଛନ୍ତି ହଳଧାରୀ । କୃଷକମାନେ କୃଷିବର୍ଷର ଶେଷରେ ଏହି ଦୁଇ ପ୍ରତୀକ ଦେବତାଙ୍କୁ ପୂଜା କରିଥାନ୍ତି । ଧନୁଯାତ୍ରା ୧୧ ଦିନ ଧରି ଚାଲିଥାଏ ।

ଧନୁଯାତ୍ରାରେ ଅନ୍ୟ ଏକ ଆକର୍ଷିତ ଦିଗ ହେଲା– ରାଜା କଂସାସୁରର ନଗର ପରିକ୍ରମା । ସୁସଜ୍ଜିତ ହସ୍ତୀ ପୃଷ୍ଠରେ ବସି କଂସ ସହରର ପରିମଳ, ସ୍ୱାସ୍ଥ୍ୟ, ଟ୍ରାଫିକ୍, ଆଲୋକ, ଜଳଯୋଗାଣ ଆଦି ବହୁବିଧ ସମସ୍ୟାର ସମାଧାନ କରିବା ସହ ଦାୟୀ ରହୁଥିବା ବ୍ୟକ୍ତିଙ୍କୁ ଉଚିତ ଦଣ୍ଡ ବିଧାନ କରିଥାନ୍ତି । ମନ୍ତ୍ରୀ ଓ ପାରିଷଦବର୍ଗଙ୍କର ସମାବେଶ ମଧ୍ୟ ମହାରାଜଙ୍କ ସହର ପରିକ୍ରମାକୁ ଆହୁରି ସରଗରମ କରିଥାଏ । ରାସ୍ତାର ଦୁଇ ପାର୍ଶ୍ୱରେ ଦର୍ଶକମାନେ ଉପସ୍ଥିତ ରହି ମହାରାଜ କଂସକୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥାନ୍ତି । ପୂର୍ବ କଳ୍ପିତ କାର୍ଯ୍ୟସୂଚୀ ଅନୁଯାୟୀ ବିଭିନ୍ନ ଅନୁଷ୍ଠାନ ମହାରାଜକୁ ନିମନ୍ତ୍ରଣ କରି ଶୁଭେଚ୍ଛା ଗ୍ରହଣ କରିଥାନ୍ତି । ବରଗଡ ପାଲଟିଯାଏ ମଥୁରା ନଗରୀ । ଆଖି ଆଗରେ ଝଲସି ଯାଏ ମଥୁରା ନଗରୀର ଦୃଶ୍ୟପଟ । ସେହିଭଳି ଜୀରା ନଦୀ ଯମୁନା ନଦୀର ରୂପରେ ଆତ୍ମବିଭୋର ହୁଏ । ନିଜର ଶୁଭ୍ରସୈକତରେ ଅକ୍ରୁର ପାଦ ଚିହ୍ନକୁ ଧରି ରଖି ପୁଲକିତ ଏବଂ ଧନ୍ୟ ମଣେ । ସେ ଦେଖିପାରେ କୃଷ୍ଣ ବଳରାମଙ୍କ ଅପୂର୍ବ ଲୀଳା । ଏହି ଏଗାର ଦିନ ଯାତ୍ରା ସମୟରେ ମଥୁରା ନଗରୀ ବରଗଡର ସମସ୍ତ ଆବାଳ–ବୃଦ୍ଧ–ବନିତା ମହାରାଜ କଂସଙ୍କର ବିଶ୍ୱସ୍ତ ପ୍ରଜା ଭଳି ଆତଯାତ ହୁଅନ୍ତି । ସଭିଙ୍କ ମୁହଁରେ ମହାରାଜଙ୍କ ପ୍ରଶଂସା । ଏହା ବ୍ୟତିରେକ ଅନ୍ୟ ପନ୍ଥା ନାହିଁ ଯେମିତି । ଲୋକ ନାଟକ ମଣ୍ଡପରେ ସ୍ଥାପିତ କଂସ ଦରବାରରେ ଅଭ୍ୟାଗତ ଅତିଥିମାନଙ୍କ ତୁଣ୍ଡରେ କେବଳ ମହାରାଜଙ୍କର ଜୟଜୟକାର ଗାନ । ଓଡିଶା, ଭାରତ ଏପରିକି ବିଦେଶରୁ ଆସିଥିବା ନୃତ୍ୟ, ବାଦ୍ୟ ଶିଳ୍ପୀମାନେ ନିଜର ଅଭିନୟ ଚାତୁରୀରେ

ମହାରାଜଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତି । ମହାରାଜ କଂସ ଅତ୍ୟାଚାରୀ, ଦୁରାଚାରୀ, ଅଧର୍ମୀ ଅମଣିଷ ହେଲେ ବି ନୃତ୍ୟ, ଗୀତ, ବାଦ୍ୟ, କଳା ପ୍ରତି ଅନୁରକ୍ତ ଥିଲେ ଏବଂ ସାମ୍ପ୍ରତିକ କାଳରେ ସେ ନିଶ୍ଚିତଭାବେ କଳା–ଶିଳ୍ପକୁ ପ୍ରୋତ୍ସାହନ ଦେବାକୁ ଆଗଭର ହେଉଛନ୍ତି । ଲୋକ କଳା, ଲୋକ ବାଦ୍ୟ, ଲୋକ ନୃତ୍ୟକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । କହିବାକୁ ଗଲେ, ଏହା ମହାରାଜ କଂସଙ୍କର ବରଗଡ ସହରର କଳା ପ୍ରତି ନିବିଡ ଆନ୍ତରିକତା । ମହାରାଜ ଭଣଜା କୃଷ୍ଣଙ୍କୁ ମାରିବା ଅଭିପ୍ରାୟରେ ସେ ଧନୁଯାତ୍ରା ଆୟୋଜନ କରିଛନ୍ତି । ନିଜର ଲୁକ୍କାୟିତ ଅଭିବ୍ୟକ୍ତିକୁ ପରୋକ୍ଷ ଭାବରେ ପ୍ରକାଶ କରିବାକୁ ଇଚ୍ଛାକରି ନିଜ ଜାଲରେ ନିଜେ ଧରାପଡୁଛନ୍ତି । କୃଷ୍ଣ ବଳରାମଙ୍କ ଆଗମନ କଂସାସୁର ମନରେ ଭୀତି ଲେପନ କରୁଛି । ହିଂସା, ଅତ୍ୟାଚାର, ଏକଛତ୍ରବାଦୀ ଶାସନର ପୂର୍ଣ୍ଣଚ୍ଛେଦ ପଡେ । । ଇତ୍ୟବସରେ ସାରଳା ଦାସଙ୍କ ମହାଭାରତ କାବ୍ୟର କିୟଦଂଶ ମନେପଡେ–

ଧର୍ମ ଲଙ୍ଘିବା ପାଇଁକି ଅଟେ ଯେଉଁ ପ୍ରାଣୀ
ଆୟୁ କ୍ଷୟ ଯାଏ ତା'ର ଶିରୀ ହୁଏ ହାନି ।

ଅଧର୍ମର କ୍ଷୟ ଅନ୍ତେ ଧର୍ମର ପ୍ରତିଷ୍ଠା ହୁଏ । ଅମାନବିକତାର ପତନ ଘଟେ । କୁଶାସନର ମେରୁଦଣ୍ଡ ଦୋହଲି ସୁଶାସନର ମୂଳଦୁଆ ପଡେ । ସେଥିପାଇଁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ, ସ୍ନେହ, ଶ୍ରଦ୍ଧା, ସଂପ୍ରୀତି, ସୌହାର୍ଦ୍ଦ୍ୟର ମଧୁର ସମନ୍ୱୟରେ ଧର୍ମ ବିଶ୍ୱାସୀ ମାନବଙ୍କ ପାଇଁ ଏହି ଧନୁଯାତ୍ରା ସାଂସ୍କୃତିକ ଓ ସାମାଜିକ ପରମ୍ପରାର ଆଲେଖ୍ୟ ବହନ କରିପାରିଛି । ଏହା ଲୋକମାନଙ୍କର, ଲୋକମାନଙ୍କ ପାଇଁ, ଲୋକମାନଙ୍କ ଦ୍ୱାରା ଅଭିନୀତ ହେଉଥିବା ଏକ ଲୋକପ୍ରିୟ ଲୋକ ଉତ୍ସବ । ସେଥିପାଇଁ ଏହା ସାର୍ବଜନୀନ ହୋଇପାରିଛି । ବହୁ ଉତ୍‌ଥାନ ପତନର ସମ୍ମୁଖୀନ ହୋଇ ବି ଆଜି ୬୮ତମ ସୋପାନରେ ପାଦ ଦେଇପାରିଛି ଧନୁଯାତ୍ରା । ଏହା ଯେ କେବଳ ପଶ୍ଚିମ ଓଡିଶାବାସୀଙ୍କର ସାଂସ୍କୃତିକ ପରମ୍ପରା ତା' ନୁହେଁ, ବରଂ ସମଗ୍ର ଭାରତଭୂଖଣ୍ଡର ଅଧିବାସୀଙ୍କର ଏକ ମହାର୍ଘ ଖୋଲାମଂଚର ଲୋକ ନାଟକ ରୂପେ ପରିଚୟ ପାଇପାରିଛି ।

ଜଳବିଭାଜିକା କାର୍ଯ୍ୟାଳୟ
ବରଗଡ –୭୬୮୦୨



# ଓଡ଼ିଶାର ବରଗଡ଼ ଜିଲ୍ଲାର ଧନୁଯାତ୍ରା

**ପାର୍ବତୀ ତ୍ରିବିଦ୍**

ଓଡ଼ିଶାର ଲୋକନାଟକ ପର୍ବପର୍ବାଣି ଯାନିଯାତ୍ରା ଆମ ଜୀବନଯାତ୍ରାର ଏକ ପ୍ରମୁଖ ଅଂଶବିଶେଷ । ଏହି ଯାତ୍ରା ବା ଲୀଳା, ସୁଆଙ୍ଗ, ଦଣ୍ଡନାଟ ପ୍ରଭୃତି ଲୋକନାଟକଗୁଡିକ ଯାତ୍ରା ଅଭିଧାରେ ଚିହ୍ନିତ ହୁଅନ୍ତି । ଅବଶ୍ୟ ପ୍ରତ୍ୟେକ ବିଭାଗର ସ୍ୱାତନ୍ତ୍ର୍ୟ ରହିଛି । ତେଣୁ 'କୃଷ୍ଣଲୀଳା'ର ପରିକଳ୍ପିତ ରୂପ 'ଧନୁଯାତ୍ରା' । ଏହା ପଶ୍ଚିମ ଓଡିଶାର ଲୋକନାଟକ । ଏହା ପୌଷ ଶୁକ୍ଳପକ୍ଷ ପଞ୍ଚମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏଗାର ଦିନ ଧରି ଅଭିନୀତ ହୁଏ । ଏହି 'ଧନୁଯାତ୍ରା' ମଧ୍ୟରେ ଲୋକରୁଚି, ଲୋକ ପରଂପରା, ଲୋକଚଳଣି ଇତ୍ୟାଦି ପ୍ରତିଫଳିତ ହୋଇଥାଏ । ସେଥିପାଇଁ ଏହି ଯାତ୍ରାକୁ 'ଲୋକନାଟକ' କୁହାଯାଏ । ଏହା ବରଗଡ ଜିଲ୍ଲାରେ ଅନୁଷ୍ଠିତ ହୋଇଥାଏ । ବରଗଡର ପାଖ ଗାଁ ଅମ୍ବାପାଲି ହୁଏ ଗୋପପୁର, ଜୀରା ନଦୀ ହୁଏ ଯମୁନା ଓ ବରଗଡ ହୁଏ ମଥୁରା କଂସଙ୍କ ରାଜ୍ୟ ।

ଏହା କୃଷ୍ଣ ଜନ୍ମଠାରୁ କଂସବଧ ପର୍ଯ୍ୟନ୍ତ ସମସ୍ତ ବିଷୟର ନାଟ୍ୟରୂପ ସ୍ଥାନୀୟ ଅଭିନେତାମାନଙ୍କ ଦ୍ୱାରା ନିଆରା ଢଙ୍ଗରେ ପରିବେଷିତ ହୋଇଥାଏ । କେବଳ କଂସ ଏହି ଯାତ୍ରାର କେନ୍ଦ୍ରୀୟ ଚରିତ୍ର ହୋଇଥିବାରୁ ତାଙ୍କର ନିର୍ବାଚନ ଯୋଗ୍ୟତା ଭିତ୍ତିରେ ହୋଇଥାଏ । କଂସ ନିଜର ସଂଳାପ ଇତ୍ୟାଦି ନିଜେ ମନରୁ କହିଥାନ୍ତି । ସେମିତି ଅନ୍ୟ ଚରିତ୍ରମାନେ ମଧ୍ୟ ତାହା ହିଁ କରନ୍ତି । କଂସଙ୍କର ଗଜାରୂଢ ହୋଇ ନଗର ପରିକ୍ରମା କରିବା, ନଗରବାସୀଙ୍କ ଅଭାବ ଅସୁବିଧା ବୁଝି ପ୍ରତିକାର ନିମନ୍ତେ ସମ୍ପୃକ୍ତ ବ୍ୟକ୍ତିଙ୍କୁ ଦରବାରକୁ ଡକାଇ ଦୋଷ ଦଣ୍ଡବିଧାନ କରିବା ଦୃଶ୍ୟ ଦର୍ଶକମାନଙ୍କୁ ଚକିତ ତଥା ଆମୋଦିତ କରିଥାଏ ।

'ଧନୁଯାତ୍ରା' ନାଟକରେ ଅଭିନୟ କରୁଥିବା ଚରିତ୍ରମାନଙ୍କର ସ୍ୱତଃସ୍ଫୂର୍ତ୍ତ ଅଭିନୟ ସମଗ୍ର ପରିବେଶକୁ ଦ୍ୱାପର ଯୁଗକୁ ନେଇଯିବା ଭଳି ଲାଗେ । ଦେବକୀ ବସୁଦେବଙ୍କ ବିବାହ, କୃଷ୍ଣଜନ୍ମ, ବିଜୁଳିକନ୍ୟା ବୃତ୍ତାନ୍ତ, ନନ୍ଦୋତ୍ସବ, ପୁତନାବଧ, କାଳୀୟଦଳନ, ନାବକେଳି, ବସ୍ତ୍ରହରଣ, ରଙ୍ଗସଭା, ଅକ୍ରୂରର ଗୋପପୁର ଗମନ, କୃଷ୍ଣ ବଳରାମଙ୍କର ଆଗମନ, ମଲ୍ଲଯୁଦ୍ଧ, କୁବୁଜା ତାରଣ, କୁବଳୟା ନିଧନ, ଧନୁଭଗ୍ନ, କଂସବଧ, ଉଗ୍ରସେନଙ୍କ ରାଜ୍ୟାଭିଷେକ ପ୍ରଭୃତି ଦୃଶ୍ୟ ଗୋଟିକ ପରେ ଗୋଟିଏ ପ୍ରଦର୍ଶନ ହୋଇଥାଏ ।

'ଧନୁଯାତ୍ରା' ନାଟକରେ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ଅନୁଷ୍ଠିତ ହୋଇଥାଏ । ମାମୁଁ ରାକ୍ଷସ ରାଜା କଂସ ଭଣଜା କୃଷ୍ଣ ଓ ବଳରାମଙ୍କୁ ବଧ କରିବା ଉଦ୍ଦେଶ୍ୟରେ ଛଳନା ପୂର୍ବକ 'ଧନୁଯାତ୍ରା' ଉତ୍ସବର ଆୟୋଜିତ କରେ । କଥାବସ୍ତୁର ବିଭିନ୍ନ ଚରିତ୍ରଗୁଡିକ ସୁନ୍ଦର ଭାବରେ ରୂପାୟନ ହୁଏ ବରଗଡ ସହର ଓ ନିକଟବର୍ତ୍ତୀ ଜୀରା ନଈକୂଳ ଆରପଟେ ଥିବା ଅମ୍ବାପାଲିରେ । ଏହାର ଚରିତ୍ରଗୁଡିକ ହେଲେ କୃଷ୍ଣ, ବଳରାମ, କଂସ, ଅକ୍ରୂର, ଚାଣୁର ମୁଷ୍ଟିକ, ବକା, ଅଘା, ପୁତନା, ଗୋପବାଳକ ଓ ଗୋପୀବୃନ୍ଦ ଚରିତ୍ରଗୁଡିକ ଶିଷ୍ଟ ନାଟକ ପରି ସଂଳାପ ବୋଲି ନ ଥାନ୍ତି । ଏହି ଯାତ୍ରାରେ ବହୁ ସ୍ତ୍ରୀ ପୁରୁଷ ଅଭିନୟ କରନ୍ତି । ଅଭିନେତାମାନେ ନିଜେ ନିଜର ସଂଳାପ ପ୍ରସ୍ତୁତ କରିଥାନ୍ତି । ମହାରାଜା କଂସ ଏ ଯାତ୍ରାର ପ୍ରଧାନ ଆକର୍ଷଣୀୟ ଚରିତ୍ର । କଂସ ମହାରାଜାଙ୍କ ସଂଳାପ ବେଶ୍ ଉପଭୋଗ୍ୟ ଓ ମନୋରଂଜନ ହୋଇଥାଏ । ପ୍ରତ୍ୟେକ ଦିନ ଅପରାହ୍ନରେ ଅଭିନୟ ଆରମ୍ଭ ହୁଏ ଏବଂ ରାତ୍ରି ପର୍ଯ୍ୟନ୍ତ ଚାଲେ ।

କଂସ ମହାରାଜା ପ୍ରତ୍ୟେକ ଦିନ ଏକ ସଜ୍ଜିତ ହସ୍ତୀ ଉପରେ ବସି ନଗର ପରିକ୍ରମା କରନ୍ତି । ତାଙ୍କ ସହ ଚାଣୁର, ମୁଷ୍ଟିକ ଓ ଅକ୍ରୁର ଆଦି ଯାଇଥାନ୍ତି । ନଗରବାସୀଙ୍କର କଂସ ମହାରାଜାଙ୍କର ଜୟ ଜୟ ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇଉଠେ । କଂସ ମହାରାଜାଙ୍କର ହୁକୁମ୍ ସମସ୍ତେ ମାନନ୍ତି । ତାଙ୍କର ଆଦେଶକୁ କେହି ବି ଅବମାନନା କରନ୍ତି ନାହିଁ । କାରଣ ଯାତ୍ରା ପ୍ରତି ଲୋକଙ୍କର ଶ୍ରଦ୍ଧା ଓ ନିଷ୍ଠା ରହିଥାଏ । ଆନ୍ତରିକତାର ସହ ଏହାକୁ ବରଗଡବାସୀ ଗ୍ରହଣ କରିଥାନ୍ତି ଓ ଯାନବାହନ ନିୟନ୍ତ୍ରଣ ତଥା ସହରର ପରିଷ୍କାର ପରିଚ୍ଛନ୍ନତା ଆଦି ବିଷୟକୁ ଧ୍ୟାନ ଦିଅନ୍ତି । ଏଥିରେ ବିଶୃଙ୍ଖଳା ଦେଖାଦେଲେ ଜୋରିମାନା ଆଦେଶ ଦେଇଥାନ୍ତି । ଏହି ସମୟରେ ବରଗଡର କର୍ତ୍ତା ଭାବରେ ତାଙ୍କୁ ସମ୍ମାନ ଦିଆଯାଏ ।

ନଗର ପରିକ୍ରମା ପରେ ଆରମ୍ଭ ହୁଏ କଂସ ମହାରାଜାଙ୍କ 'ଦରବାର' । ମହାରାଜାଙ୍କ ରଙ୍ଗସଭାରେ ନୃତ୍ୟ ଗୀତର ଆୟୋଜିତ ହୁଏ । ତା'ପରେ ଲୋକଙ୍କର ଅଭିଯୋଗ ଶୁଣାଯାଏ । ଏହାପରେ ରାଜ୍ୟର ତଥା ଜନସାଧାରଣଙ୍କ ଉନ୍ନତି ପାଇଁ ମହାରାଜା ଆଦେଶ ବ୍ୟକ୍ତ କରନ୍ତି । ସେ ତିନି ଘଣ୍ଟା କାଳ ଦରବାର କାର୍ଯ୍ୟ ପରିଚାଳନା ପରେ ସୁସଜ୍ଜିତ ହସ୍ତୀରେ ଉପବେଶନ କରି ଆପଣା ଅନ୍ତଃପୁରକୁ ଫେରିଯାନ୍ତି । ଏହା ପରେ ବିଳମ୍ବିତ ରାତିଯାଏ ଦର୍ଶକମାନଙ୍କର ମନୋରଞ୍ଜନ ପାଇଁ ସଂଚାର, ଗୋଟିପୁଅ ନାଚ, ସମ୍ବଲପୁରୀ ଗୀତ ଓ ନାଚ, ଓଡିଶୀନୃତ୍ୟ ଆଦି ରଙ୍ଗମଞ୍ଚରେ ପରିବେଷିତ ହୋଇଥାଏ । ଯାତ୍ରାର ଆରମ୍ଭରୁ ୧୧ ଦିନ ପର୍ଯ୍ୟନ୍ତ କଂସ ମହାରାଜାଙ୍କ ଦରବାର ଚାଲେ ।

ମଥୁରାରେ ଯାତ୍ରାର ପ୍ରଥମ ଦିବସରେ ଦେବକୀ ଓ ବସୁଦେବଙ୍କ ବିବାହ ଉତ୍ସବ ଓ ଏହା ପରେ କଂସ ଭଉଣୀ ଓ ଭିଣୋଇଙ୍କୁ ରଥରେ ବସାଇ ନଗର ପରିକ୍ରମା କରୁଥିବା ବେଳେ ତା'ର ନିଧନ ସମ୍ପର୍କରେ ଦୈବବାଣୀ ଶୁଣିଥାଏ ଏବଂ ସେଥିପାଇଁ ଭଉଣୀ ଭିଣୋଇକୁ ବନ୍ଦୀଶାଳାରେ ରଖେ । ବନ୍ଦୀଶାଳାରେ ଜନ୍ମ ହୁଅନ୍ତି ଶ୍ରୀକୃଷ୍ଣ । କୃଷ୍ଣଙ୍କୁ ନିଆଯାଏ ଗୋପପୁର ଅମ୍ବାପାଲିକୁ । ଗୋପପୁରରୁ ବିଜୁଳି କନ୍ୟାଙ୍କୁ ଅଣାଯାଏ । ଶିଳା ଉପରେ ବିଜୁଳି କନ୍ୟାଙ୍କୁ କଚାଡି ଦେବା ସମୟରେ ତା'ର ନିଧନ ସମ୍ପର୍କୀୟ ଦୈବବାଣୀ ଶୁଣି ପରେ ସେ କୃଷ୍ଣଙ୍କୁ ହତ୍ୟା କରିବା ପାଇଁ ଯାତ୍ରାର ତୃତୀୟ ଦିନଠାରୁ ଷଷ୍ଠ ଦିନ ପର୍ଯ୍ୟନ୍ତ ମଥୁରା ନରେଶ କଂସ ବିଭିନ୍ନ ଅସୁରଙ୍କୁ ଅମ୍ବାପାଲି ପ୍ରେରଣ କରେ ।

ସପ୍ତମ ଗର୍ଭର ବଳରାମ ଏବଂ ଅଷ୍ଟମ ଗର୍ଭର ଶ୍ରୀକୃଷ୍ଣ ଗୋପପୁରରେ ଆଠ ଦିନ ପର୍ଯ୍ୟନ୍ତ ନାଟକାଭିନୟ କରନ୍ତି । ପ୍ରତ୍ୟେକ ବର୍ଷ ଅଭିନୟ କରୁଥିବା ଗୋପପୁରରେ ଗୋପାଳ ବାଳକମାନେ ମଧ୍ୟ ଆଠ ବର୍ଷ ହୋଇଥିବା ଦରକାର । ପ୍ରତ୍ୟେକ ବର୍ଷ ସେହି ଗୋପପୁର ଗ୍ରାମରେ ଆଠ ବର୍ଷର ଶ୍ରୀକୃଷ୍ଣ ବଳରାମଙ୍କ ବେଶରେ ବାହାରନ୍ତି ଏବଂ ଗୋପୀ ଗୋପାଳ ବାଳକ ବାଳିକା ମଧ୍ୟ ଆଠ ବର୍ଷର ହୋଇଥାନ୍ତି ଏବଂ ସେମାନେ ଭିନ୍ନ ଜାତିର ହୋଇଥାନ୍ତି ।

ଯେଉଁ ଅନୁସାରେ ଶାସ୍ତ୍ରରେ ଲେଖାହୋଇଛି ସେହି ଅନୁସାରେ କୃଷ୍ଣ ଓ ବଳରାମ ନୀତି ଓ ନିୟମଦ୍ୱାରା ଅଭିନୟ କରିଥାନ୍ତି । ସମଲି ମନ୍ଦିରରୁ କୃଷ୍ଣ ଓ ବଳରାମ ଆସିବାରେ ତୁଳସୀ ମାଳ ପିନ୍ଧାଇ ଦିଆଯାଇଥାଏ ଏବଂ ଯାତ୍ରା ଆରମ୍ଭ ହୁଏ ଏବଂ ତାହା ଗୋପପୁରରେ ଆଠ ଦିନ ପର୍ଯ୍ୟନ୍ତ ଚାଲିଥାଏ । ସେହିଦିନ ଗୋପପୁରରେ ଅମ୍ବାପାଲି ଗ୍ରାମରେ ଘରେ ଘରେ ପରମ୍ପରା ଚଳଣିକୁ ମାନି ପ୍ରତ୍ୟେକ ଦିନ ପ୍ରତ୍ୟେକଙ୍କ ଘରେ ଗୋବର ପାଣି ଦେଇ ପରିଷ୍କାର ପରିଚ୍ଛନ କରି ପିଠା, ପଣା ତିଆରି କରନ୍ତି ଏବଂ ଠାକୁର ଭୋଗ (ନଡିଆ, କଦଳୀ, ସେଓ, ଅଙ୍ଗୁର, ଦହି) ପ୍ରସ୍ତୁତ କରନ୍ତି ଏବଂ ସେହି ଗ୍ରାମରେ ମାଦକ ଦ୍ରବ୍ୟ ଓ ଆମିଷ ସେବନ କରନ୍ତି ନାହିଁ । ପ୍ରତିଦିନ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବା ପାଇଁ ଆସିଥାନ୍ତି ଏବଂ ଦୂରଦୂରାନ୍ତର ବ୍ୟକ୍ତିମାନେ ମଧ୍ୟ ଗୋପପୁରରୁ ନନ୍ଦଭବନକୁ ଯାଇ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିଥାନ୍ତି । ନନ୍ଦରାଜା, ନନ୍ଦରାଣୀ ଯଶୋଦାଙ୍କ ଘରେ ଆଠ ଦିନ ପର୍ଯ୍ୟନ୍ତ କୃଷ୍ଣ ଓ ବଳରାମ ଦୁହେଁ ଖାଦ୍ୟ (ଭାତ, ଡାଲି, ଦହି, ଖଟା, ଶାଗ, ଲହୁଣୀ) ଖାଇ ସାରିବା ପରେ ଥାଳି ଚାରିପାଖରେ ପଡିଥିବା ଅଇଁଠା ଭାତ, ଡାଲି ପୋଛି ଆଣି ନନ୍ଦରାଜା, ନନ୍ଦରାଣୀ ଖାଇଥାନ୍ତି । ଗୋପପୁରରେ ବେଣୁବାବା ମଠ ପାଖରେ ୧୨–୧୪ ଜଣ ଗୋପାଳମାନଙ୍କ ହାତରେ ମାଆମାନେ ତିଆରି କରିଥିବା ବିଭିନ୍ନ ପ୍ରକାରର ପ୍ରସାଦ (ଚୁଡା, ଲଡୁ, ଦହି, ମାଲପୁଆ, ଛେନା, ଦହିବରା) ଆଦି ନେଇ ପହଁଞ୍ଚିଥାନ୍ତି । ଗୋପପୁରେ ସନ୍ଧ୍ୟା ୫ଟାରୁ ୭ ଟା ପର୍ଯ୍ୟନ୍ତ

ରଙ୍ଗସଭା ବା ରଙ୍ଗମଞ୍ଚରେ ଅଭିନୟ କରିଥାନ୍ତି ଏବଂ ଗ୍ରାମ ମୁଣ୍ଡର ଶେଷ ଆଡକୁ ହୋଇଥିବା ବୃନ୍ଦାବନରେ ଗୋପଲୀଳା ବା କୃଷ୍ଣଲୀଳା ଅଭିନୟ କରିଥାନ୍ତି ।

ଯାତ୍ରାର ଦ୍ୱିତୀୟ ଦିବସଠାରୁ ଅମ୍ବାପାଲିରେ କୃଷ୍ଣଲୀଳା ଆରମ୍ଭ ହୁଏ । ଏହି ସବୁ ଦୃଶ୍ୟଗୁଡିକ ବେଶ୍ ହୃଦୟସ୍ପର୍ଶୀ ଓ ଶ୍ରୀକୃଷ୍ଣ ବଳରାମଙ୍କର ଗୋପପୁରରୁ ମେଲାଣି ଦୃଶ୍ୟ ଅତ୍ୟନ୍ତ ଉପଭୋଗ୍ୟ ।

ଦ୍ୱିତୀୟ ଦିନରେ ମଥୁରାରେ କଂସ ଚିନ୍ତିତ ହୋଇପଡନ୍ତି । ଗୋପପୁରରେ ବିଜୁଳି କନ୍ୟାଙ୍କର ଜନ୍ମ ହୁଏ ମା ବିନ୍ଧବାସୀ ଦେବୀ ବିଜୁଳି କନ୍ୟାଙ୍କୁ ଯୁଗଦାନ କରନ୍ତି । ସେହି ସମୟରେ ମଥୁରାରେ ଶ୍ରୀକୃଷ୍ଣଙ୍କର ଜନ୍ମ ହୁଏ । କୃଷ୍ଣଙ୍କୁ ନେଇ ବସୁଦେବ ଗୋପକୁ ପ୍ରବେଶ କରନ୍ତି ।

ଶାସ୍ତ୍ର ଅନୁସାରେ ମଥୁରା ରାଜା କଂସାସୁର ପାତ୍ରମନ୍ତ୍ରୀଙ୍କ ସହ ନଗର ଭ୍ରମଣରେ ବାହାରି ବିଭିନ୍ନ ବ୍ୟକ୍ତିଙ୍କୁ ଦଣ୍ଡିତ କରିଥିଲେ । ତାଙ୍କ ଅନ୍ୟାୟ ଅତ୍ୟାଚାରରେ ଜନସାଧାରଣ ଅତିଷ୍ଠ ହୋଇ ପଡିଥିଲେ ହେଁ କେହି ସ୍ୱର ଉତ୍ତୋଳନ କରିବାର ସାହସ କରିପାରି ନଥିଲେ । ଏହି ସମୟରେ ମଥୁରା କାରାଗାରରେ ଦେବକୀଙ୍କ ଗର୍ଭରେ ଶ୍ରୀକୃଷ୍ଣ ଜନ୍ମ ଗ୍ରହଣ କରି ନିଜର ବିଶ୍ୱ ରୂପ ଦେଖାଇ ତାଙ୍କୁ ଗୋପପୁରର ନନ୍ଦରାଜାଙ୍କ ପାଖକୁ ନେଇଯିବାକୁ ବସୁଦେବଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ ପରେ ଉଗ୍ରସେନ୍ ବସୁଦେବଙ୍କୁ ବାଟଛାଡି ଦେଇଥିଲେ । ଶିଶୁକୁ ମୁଣ୍ଡରେ ଧରି ବସୁଦେବ ଯମୁନା ନଦୀରେ ପ୍ରବେଶ କରିଥିଲେ । ନିଶାର୍ଦ୍ଧରେ ବସୁଦେବ ଶ୍ରୀକୃଷ୍ଣଙ୍କୁ ଧରି ନନ୍ଦରାଜାଙ୍କ ଘରେ ପ୍ରବେଶ କରିବା ପରେ ଶୟନରତା ଯଶୋଦାଙ୍କ କୋଳରୁ ବଦଳ କରି ବିଜୁଳି କନ୍ୟାଙ୍କୁ ଧରି ମଥୁରା କାରାଗାରରେ ପ୍ରବେଶ କରିଥିଲେ ।

ତୃତୀୟ ଦିନ ଗୋପପୁରରେ ନନ୍ଦଉତ୍ସବ ଅନୁଷ୍ଠିତ ହୋଇଥାଏ । ଶ୍ରୀକୃଷ୍ଣଙ୍କର ଏକୋଇଶିଆ ହୋଇଥାଏ ଏବଂ ଖୁବ୍ ଧୁମ୍‌ଧାମରେ ଭୋଜିଭାତ ହୋଇ ଦିନଟି ଖୁସିରେ ଯାଏ । ଚତୁର୍ଥ ଦିନରେ ପୁତନା ବଧ ହୋଇଥାଏ ।

ଶ୍ରୀକୃଷ୍ଣ, ବଳରାମ, ବାଳ ଗୋପାଳଙ୍କ ସହ ଗୋପ ଭ୍ରମଣରେ ଯାଇଥିଲେ । ଶ୍ରୀକୃଷ୍ଣଙ୍କୁ ସ୍ୱାଗତ କରିବା ପାଇଁ ପ୍ରତି ଘରେ ପୂର୍ଣ୍ଣ କୁମ୍ଭ ସ୍ଥାପନ ସହ ଘର ଅଗଣାରେ ଦଧିଭାଣ୍ଡ ସଜ୍ଜା ଯାଇଥିଲା । ସମଗ୍ର ଗୋପପୁର ଆଧ୍ୟାତ୍ମିକତାର ବାତାବରଣରେ ପୂରି ଉଠିଥିଲା । ଅନ୍ୟ ପକ୍ଷରେ ମଥୁରାରେ ବାଳ ଶ୍ରୀକୃଷ୍ଣଙ୍କୁ ହତ୍ୟା ପାଇଁ ମହାରାଜା କଂସ ପୁତନା, ବକା, ଅଘା, ଶକଟା, ଧେନୁକା ଆଦି ଅସୁରଙ୍କୁ ଗୋପପୁର ପ୍ରେରଣ କରି ମହାରାଜା କଂସ ତାଙ୍କ ଇଷ୍ଟ ଦେବ ମୁକ୍ତେଶ୍ୱର ମହାଦେବଙ୍କ ଦର୍ଶନରେ ବାହାରି ଥିଲେ । ମହାରାଜ କଂସ ଭଗବାନ ଶିବଙ୍କ ଆରାଧନା ସହ ମୁକ୍ତେଶ୍ୱର ମହାଦେବଙ୍କ କ୍ଷୀରାଭିଷେକ କରିଥିଲେ । ବାଳ ଶ୍ରୀକୃଷ୍ଣଙ୍କୁ ବଧ କରିବା ନିମନ୍ତେ କଂସ ଦ୍ୱାରା ପ୍ରେରିତ ପୁତନା ରାକ୍ଷସୀ ଦିବ୍ୟସୁନ୍ଦରୀ ରୂପରେ ଗୋପପୁର ପ୍ରବେଶ କରିବା ପରେ ଲୋକଙ୍କୁ ପଚାରି ନନ୍ଦ ଭବନରେ ପହଞ୍ଚିଲେ । ଶ୍ରୀକୃଷ୍ଣଙ୍କୁ କ୍ଷୀର ଖୁଆଇବା ପାଇଁ ତାଙ୍କର ଅଭିଳାଷ ଅଛି । ଦୁଃଖିନୀ ପୁତନାର କାହାଣୀ ଶୁଣି ନନ୍ଦରାଣୀ ଯଶୋଦା ପୁତନାକୁ କ୍ଷୀର ଖୁଆଇବାର ଅନୁମତି ପ୍ରଦାନ କରିଥିଲେ । ପୁତନାର ଅନ୍ତର୍ନିହିତ ଉଦ୍ଦେଶ୍ୟ ଜାଣିପାରି ଅନ୍ତର୍ଯାମୀ ଶ୍ରୀକୃଷ୍ଣ କ୍ଷୀର ପାନ ସମୟରେ କ୍ଷୀର ସହ ପୁତନାର ପ୍ରାଣ ଶୋଷଣ କରିଥିଲେ । ପରେ ବକାସୁର, ଶକଟାସୁର, ଅଘା, ତୃଣା, ଧେନୁକା, ପ୍ରଳମ୍ବା ଓ ଷଣ୍ଢା ଆଦି ଅସୁରଙ୍କ ମୃତ୍ୟୁ ଘଟିଥିଲା । ସେମାନଙ୍କ ମୃତ୍ୟୁ ଖବର ଶୁଣି ମହାରାଜା କଂସଙ୍କ ବିଷାଦ ଦୂର ପାଇଁ ଦରବାରରେ ନୃତ୍ୟ ଗୀତ ପରିବେଷଣ କରାଯାଇଥିଲା । ଏହାର ପର ଦିନ କୃଷ୍ଣଙ୍କର କାଳୀୟ ଦଳନ ବା ସର୍ପଦଳନକୁ ଦର୍ଶକମାନେ ଦେଖିବାର ସୁଯୋଗ ପାଇଥିଲେ ।

ଗୋପପୁରରେ କାଳୀୟଦଳନ ଓ ଜାମଳାର୍ଜ୍ଜୁନ ଭଞ୍ଜନ ଅଭିନୀତ ହୋଇଛି । ଏହା ସହିତ ଗୋପୀଙ୍କ ଦ୍ୱାରା ଗୋପପୁରରେ ଦଧିବିକା ହୁଏ । ଗୋପାଳ ବାଳକଙ୍କ ସହ ମିଶି ଗୋପୀଙ୍କଠାରୁ ଦଧି ଚୋରି କରି ଓ ଦଧିଭାଣ୍ଡ ଫଟାଉଥିବା ଦୃଶ୍ୟ ସଂପର୍କରେ ଗୋପୀମାନେ ଯଶୋଦାଙ୍କ ପାଖରେ ଅଭିଯୋଗ କରିଥିଲେ ଏବଂ ଯଶୋଦାରାଣୀ ଶୁଣି ଦୁଃଖିତ ହେବା ସହ କୃଷ୍ଣଙ୍କୁ ଅର୍ଜ୍ଜୁନ ଗଛରେ ବାନ୍ଧି ଦେଇଥିଲେ ।

ଗଛକୁ କୃଷ୍ଣ ଭାଙ୍ଗି ଦେବାରୁ ପୂର୍ବରୁ ବାସ କରୁଥିବା ଦୁଇ ଅଭିଶପ୍ତ ଯକ୍ଷନଳ ଓ ହୟଗ୍ରୀବ ଶାପ୍ୟମୁକ୍ତ ହୋଇ ଶ୍ରୀକୃଷ୍ଣଙ୍କ ଶରଣାପନ୍ନ ହୋଇଥିଲେ । ସେହିପରି କୃଷ୍ଣ ବଳରାମ ବଣଭୋଜି କରୁଥିବା ଦୃଶ୍ୟ ବେଳେ ସେଠାରେ ବ୍ରହ୍ମା ଆବିର୍ଭୂତ

ହୋଇ ବଂଶୀ ଦାନ କରିଥିଲେ । ବ୍ରହ୍ମାଙ୍କ ଲୋମରୁ ଉତ୍ପନ୍ନ ବାଉଁଶର ଚାରି ଅଂଶ ମଧ୍ୟରୁ ପ୍ରଥମ ଖଣ୍ଡରେ ମହାଦେବଙ୍କ ପାଇଁ ପିନାକ ଧନୁ, ଦ୍ୱିତୀୟରେ ଶ୍ରୀରାମଙ୍କର କୋଦଣ୍ଡ ଧନୁ ଓ ତୃତୀୟ ଖଣ୍ଡରେ ଅର୍ଜ୍ଜୁନଙ୍କ ପାଇଁ ଗାଣ୍ଡିବ ଧନୁ । ବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ବଂଶୀ ଅର୍ପଣ କରିଥିବାର ଦୃଶ୍ୟ ନାଟକ ଅଭିନୟ ହୋଇଛି ।

ଷଷ୍ଠ ଦିନର ଗୋପପୁରରେ ନାଟକ ଅଭିନୟ କରିଥିବା ଗୋପପୁରବାସୀ କୃଷ୍ଣ ଲୀଳାରେ ବିମୋହିତ ହୁଅନ୍ତି । ଗୋପପୁରରେ ଗୋପୀଙ୍କ ଦଧିବିକା ସହ ଆକର୍ଷଣୀୟ ବସ୍ତ୍ରହରଣ ଦୃଶ୍ୟ ଅଭିନୀତ ହୁଏ । ଏଥିସହ ଯମୁନା (ଜୀରା) ଆଳତିର ଦୃଶ୍ୟ ଅଭିନୀତ ହୁଏ । ବାତ୍ସଲ୍ୟ ରସରେ ବିଚଳିତ ଗୋପପୁରବାସୀ କୃଷ୍ଣ ବଳରାମଙ୍କୁ ପୂଜାର୍ଚ୍ଚନା କରନ୍ତି । ଗୋପୀମାନେ ଦଧିବିକ୍ରି ପାଇଁ ବାହାରନ୍ତି ଏବଂ ଯମୁନା ନଈରେ ଗୋପାଙ୍ଗନାମାନେ ଗାଧୋଉଥିବା ବେଳେ ନଈ କୂଳରେ ଥିବା ସେମାନଙ୍କ ବସ୍ତ୍ରକୁ ନେଇ କୃଷ୍ଣ କଦମ୍ବ ଗଛରେ ରଖିଥିଲେ । ଏହିପରି ଭାବରେ ନାଟକର ଅଭିନୟ ହୋଇଥାଏ ।

ଗୋପ ପୁରରେ ଶ୍ରୀକୃଷ୍ଣଙ୍କ ନାବ କେଳି ଦୃଶ୍ୟ ଅଭିନୀତ ହୁଏ । ଗୋପାଙ୍ଗନାଙ୍କ ସହ ରାଧା ମଥୁରାକୁ କ୍ଷୀର ବିକ୍ରି କରିବାକୁ ଯାଉଥିବା ସମୟରେ ଡଙ୍ଗାରେ ଯମୁନା ନଈ ପାରି ହେବାକୁ ଚାହିଁଥିଲେ, ମାତ୍ର ନାଉରିଆ ବେଶରେ ଥିବା ଶ୍ରୀକୃଷ୍ଣ ସେମାନଙ୍କ ଡାକ ଶୁଣି ନ ଶୁଣିଲା ଭଳି ରହିଥିଲେ । ଗୋପୀଙ୍କ ଆକୁଳ ନିବେଦନ ପରେ ସେ ନୌକା ଧରି କୂଳକୁ ଆସିଥିଲେ ଓ ଛୋଟିଆ ଡଙ୍ଗାରେ ଏତେ ଜଣଙ୍କୁ ଯମୁନା(ଜୀରା) ନଦୀ ପାରି ହେବ ନାହିଁ ଓ ଜଣ ଜଣ କରି ନଈ ପାରି କରିବି ବୋଲି କହିଥିଲେ । ସେ ପ୍ରଥମେ ରାଧାଙ୍କୁ ନୌକାରେ ବସାଇ ମଝି ନଈରେ ପହଞ୍ଚିବା ମାତ୍ରେ ଶ୍ରୀକୃଷ୍ଣ ତାଙ୍କ ପ୍ରକୃତ ରୂପ ପ୍ରକଟ କରି ଶ୍ରୀରାଧାଙ୍କ ସହ ନାବକେଳି କରିଥିଲେ ।

ଅଷ୍ଟମ ଦିନରେ– ଅକ୍ରୁର ଆଗମନ ଏବଂ ଗୋପପୁରର ବୃନ୍ଦାବନରେ କୃଷ୍ଣ ବଳରାମ କ୍ରୀଡାର ଦୃଶ୍ୟ ବେଶ୍ ମନୋମୁଗ୍ଧ କରେ । ଅଷ୍ଟମ ଦିନରେ ଗୋପପୁର (ଅମ୍ବାପାଲି)ନଗରୀରେ ଅନ୍ତିମ ଦିନରେ ବୃନ୍ଦାବନ ସାଜିଥିବା ବନକୁ ଯାଇ ଶ୍ରୀକୃଷ୍ଣ ବଳରାମ ଲୀଳା କରୁଥିବା ଦୃଶ୍ୟ ବା ନାଟକ ଦେଖିବାକୁ ଶହ ଶହ ଲୋକ ଭିଡ ଜମେଇ ଥାନ୍ତି । କୃଷ୍ଣ ବଳରାମ ଗୋପପୁରର ବୃନ୍ଦାବନରେ ଗୋପାଳ ବାଳକମାନଙ୍କ ସହିତ କ୍ରୀଡା କରନ୍ତି । ବୃନ୍ଦାବନରେ ସେମାନେ ବିଭିନ୍ନ ଗଛ ମୂଳରେ ହସ, ଖେଳ, ମଜା, ମଜଲିସ୍ କରିଥାନ୍ତି ।

ଏହିପରି ଭାବରେ ବୃନ୍ଦାବନରେ କୃଷ୍ଣ ଗୋପଲୀଳା ପ୍ରଦର୍ଶନ କରିଥିଲେ ଏବଂ ଲୋକଙ୍କୁ ଚକିତ କରିଥିଲେ । ତା' ପରେ କୃଷ୍ଣ ପାଦଟୀକା ଦେବା ପାଇଁ ଯମୁନା ନଦୀ (ଜୀରା ନଦୀ)କୁ ଯାଇଥିଲେ । ସେଇଠୁ କୃଷ୍ଣଙ୍କର ପାଦ ଚିହ୍ନ ବୃନ୍ଦାବନ ପର୍ଯ୍ୟନ୍ତ ରହିଛି ।

ଯାତ୍ରା ହେଉଛି ଓଡିଶାର ପ୍ରାଚୀନ ଅଭିନୟ ପରମ୍ପରାର ଏକ ସାର୍ଥକ ଦୃଷ୍ଟାନ୍ତ । ଏଥି ମଧ୍ୟରୁ ମଥୁରା ନଗରରେ ଚାଲିଥିବା ନାଟ୍ୟ କଂସ ରାଜା କ୍ରୋଧିତ ହୋଇ ରାଜ୍ୟ ପରିକ୍ରମା କରି ଚାରିଆଡେ ପ୍ରଚାରର ଆଦେଶ ଦେଇଥାନ୍ତି । ଭଉଣୀ ଦେବକୀଙ୍କ ଅଷ୍ଟମ ଗର୍ଭରୁ ଜାତ ହୋଇଥିବା ଶିଶୁ ବାଳକକୁ ଖୋଜି ଖୋଜି ଚାରିଆଡେ ନଗରୀ ପରିକ୍ରମା କଲେ ଏବଂ ନପାଇବାରୁ ମଥୁରା ଗଡକୁ ଅତ୍ୟାଚାର ଓ ଲୋକଙ୍କୁ ଅସ୍ତବ୍ୟସ୍ତ କରିଦେଇଥିଲେ ।

ବିଶ୍ୱପ୍ରସିଦ୍ଧ ବରଗଡ ଧନୁଯାତ୍ରା ଅନ୍ତିମ ଦିବସରେ କଂସ ବଧ । ମଥୁରା ନଗରୀରେ କୃଷ୍ଣ ଓ ବଳରାମ ବିଭିନ୍ନ ସ୍ଥାନ ଭ୍ରମଣ କରିଥିଲେ । ମଥୁରାର ଘରେ ଘରେ କୃଷ୍ଣ ବଳରାମଙ୍କୁ ପୂଜାର୍ଚ୍ଚନା କରାଯାଇଥିଲା । ରାଜ ଦରବାରରେ ବ୍ୟସ୍ତ ହୋଇ ପଡୁଥିଲେ ମହାରାଜ କଂସ । କୃଷ୍ଣ ବଳରାମ ନଗର ଭ୍ରମଣ ସାରି ରାଜଦରବାର ସମ୍ମୁଖରେ ପହଁଞ୍ଚିଲେ । ବାଟ ଓଗାଳିବାରୁ କୁବଳୟା ହସ୍ତୀକୁ ବଧ କରି କୃଷ୍ଣ ଓ ବଳରାମ କଂସର ଅଷ୍ଟମଲ୍ଲଙ୍କୁ ବଧ କରିଥିଲେ । ଏହା ପରେ ରଙ୍ଗେଶ୍ୱର ମନ୍ଦିରରେ ପୂଜା ପାଉଥିବା ଶିବ ଧନୁକୁ ହାତରେ ଧରି ଗୁଣ ଚଢାଇବା ବେଳେ ତାହା ଦୁଇଖଣ୍ଡ ହୋଇଯାଇଥିଲା । ଶିବଧନୁ ଭାଙ୍ଗିବା ସୂଚନା ପାଇ ମହାରାଜା କଂସ ବ୍ୟସ୍ତ ବିବ୍ରତ ହୋଇ ପଡିଥିଲେ । ମହାରାଜା କଂସ ପ୍ରସ୍ତୁତ ହୋଇଯାଇଥିଲେ ଯୁଦ୍ଧ କରିବା ପାଇଁ । ଘମାଘୋଟ ଲଢେଇ କରିବା ପାଇଁ କୃଷ୍ଣ ଓ ବଳରାମ ମଞ୍ଚ ଉପରକୁ ଚଢି ଯିବାରୁ କଂସଙ୍କ ହୃଦ୍‌ସ୍ପନ୍ଦନ ବନ୍ଦ ହୋଇ ଯାଇଥିଲା ଓ ମଞ୍ଚରୁ ପଡି ମୃତ୍ୟୁ ହୋଇଥିଲା ।

ଗବେଷିକା, କିଟ୍, କିସ୍ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ମହାନ୍ ପୁରୁଷ ବିଜୁ ପଟ୍ଟନାୟକ

**ଭବାନୀ ପ୍ରସାଦ ପଣ୍ଡା**

ବିଜୟାନନ୍ଦ ପଟ୍ଟନାୟକ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତାଙ୍କ ନାମ ଆଶାଲତା ଦେବୀ । ମାତା-ପିତାଙ୍କ ପ୍ରଭାବ ବିଜୁବାବୁଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । କଟକର ମିଶନ୍ ସ୍କୁଲରେ ବିଜୁବାବୁଙ୍କ ପାଠପଢ଼ା ଆରମ୍ଭ ହୋଇଥିଲା । ମାଟ୍ରିକ୍ ପାଶ୍ କରି ୧୯୩୨ରେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଅନୁଷ୍ଠିତ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା ମହାବିଦ୍ୟାଳୟରେ ଆଇ.ଏସ୍‌ସି ପାଠ୍ୟକ୍ରମରେ ନାମ ଲେଖାଇଥିଲେ । ରେଭେନ୍ସାରୁ ଶିକ୍ଷାଲାଭ କରି ବିଜୁବାବୁ ଏରୋନଟିକାଲ ଫ୍ଲାଇଙ୍ଗ୍ କ୍ଲବ୍‌ରୁ ବିମାନଚାଳନା ଶିକ୍ଷା ହାସଲ କରିଥିଲେ । ଶିଶୁ ସମୟରୁ ହିଁ ବିଜୁବାବୁଙ୍କ ଅସାଧାରଣ ପ୍ରତିଭାର ପରିଚୟ ମିଳିଥିଲା ।

ସ୍କୁଲ ଓ କଲେଜରେ ପଢ଼ିବା ସମୟରେ ବିଜୁବାବୁ ନିଜ ସାହସ ଓ ଇଚ୍ଛାଶକ୍ତିର ଅନେକ ପ୍ରମାଣ ଦେଇ ଭାରତବାସୀ ଓ ଓଡ଼ିଶାବାସୀଙ୍କ ଅତି ପ୍ରିୟ ହୋଇପାରିଥିଲେ ।

ମହାତ୍ମା ଗାନ୍ଧୀ ଓଡ଼ିଶା ଆସିଥିବା ସମୟରେ କଟକର ସ୍ୱରାଜ ଆଶ୍ରମରେ ସଭାର ଆୟୋଜନ ହୋଇଥାଏ । ଭିଡ ମଧ୍ୟରେ ବିଜୁବାବୁ ଗାନ୍ଧୀଙ୍କୁ ଦେଖିବାକୁ ଅଗ୍ରସର ହେଉଥାନ୍ତି । ଗୋରାଫଉଜ ବିଜୁବାବୁଙ୍କୁ ଆଗକୁ ନଯିବାକୁ ବାରଣ କଲେ ମାତ୍ର ଗୋରା ଫଉଜଙ୍କ କଥାକୁ ଖାତିର ନକରି ବିଜୁବାବୁ ଆଗକୁ ଯାଉଥିବା ସମୟରେ ତାଙ୍କ ମୁଣ୍ଡରେ ଲାଠି ପ୍ରହାରର ଆଘାତରେ ତାଙ୍କ ମୁଣ୍ଡରୁ ରକ୍ତ ଧାରଧାର ହୋଇ ବାହାରୁଥାଏ । ପରେ ବିଜୁବାବୁ ଉକ୍ତ ପ୍ରହାରକାରୀଙ୍କ ଗୋଡ ଭାଙ୍ଗିବାବୁ ପଛାଇ ନଥିଲେ ।

ମିଶନ୍ ସ୍କୁଲରେ ପଢୁଥିବା ସମୟରେ କଟକ କିଲ୍ଲା ପଡିଆରେ ଏକ ଛୋଟ ବିମାନ ଅବତରଣ କରିଥିଲା । ସେହି ବିମାନକୁ ପାଖରୁ ଦେଖିବା ଓ ଛୁଇଁବାର ଇଚ୍ଛାକୁ ବିଜୁବାବୁ ଦମନ କରିପାରିନଥିଲେ, ଏଥିପାଇଁ ଗୋରା ସିପାହୀ ବିଜୁବାବୁଙ୍କୁ ବାଧା ଦେଇଥିଲେ । ସେହି ଘଟଣାରୁ ବିଜୁବାବୁ ଶପଥ ନେଇଥିଲେ ଭବିଷ୍ୟତରେ ଜଣେ ପାଇଲଟ୍ ହେବାକୁ ।

ପାଠ ପଢ଼ିବା ସମୟରେ କଲେଜରେ ଦୌଡରେ ଚାମ୍ପିଅନ୍ ହୋଇଥିବା ସମୟରେ କଲେଜର ଫୁଟ୍‌ବଲ୍ ଓ ହକିଦଳରେ ମଧ୍ୟ ସ୍ଥାନ ପାଇଥିଲେ ।

କଲେଜରେ ବି.ଏସ୍‌ସି ପଢିବା ସମୟରେ ନିଜ ବନ୍ଧୁ ଅମର ଓ ଭ୍ରମରଙ୍କ ସହ କଟକରୁ ପେଶାଓ୍ୱାର ପର୍ଯ୍ୟନ୍ତ ୩ହଜାର

କିଲୋମିଟର ସାଇକେଲରେ ଯାତ୍ରା କରିଥିଲେ । କୌଣସି ବଣ, ଜଙ୍ଗଲ, ବନ୍ୟଜନ୍ତୁ, ଡକାୟତଙ୍କ ପ୍ରତି ବିଜୁବାବୁଙ୍କ ଭୟ ନଥିଲା । ବୈମାନିକ ତାଲିମ ଶେଷ କରିବା ପରେ ବିଜୁବାବୁ ବ୍ରିଟିଶ୍ ବାୟୁସେନାରେ ଜଣେ ପାଇଲଟ୍ ଭାବରେ ଯୋଗ ଦେଇଥିଲେ । ପରେ ନିଜର କୃତିତ୍ୱ ଯୋଗୁଁ ସେ ଏୟାରୱେଜରେ ପ୍ରଥମ ପାଇଲଟ୍‌ଭାବେ ଯୋଗଦେଇ ପରବର୍ତ୍ତୀ ସମୟରେ ମୁଖ୍ୟ ପାଇଲଟ୍ ପଦକୁ ଉନ୍ନୀତ ହୋଇଥିଲେ ।

୧୯୩୯ ମସିହାରେ କାଶ୍ମୀରର ଏକ ପ୍ରଭାବଶାଳୀ ପରିବାରର କନ୍ୟା ଜ୍ଞାନଦେବୀଙ୍କୁ ବିଜୁବାବୁ ବିବାହ କରିଥିଲେ । ଜ୍ଞାନଦେବୀ ଓ ବିଜୁବାବୁ ଦୁଇପୁତ୍ର ଓ ଏକ କନ୍ୟାର ଜନକ/ଜନନୀ ହେବାର ସୌଭାଗ୍ୟ ଲାଭ କରିଥିଲେ । ପୁତ୍ର ପ୍ରେମ ପଟ୍ଟନାୟକ ଶିଳ୍ପପତି ହୋଇଥିବା ବେଳେ ନବୀନ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ଏକମାତ୍ର କନ୍ୟା ଗୀତା ଜଣେ ଲେଖିକା ଭାବେ ଖ୍ୟାତି ଅର୍ଜନ କରିଛନ୍ତି ।

୧୯୪୨ ମସିହାରେ ଗାନ୍ଧୀ ବ୍ରିଟିଶ୍ ବିରୋଧୀ 'ଭାରତଛାଡ ଆନ୍ଦୋଳନ'ର ଡାକରା ଦେଇଥାନ୍ତି । କଂଗ୍ରେସ ନେତାମାନେ ଘରୁ ବାହାରିବା ସମ୍ଭବ ହେଉନଥିଲା । ମାତ୍ର ପାଇଲଟ୍ ବିଜୁବାବୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିମାନଯୋଗେ ନେବା ଆଣିବା କରିଥିଲେ । ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ପରେ ବିଜୁବାବୁ ବ୍ରିଟିଶ୍ ବାୟୁସେନାରେ କାର୍ଯ୍ୟ କରୁଥିଲେ ।

ବ୍ରିଟିଶ ସରକାରଙ୍କ ଜଣେ କର୍ମଚାରୀଭାବେ ବିଜୁବାବୁ କାର୍ଯ୍ୟ କରୁଥିଲେ । ମାତ୍ର ସ୍ୱାଧୀନତା ସଂଗ୍ରାମ ପ୍ରତି ନିଜ ଆନୁଗତ୍ୟ ଜାହିର କରିବାକୁ ବିଜୁବାବୁ ପଛାଉ ନଥିଲେ । ବିଜୁବାବୁ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ମୁକ୍ତି ସଂଗ୍ରାମକୁ ସମର୍ଥନ ଜଣାଇ ଆକାଶମାର୍ଗରୁ ଲିଫ୍‌ଲେଟ୍ ପକାଇବାରେ ଅବହେଳା କରୁନଥିଲେ । ବିଜୁବାବୁ ତାଙ୍କର ଏହି କାର୍ଯ୍ୟକଳାପ ବ୍ରିଟିଶ ସରକାରଠାରୁ ବେଶୀ ଦିନ ଲୁଚାଇ ପାରିନଥିଲେ । ୧୯୪୩ ଜାନୁଆରୀ ୧୩ ତାରିଖରେ ବ୍ରିଟିଶ୍ ପୋଲିସ ଗିରଫ କରିଥିଲା । ତା'ପରେ ବିଜୁବାବୁଙ୍କ ବିଚାର ହୋଇ ତାଙ୍କୁ ଦୁଇବର୍ଷ ଜେଲ ଦଣ୍ଡ ମିଳିଥିଲା । ୧୯୪୫ ମସିହା ପର୍ଯ୍ୟନ୍ତ ବନ୍ଦୀଜୀବନ ଲାଲ୍‌କିଲ୍ଲା, ଫିରୋଜପୁର ଓ କଟକ ଜେଲ୍‌ରେ ବିଜୁବାବୁ କଟାଇଥିଲେ ।

ବିଜୁବାବୁଙ୍କ ନିର୍ଭୀକତା ତାଙ୍କର ପ୍ରତ୍ୟେକ କାର୍ଯ୍ୟକଳାପରେ ଦେଖିବାକୁ ମିଳିଥିଲା । ନିଜର ବିଚକ୍ଷଣ ବୁଦ୍ଧି ଦ୍ୱାରା ସେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗୁପ୍ତରେ ବିମାନରେ ନେବା ଆଣିବା କରିବାକୁ ନିଜ ସାଥୀ ପାଇଲଟ୍‌ମାନଙ୍କୁ ପ୍ରବର୍ତ୍ତାଇ ପାରିଥିଲେ ।

ବିଜୁବାବୁଙ୍କ ଅଦମ୍ୟ ସାହସ ଓ ସାହାଯ୍ୟ ବିନା ବମ୍ବେ, କଲିକତା, ମାଡ୍ରାସ୍ ଓ ଦିଲ୍ଲୀରେ ଆତ୍ମଗୋପନ କରିଥିବା ଅନ୍ୟ ସ୍ୱାଧୀନତା ସଂଗ୍ରାମୀଙ୍କ ସହ ଯୋଗାଯୋଗ କରିବା ଅସମ୍ଭବ ହୋଇଥାନ୍ତା ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଜବାହରଲାଲ ନେହେରୁଙ୍କ ଅତି ପ୍ରିୟ ହୋଇପାରିଥିଲେ ବିଜୁବାବୁ । ୧୯୪୫ ମସିହା ଅଗଷ୍ଟ ୧୭ ତାରିଖରେ ଇଣ୍ଡୋନେସିଆ ନିଜକୁ ସ୍ୱାଧୀନ ରାଷ୍ଟ୍ରଭାବେ ଘୋଷଣା କଲା । ଡକ୍ଟର ସୁକର୍ଣ୍ଣ ନୂତନ ରାଷ୍ଟ୍ରପତି ହୋଇଥାନ୍ତି । ଡକ୍ଟର ସୁଲତାନ ସାହାରିୟର ପ୍ରଧାନମନ୍ତ୍ରୀ ନିଯୁକ୍ତ ହୋଇଥାନ୍ତି । ଭାରତ ସରକାର ନେହେରୁଙ୍କ ନେତୃତ୍ୱରେ କାମ କରୁଥିବା ସମୟରେ ଏକ ଚୁକ୍ତି କରିଥିଲେ । ଚୁକ୍ତି ଅନୁସାରେ ଭାରତ ଇଣ୍ଡୋନେସିଆରୁ ୪୦ ହଜାର ଟନ୍ ଚାଉଳ ଆମଦାନୀ କରି ପ୍ରତିବଦଳରେ ଇଣ୍ଡୋନେସିଆକୁ କପଡା, କୃଷି ଯନ୍ତ୍ରପାତି, ଟାୟାର୍ ଓ ଅନ୍ୟ ସାମଗ୍ରୀ ରପ୍ତାନୀ କରିବ । ଏହି ଚୁକ୍ତିଦ୍ୱାରା ଦୁଇଦେଶର ସମ୍ପର୍କରେ ଅଧିକ ଉନ୍ନତି ହେଲା ।

୧୯୪୭ ମାର୍ଚ୍ଚ ୨୫ ତାରିଖରେ ନେହେରୁ ୨୨ଟି ଏସୀୟ ରାଷ୍ଟ୍ରମାନଙ୍କର ଏକ ସମ୍ମିଳନୀ ଡକାଇଥାନ୍ତି । ଏହି ସମ୍ମିଳନୀକୁ ଇଣ୍ଡୋନେସିଆ ପ୍ରଧାନମନ୍ତ୍ରୀ ସାହାରିୟରଙ୍କୁ ସ୍ୱତନ୍ତ୍ରଭାବେ ନିମନ୍ତ୍ରଣ କରାଯାଇଥାଏ । ଜଳ, ସ୍ଥଳ, ଆକାଶ ସବୁଠାରେ ହଲାଣ୍ଡ ସେନା ଆଧିପତ୍ୟ ବିସ୍ତାର କରିଥାଏ । ସେତେବେଳେ ନେହେରୁ ବିଜୁବାବୁଙ୍କ ସାହାଯ୍ୟ ଓ ସହଯୋଗ ଲୋଡିଥିଲେ । ବିଜୁବାବୁ ନିଜେ ଇଣ୍ଡୋନେସିଆ ଉପ-ରାଷ୍ଟ୍ରପତି ମହମ୍ମଦ ହଟ୍ଟାଙ୍କୁ ସୁମାତ୍ରାରୁ ଉଦ୍ଧାର କରିଥିଲେ । ସାହାରିୟରଙ୍କୁ ଉଦ୍ଧାର କରିବା ପାଇଁ ନେହେରୁଙ୍କ ଅନୁରୋଧକୁ ରକ୍ଷା କରି ବିଜୁବାବୁ ମୃତ୍ୟୁକୁ ନ ଡରି ନିଜ ବିମାନକୁ ଜାପାନୀମାନଙ୍କ କିଛି ବ୍ୟାରେଲ୍ ଇନ୍ଧନକୁ ବ୍ୟବହାର କରି ହଲାଣ୍ଡ ସେନା ଆଖିରେ ଧୂଳିଦେଇ ଜାକର୍ତ୍ତା ଯାଇ ସେଠାରୁ ସାହାରିୟରଙ୍କୁ ଧରି ସିଙ୍ଗାପୁର

ଦେଇ ଦିଲ୍ଲୀ ଫେରିଥିଲେ । ଏହି କାର୍ଯ୍ୟ ପାଇଁ ବିଜୁବାବୁଙ୍କୁ ଇଣ୍ଡୋନେସିଆ ପକ୍ଷରୁ ସମ୍ମାନିତ କରାଯାଇଥିଲା । ପ୍ରଥମେ ତାଙ୍କୁ ଇଣ୍ଡୋନେସିଆର ସର୍ବୋଚ୍ଚ ବେସାମରିକ ସମ୍ମାନ 'ଭୂମିପୁତ୍ର' ଓ ସର୍ବୋଚ୍ଚ ଜାତୀୟ ସମ୍ମାନ 'ବିନ୍‌ତାଙ୍ଗ୍ ଯଶ ଉତ୍ତମ' ସମ୍ମାନରେ ସମ୍ମାନିତ କରାଯାଇଥିଲା । ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ବିଜୁବାବୁଙ୍କର ଅବଦାନ ପାଇଁ ସୁକର୍ଣ୍ଣ ତାଙ୍କୁ ୫୦୦ କୋଟି ଟଙ୍କା ମୂଲ୍ୟର ଉପହାର ପ୍ୟାକେଜ୍ ପ୍ରଦାନ କରିଥିଲେ । ମାତ୍ର କଳିଙ୍ଗ ବୀର ବିଜୁବାବୁ ଏହାକୁ ଅତ୍ୟନ୍ତ ନମ୍ରତାର ସହ ପ୍ରତ୍ୟାଖ୍ୟାନ କରିଥିଲେ । ସେଥିପାଇଁ ଆଜିବି ଇଣ୍ଡୋନେସିଆବାସୀ ବିଜୁବାବୁଙ୍କୁ ନିଜ ଆତ୍ମୀୟଭାବେ ବିବେଚନା କରନ୍ତି ।

ବିଜୁବାବୁ ବ୍ରିଟିଶ୍ ବିମାନ ବାହିନୀରେ କାର୍ଯ୍ୟ କରୁଥିବା ସମୟରେ ଜାପାନର ଘନ ଘନ ଆକ୍ରମଣ ମଧ୍ୟରେ ସାହସିକତାର ପରିଚୟ ଦେଇ ବ୍ରିଟିଶ୍ ନାଗରିକମାନଙ୍କୁ ବର୍ମାର ରେଙ୍ଗୁନରୁ ଭାରତ ସ୍ଥାନାନ୍ତର କରିଥିଲେ । ତାହା ବ୍ରିଟିଶ ସରକାରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ବ୍ରିଟିଶ୍ ବାହିନୀର ପାଇଲଟ୍‌ଭାବେ ଚୀନ୍ ଓ ତତ୍କାଳୀନ ସୋଭିଏତ ଋଷକୁ ବିଭିନ୍ନ ସାମଗ୍ରୀ ଯୋଗାଣ କରିଥିଲାବେଳେ ଚୀନ୍‌ର ବିପ୍ଲବୀମାନଙ୍କୁ ସାହାଯ୍ୟ କରିବା ପାଇଁ ଅନେକଥର ଅଗମ୍ୟ ହିମାଳୟ ଉପରେ ବିମାନ ଚାଳନା କରିବାର ଗୌରବ ଅର୍ଜନ କରିଛନ୍ତି ।

୧୯୪୭ ମସିହା ଅକ୍ଟୋବର ୨୨ ତାରିଖରେ ପାକିସ୍ତାନ କାଶ୍ମୀର ଉପରେ ଆକ୍ରମଣ କରିଥିଲା । ମହାରାଜା ହରି ସିଂ କାଶ୍ମୀର ଶାସନ କରୁଥାନ୍ତି । ପାକିସ୍ତାନ ଆକ୍ରମଣରୁ ବିମାନକୁ ରକ୍ଷା କରିବାକୁ ହେଲେ ଅତି ଉଚ୍ଚରେ ବିମାନ ଉଡାଇବା ଆବଶ୍ୟକ ହେଉଥିଲା । ଅଧିକ ଉଚ୍ଚରେ ଉଡିବାକୁ ହେଲେ ଅମ୍ଳଜାନ ଦରକାର ହୋଇଥାଏ । ଭାରତୀୟ ବାୟୁସେନା ପାଇଲଟ୍‌ଙ୍କୁ ଅମ୍ଳଜାନ ଦିଆଯାଇନଥିଲା । କିଛି ଦୁଃସାହସୀ ପାଇଲଟ୍ ହିଁ ଏହି କାର୍ଯ୍ୟ କରିପାରିବେ ବୋଲି ସର୍ବସମ୍ମତି ପ୍ରକାଶ ପାଇଲା ପରେ ଗୋଟିଏ ନାମ ନେହେରୁଙ୍କ ମୁଣ୍ଡକୁ ଆସିଥିଲା । ତାହା ଥିଲା ବିଜୁ ପଟ୍ଟନାୟକ । ବିଜୁବାବୁଙ୍କ ଯୋଗୁଁ ଶ୍ରୀନଗର ବିମାନ ବନ୍ଦରରେ ପ୍ରଥମ ପ୍ଲାଟୁନ୍ ଭାରତୀୟ ସେନା ଅବତରଣ କରିବାକୁ ସକ୍ଷମ ହୋଇଥିଲା ।

ଚୀନ୍ ଆକ୍ରମଣ ସମୟରେ ସେ ଭାରତୀୟ ସ୍ଥଳସେନା ଯବାନଙ୍କୁ ନେଫା, (ଅରୁଣାଚଳ) ଲଦାଖର ବରଫାବୃତ୍ତ ଅଞ୍ଚଳରେ ଶୀତପୋଷାକ, ଖାଦ୍ୟଦ୍ରବ୍ୟ ଓ ଔଷଧ ଯୋଗାଇ ଥିଲେ ।

ସ୍ୱାଧୀନ ଭାରତର ସରକାର ନିୟମିତ ସେନା ବ୍ୟତୀତ ଯେଉଁ ରିଜର୍ଭସେନା ରଖିଥିଲେ, ସେଥିରେ ବିଜୁବାବୁ ସାମିଲ ହୋଇ ଦେଶମାତୃକାର ସେବା କରିବାର ସୁଯୋଗ ପାଇଥିଲେ ।

ଅଦମନୀୟ ତଥା ନିର୍ଭୀକ ବିଜୁବାବୁ ରାଜନୀତି କ୍ଷେତ୍ରରେ ନିଜର ସ୍ୱତନ୍ତ୍ର ପରିଚୟ ଜାହିର କରିଛନ୍ତି । ସେ ବିଭିନ୍ନ ଦଳ ଓ ପଦପଦବୀରେ ଥିଲେ ମଧ୍ୟ ଦଳୀୟ ସଂକୀର୍ଣ୍ଣତା ତଥା କ୍ଷମତା ସର୍ବସ୍ୱ ରାଜନୀତିର ଘୋର ବିରୋଧୀ ଥିଲେ । ସେ ଦୁଇଥର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରମନ୍ତ୍ରୀ ହେବାର ସୌଭାଗ୍ୟ ଲାଭ କରିଥିଲେ । ପାରାଦୀପ ବନ୍ଦରର ସ୍ରଷ୍ଟା ଥିଲେ ବିଜୁ ପଟ୍ଟନାୟକ । ସେ ନେହେରୁଙ୍କ ଅତିପ୍ରିୟ ଥିଲେ । ତାଙ୍କର ପ୍ରଥମ ଶିଳ୍ପ ପ୍ରତିଷ୍ଠା ଥିଲା 'କଳିଙ୍ଗଟ୍ୟୁବ୍ସ', ଓଟିଏମ୍ କପଡା କାରଖାନା । ଦୈତାରୀରୁ ଲୁହାପଥର ପ୍ରେରଣ ପାଇଁ ହାଇରୋଡ୍ ପ୍ରତିଷ୍ଠା କରି ପାରାଦୀପକୁ ତ୍ୱରିତ୍ ହାଇୱେ ନିର୍ମାଣ କରିଥିଲେ ।

ରାଉରକେଲା ଓ ବୁର୍ଲା ଇଞ୍ଜିନିୟରିଂ କଲେଜ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ସମ୍ବଲପୁର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ସୁନାବେଡା ମିଗ୍ ବିମାନ କାରଖାନା, ରେଙ୍ଗାଲି ଜଳ ବିଦ୍ୟୁତ୍ ଯୋଜନା, ତାଳଚେର ତାପଜ ବିଦ୍ୟୁତ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା ଓଡ଼ିଶାକୁ ବିଜୁବାବୁଙ୍କ ଅବଦାନ ।

୧୯୯୭ ମସିହା ଏପ୍ରିଲ ୧୭ରେ ନୂଆଦିଲ୍ଲୀଠାରେ ତାଙ୍କର ମହାପ୍ରୟାଣ ହୋଇଥିଲା । ଶେଷରେ ଜଗନ୍ନାଥଙ୍କୁ ଭକ୍ତି କରୁଥିବା ବିଜୁବାବୁଙ୍କ ଅନ୍ତ୍ୟେଷ୍ଟିକ୍ରିୟା ପୁରୀ ସ୍ୱର୍ଗଦ୍ୱାରଠାରେ ସମ୍ପନ୍ନ ହୋଇଥିଲା ।

ଗ୍ରାମ/ପୋଷ୍ଟ– ତରୋତ ଶାସନ
କଟକ–୭୫୪୨୦୯

# ଓଡ଼ିଶାର ଜନଜୀବନରେ ଏକ ବିରଳ ଜନଜାତି 'ବାଥୁଡ଼ି'

ଦେବୁ ପଟ୍ଟନାୟକ

ସୃଷ୍ଟିର ବିସ୍ମୟ ମାନବ ସମାଜ ଆଜକୁ ପ୍ରାୟ ଏକ ନିୟୁତ ବର୍ଷ ତଳେ ଭାରତ, ଆଫ୍ରିକା, ଓ ଅଷ୍ଟ୍ରେଲିଆରେ ଜନ୍ମଲାଭ କଲାବେଳକୁ ଭଂଜଭୂମିରେ ଏହି ମାନବ କିନ୍ତୁ ବିକାଶ ଲାଭ କରି ସାରିଥିଲା ।

ଭୂ-ବୈଜ୍ଞାନିକମାନଙ୍କ ମତରେ ଶିମିଳିପାଳ ପର୍ବତମାଳା ଅଠତିରିଶ ନିୟୁତ ବର୍ଷ ପୂର୍ବରୁ ଗଠିତ ହେବା ସଂଗେସଂଗେ ଷୋହଳଶହ ନିୟୁତ ବର୍ଷ ବେଳକୁ ଜୀବଜଗତର ପ୍ରଥମ ପଦଚିହ୍ନ ଦେଖିବାର ସୌଭାଗ୍ୟ ହାସଲ କରିଥିଲା । ଭୂ-ବୈଜ୍ଞାନିକଙ୍କ ପ୍ରମାଣ ସହ ତାଳ ଦେଇ ପୁରାତନ ପ୍ରସ୍ତରଯୁଗର ମାନବଙ୍କ ସଭ୍ୟତାର ଭୂରିଭୂରି ପ୍ରମାଣ ମୟୂରଭଂଜ, କେନ୍ଦୁଝର ଓ ଛୋଟନାଗପୁରର ଅତ୍ରତତ୍ର ସର୍ବତ୍ର ଦେଖିବାକୁ ମିଳେ । ବୈତରଣୀର ଉପକୂଳବର୍ତ୍ତୀ ଉପତ୍ୟକା ଚମ୍ପୁଆ, ରମଳା, ଜଗନ୍ନାଥପୁର, ପାଟଣା ଆଦି ନୂତନ ପ୍ରସ୍ତର ଯୁଗର ଆଦିକାଳରେ ବ୍ୟବହୃତ ସମ୍ୟକ ମାର୍ଜିତ ପ୍ରସ୍ତର ଅସ୍ତ୍ରଶସ୍ତ୍ର ଯଥା– କୋଡ଼ି, ଖଣତି, ଶାବଳ ଓ ଦାଆ ଭଳି ଯନ୍ତ୍ରପାତି ଏହି ମାନବ ସଭ୍ୟତା ବିକାଶର ହେତୁକୁ ପରିପୁଷ୍ଟ କରିଛି । ତେବେ ଏସବୁ ସଭ୍ୟତା ମୂଳରେ ଯେଉଁ ଜନଜାତିଙ୍କ ଅଶେଷ ଅବଦାନ ସଭ୍ୟତାକୁ ପରିପୁଷ୍ଟ କରିଥିଲା ସେମାନଙ୍କ ମଧ୍ୟରେ ଜୁଆଙ୍ଗ, ଭୂୟାଁ, ଗଣ୍ଡ ଓ ବାଥୁଡ଼ି ଅନ୍ୟତମ ।



ମୟୂରଭଂଜ, କେନ୍ଦୁଝର, ଛୋଟନାଗପୁର ଓ ବାଲେଶ୍ୱରର ନୀଳଗିରି ଅଂଚଳରେ ବସବାସ କରୁଥିବା ବାଥୁଡ଼ି ସଂପ୍ରଦାୟ ଏକ ସରଳ ଅମାୟିକ ଜନଜାତି । ବାଥୁଡ଼ି ପୁରୁଷ ଦେଖିବାକୁ ଉଭୟ ଖର୍ବକାୟ ଓ ଡେଙ୍ଗା । ଦେହର ରଙ୍ଗ ଗୋରା ନଚେତ୍ ଈଷତ୍ ପାଉଁଶିଆ । ଉନ୍ନତ କପାଳ, ସାଧାରଣ ନାସିକା । ସ୍ତ୍ରୀ ଲୋକେ ଦେଖିବାକୁ ବେଶ୍ ସୁଠାମ । ଏହି ସଂପ୍ରଦାୟର ଲୋକେ ସାଧାରଣତଃ କୃଷିଜୀବୀ । କୃଷି ସେମାନଙ୍କର ମୁଖ୍ୟ ଜୀବିକା ହେଲେହେଁ ଏବେ 'ବାଥୁଡ଼ି' ସଂପ୍ରଦାୟର ଯୁବକ ଚାକିରି ଓ ବ୍ୟବସାୟରେ ନିୟୋଜିତ ହେଲେଣି ।

'ବାଥୁଡ଼ି' ସଂପ୍ରଦାୟର ସଂସ୍କୃତି ସ୍ୱତନ୍ତ୍ର ଓ ପର୍ଯ୍ୟବେକ୍ଷଣୀୟ । ମୂଳରୁ ଏକ ଯୁଦ୍ଧଖୋର ସ୍ୱାଧୀନ ପିୟାସୀ ବାଥୁଡ଼ିମାନେ ଯେ ଓଡ଼ିଶାର ପ୍ରାଚୀନ ପାଇକମାନଙ୍କ ପରି ବୀର, ଶୂର ଓ ସାହସୀ ତାହା ସେମାନଙ୍କର ନାମ ଓ ଉପାଧିରୁ ଜଣାପଡ଼େ । ବାଥୁଡ଼ିମାନଙ୍କ ଉପାଧି ଦଣ୍ଡସେନା, ନାୟକ,

ଦଳେଇ, କୁସୁମାଳିଆ, ରଣସିଂହ, ପଧୁରିଆ, ପଢ଼ିଆଳ ସେନାପତି, ଦଳଦସିଆ, ଖଣ୍ଡେଇ, ବିଶ୍ୱାଳ ସଂଗକୁ ବଡ଼ନାୟକ ଆଦି ତାହାଙ୍କୁ ଏକ ଯୁଦ୍ଧଖୋର ବୀରଜାତି ରୂପେ ପ୍ରମାଣ ଦିଏ ।

ବାଥୁଡ଼ିମାନେ କଳାପ୍ରିୟ । ସେମାନଙ୍କ ଘରର କାନ୍ଥ, କବାଟ ଓ ଘରର ଚଟାଣର ଚିତ୍ରକଳା ଦେଖିଲେ ଯେ କେହି ଆଶ୍ଚର୍ଯ୍ୟ ନହୋଇ ରହିପାରିବ ନାହିଁ । ବାଥୁଡ଼ିମାନଙ୍କର ଦଉଡ଼ିଆ ଖଟ, ଆଲୁମିନିୟମ ବାସନ, ପଟିଆ ମସିଣା ଓ ଅନନ୍ୟ କୁଟୀର କଳାର ନିଦର୍ଶନ । ଚାଙ୍ଗୁବାଦ୍ୟ ବାଥୁଡ଼ିଙ୍କର ପ୍ରିୟବାଦ୍ୟ । ନିଜର ଇଷ୍ଟଦେବତାର ପୂଜା ଉପାସନା ବେଳେ ବା ବିଭିନ୍ନ ପର୍ବପର୍ବାଣି ପାଳନ ବେଳେ ବାଥୁଡ଼ି ଡାଙ୍ଗୁଆ, ଡାଙ୍ଗୁଳୀ ଚାଙ୍ଗୁବାଦ୍ୟ ସହ ଗୀତ ଗାଇ ନାଚିଥାନ୍ତି । ବାଥୁଡ଼ି ସ୍ତ୍ରୀ ଲୋକ ଭକ୍ତିପ୍ରାଣା, ଉତ୍ତମ ଗୃହିଣୀ ଓ ଅତିଥି ପରାୟଣା ହେଲେ ବି ସୌଖିନ ପ୍ରିୟ । ସେ ତା'ର ଚିରାଚରିତ ଗହଣା, ପୋଷାକପତ୍ର ପିନ୍ଧିବାକୁ ଭଲ ପାଉଥିଲେ ହେଁ ଏବେ କାଳର ଆଧୁନିକ ପୋଷାକ ଓ ଗହଣାଗାଣ୍ଠି ପ୍ରତି ବିମୁଖ ନୁହେଁ ।

ବାଥୁଡ଼ିମାନଙ୍କର ସ୍ୱତନ୍ତ୍ର ଭାଷା ନାହିଁ ବୋଲି କୁହାଯାଏ । କିନ୍ତୁ କେନ୍ଦୁଝର ଗେଜେଟ୍‌ରେ ବାଥୁଡ଼ିମାନଙ୍କର ଭାଷା 'ହୋ' ବୋଲି ସୂଚନା ଦିଆଯାଇ ଥିଲେ ହେଁ ବାଥୁଡ଼ି ମୁଖ୍ୟତଃ ଓଡ଼ିଆ ଭାଷା କହେ । ତା'ର ଗୀତ, କଥିକା, ସ୍ମୃତି, ପହେଳି, ଶିଶୁଗୀତ ଜନଶ୍ରୁତି, କିମ୍ବଦନ୍ତୀରୁ ଜଣାଯାଏ ଯେ ବାଥୁଡ଼ି ଗୋଟିଏ ପ୍ରାଚୀନ ଓଡ଼ିଆ ଜନଜାତି ।

'ବାଥୁଡ଼ି' ସଂସ୍କୃତି କହିଲେ ବଡ଼ାମ ସଂସ୍କୃତିକୁ ବୁଝାଏ । ବଡ଼ାମ ଠାକୁର ଏ ଜାତିର ଆରାଧ୍ୟ ଦେବତା । ଏ ଠାକୁରଙ୍କୁ ନେଇ ବାଥୁଡ଼ିଙ୍କର ସଂସ୍କୃତି ଓ ସ୍ୱାଭିମାନ ଗଠିତ ହୋଇଛି । ବଡ଼ାମ ଠାକୁର ଜଗନ୍ନାଥଙ୍କ ବଡ଼ଭାଇ ''ବଳରାମ''ଙ୍କୁ ବୁଝାଏ ବୋଲି କେହି କେହି ଗବେଷକ କହନ୍ତି । ଗବେଷକଙ୍କ ମତରେ ବଳରାମ କୃଷିର ପ୍ରତୀକ ଓ ବାଥୁଡ଼ି କୃଷିଜୀବୀ ଜାତି ଅଟେ । ତେଣୁ ବଳରାମ ବା ବଡ଼ାମ ଏହି ଜାତିର ଆରାଧ୍ୟ ହେବାରେ ଦ୍ୱିଧା ରହେ ନାହିଁ । ପୁରାତନ ବାଥୁଡ଼ି ନିଜକୁ ବିଶ୍ୱାବସୁଙ୍କ ବଂଶଧର ବୋଲି ଦାବି କରୁଥିବାରୁ ବଳରାମଙ୍କ ବଡ଼ାମ ସହିତ ତୁଳନା ଗର୍ହିତ ବୋଲି ମନେ ହୁଏ ନାହିଁ । ବାଥୁଡ଼ିଙ୍କର ଅତିପ୍ରିୟ ଅଠର ଦେଉଳ, ବଡ଼ାମ ଠାକୁର ଓ ତା'ର ସଂସ୍କୃତି ଜଗନ୍ନାଥଙ୍କ ସଂସ୍କୃତି ଓ ଶ୍ରୀମନ୍ଦିର ପାର୍ଶ୍ୱ ଦେବତାଙ୍କ ସହ ସାମଞ୍ଜସ୍ୟ ଥିବାର ଜଣାଯାଏ । ବଡ଼ାମ ବାଥୁଡ଼ିଙ୍କର ମୁଖ୍ୟ ଆରାଧ୍ୟ ହେଲେ ବି ଅନ୍ୟସବୁ ହିନ୍ଦୁ ଦେବାଦେବୀଙ୍କୁ ବାଥୁଡ଼ି ପୂଜା କରେ । ତା'ଛଡ଼ା ପ୍ରତି ବାଥୁଡ଼ି ଗ୍ରାମରେ ଗ୍ରାମଦେବତୀ, ବାସୁକୀ, ବୁଢିପାଟ, ସରପାଟ, କିଚେକେଶ୍ୱରୀ, ବଡ଼ା ଓ ହାତିନୀ, ବଣୁଆବେରୀ, କେନ୍ଦୁବାସୁକୀ ଆଦି ଦେବାଦେବୀ ପୂଜା ପାଆନ୍ତି । ଗ୍ରାମ୍ୟ ଦେହୁରୀ ପୂଜାର ଦାୟିତ୍ୱ ନେଇଥାଏ । ବାଥୁଡ଼ିମାନେ ଏତେ ଦେବଦେବୀଙ୍କୁ ପୂଜା କଲେ ହେଁ ଶିମିଳିପାଳସ୍ଥିତ ଅଠର ଦେଉଳ ବାଥୁଡ଼ିଙ୍କର ପବିତ୍ର ତୀର୍ଥଶାଳା । ଶୂନ୍ୟ ଆଦିଗୁପ୍ତ ପୁରାଣ ଅନୁଯାୟୀ ବଡ଼ାମ ଶୂନ୍ୟପୁରୁଷ ହୋଇଥିବାରୁ ଏକଦା ତପସ୍ୟା କରିବାକୁ ଶିମିଳିପାଳ ଅଠର ଦେଉଳକୁ ଯାଇଥିଲେ । ଏହି ଦୃଷ୍ଟିରୁ ତାହା ବାଥୁଡ଼ିମାନଙ୍କର ଆଦିସ୍ଥାନ । ତେଣୁ ବାଥୁଡ଼ି ସଂପ୍ରଦାୟ ବଡ଼ାମଙ୍କୁ ଆରାଧନା କଲାବେଳେ ମନ୍ତ୍ର ଉଚ୍ଚାରଣ କରନ୍ତି –

ଓଁ...ହ୍ରିଁ, କ୍ଲିଂ, ଶ୍ଲିଂ ଆଦ୍ୟସ୍ଥାନ ଶିମିଳିପାଳ
ଯମୁନା ବାରଦଣ୍ଡା, ବାରଶ ପର୍ବତ, ତେରଶ ଖୋଲ
ତହିଁ ମଧ୍ୟେ ବିଜେ କରିଛ ଶ୍ରୀବଡ଼ାମ ମହାପ୍ରଭୁ ।
ଝାଡ଼ ଖଣ୍ଡେ ବଡ଼ ଠାକୁର
ମହାପ୍ରଭୁଙ୍କ ଚରଣେ ଶରଣ ।

ବାଥୁଡ଼ିଙ୍କର ଅଠର ଦେଉଳ ସଂସ୍କୃତିର ଏକ ପବିତ୍ର ମୁଖଶାଳା । ଆଧ୍ୟାତ୍ମିକ ଚେତନା, ଦାର୍ଶନିକ ଭାବଧାରା ସଂବଳିତ ଅଠର ଦେଉଳର ବିଭିନ୍ନ ଦେଉଳଗୁଡ଼ିକର ନାମ ହେଲା – ରାମରାଜ୍ୟ ଦେଉଳ, ଦୁଆରଶୁଣୀ, ଜାଗରନ୍ଧା, ବିଶେଇପାଣି, ଅସୁରିପାହାଡ଼ ଶିମୁଳିଆଗଡ଼, ବିଶିପୁର, ବୁଢୀପାଟ, ବାଉଳାଶୁଣୀ, ଚମ୍ପାଘାଟି (ଦୁଧିଆଣୀ) ମାନବ ଦେଉଳ, ଈଶ୍ୱର ଦେଉଳ, ଗଡୁମାଟୁ, ବିରାଟପାଟ, ସମୀବୃକ୍ଷ, ସାଆଣା–ସୁନ୍ଦରୀ, ମହାବୀର ଖଣ୍ଡା, ବିଷ୍ଣୁ ମନ୍ଦିର ।

'ବାଥୁଡ଼ି' ଗୋଟିଏ ସରଳ ଶାନ୍ତିପ୍ରିୟ ଜାତି । ଏମାନେ ଏକାଠି ରହିବାକୁ ଭଲ ପାଆନ୍ତି । ତେଣୁ ବାଥୁଡ଼ି ଗ୍ରାମଗୁଡ଼ିକରେ ଘରଗୁଡ଼ିକ ଲଗାଲଗି । ପୁରାତନ କାଳରେ ବାଥୁଡ଼ି ସଂପ୍ରଦାୟ ବଡ଼ ରକ୍ଷଣଶୀଳ ଥିଲେ । ସେମାନେ ଅନ୍ୟ ପରିବାର ବା ସଂପ୍ରଦାୟରେ ଜଳ ସ୍ପର୍ଶ କରୁ ନଥିଲେ । ନିଜର ପରିବାର ବା ସଂପର୍କୀୟଙ୍କ ମଧ୍ୟରେ ସେମାନଙ୍କର ବୈବାହିକ ସଂପର୍କ ଚଳେ

ନାହିଁ । ବାଥୁଡ଼ିମାନେ ଜାତି ନାଶ ଭୟରେ ନିଜ ଗ୍ରାମଠାରୁ ଦୂରକୁ ଯାଉ ନଥିଲେ । ଅନ୍ୟାୟକୁ ପ୍ରଶୟ ଦେବା, ନିଶା ଦ୍ରବ୍ୟ ଖାଇବା ବାଥୁଡ଼ି ସଂପ୍ରଦାୟରେ ମନା ଥିଲା । ଏବେ ବାଥୁଡ଼ି ସଂପ୍ରଦାୟ ଏହି ସାମାଜିକ ବନ୍ଧନରୁ ଶିଥିଳ ହୋଇଗଲେଣି ।

ଆଧୁନିକ ସଭ୍ୟତାର ଚାକଚକ୍ୟ ପ୍ରଭାବରେ ବାଥୁଡ଼ି ସମାଜରେ ବ୍ୟାପକ ପରିବର୍ତ୍ତନ ଘଟିଛି । ଖାଦ୍ୟ, ପୋଷାକ, ରହଣି, ଚଳଣି, ଭାଷା, ଚାଲିଚଳନରେ ବାଥୁଡ଼ିମାନଙ୍କର ସାମାଜିକ ମୌଳିକତା ଆଉ ବାରି ହେଉନାହିଁ । ବାଥୁଡ଼ି ଯୁବକ ଏବେ ଶିକ୍ଷା, ଦୀକ୍ଷା, ବ୍ୟବସାୟ, ବାଣିଜ୍ୟ, ଚାକିରି ଓ ରାଜନୀତିରେ ପାଦରଖି ବହୁ ଉନ୍ନତି କରିଛି । ଆଜି ଭାରତରେ ବସବାସ କରୁଥିବା ବିଭିନ୍ନ ସଂପ୍ରଦାୟ, ଜାତି, ପ୍ରଜାତି ଯେପରି ପାର୍ଥକ୍ୟ ମୌଳିକତାକୁ ତ୍ୟାଗ କରି ସର୍ବଭାରତୀୟତାକୁ ଆଦରି ନେଲେଣି 'ବାଥୁଡ଼ି' ସଂପ୍ରଦାୟ ସେଥିରୁ ବାଦ୍ ପଡ଼ିନାହାନ୍ତି । ଏସବୁ ସତ୍ତ୍ୱେ ଖାଦ୍ୟ, ପୋଷାକ ଓ ଅନ୍ୟାନ୍ୟ ଚଳଣିରେ ବାଥୁଡ଼ି ସଂପ୍ରଦାୟର ବ୍ୟାପକ ପରିବର୍ତ୍ତନ ଘଟିଲେ ଗ୍ରାମୀଣ ବାଥୁଡ଼ି ନିକଟରେ ଏବେ ବି ଅନେକ ପ୍ରାଚୀନ ପରମ୍ପରା ଓ ଚଳଣି ତଥାପି ଦେଖିବାକୁ ମିଳେ ।

ନୀଳାଚଳ ହାଉସ, ଆନନ୍ଦପୁର
କେନ୍ଦୁଝର – ୭୫୮୦୧୫

# ଓଁ ନମୋଃ ଶ୍ରୀଶ୍ରୀଜୀଉ ଜଗମୋହନ

**ଇଂ. ଫରିଦା ବେଗମ୍**

ଓଁ ନମୋଃ ଶ୍ରୀଶ୍ରୀଜୀଉ ଜଗମୋହନ
ତୁମେ ଦାରୁବ୍ରହ୍ମ ତୁମେ ବିଶ୍ୱବ୍ରହ୍ମ, ତୁମେ ହିଁ ଅଲେଖ ନିରଞ୍ଜନ
ତୁମେ ଜଗନ୍ନାଥ ତୁମେ ବିଶ୍ୱନାଥ, ତୁମେ ହିଁ ପତିତପାବନ ।

ଓଁ ନମୋଃ ଶ୍ରୀ ଶ୍ରୀକ୍ଷେତ୍ର କଳାବଦନ
ତୁମେ ଜଗା ତୁମେ ବଳିଆ, ତୁମେ ହିଁ ସୁଭଦ୍ରା–ସୁଦର୍ଶନ
ତୁମେ ପରା ତୁମେ ଅପରା, ତୁମେ ହିଁ ଯଜ୍ଞ–ଯଜମାନ ।

ଓଁ ନମୋଃ ଶ୍ରୀ ଶ୍ରୀ ଠାକୁର ଚକାନୟନ
ତୁମେ ମେରୁ ତୁମେ ସୁମେରୁ, ତୁମେ ହିଁ ଦିବ୍ୟନୟନ
ତୁମେ ଦାରୁ ତୁମେ ଚରୁ, ତୁମେ ହିଁ ବିଶ୍ୱ–ଆତ୍ମନ ।

ଓଁ ନମୋଃ ଶ୍ରୀ ଶ୍ରୀ ବିଷ୍ଣୁ ଭଗବାନ
ତୁମେ କୃଷ୍ଣ ତୁମେ ରାମ, ତୁମେ ହିଁ କଳ୍କୀ ଭଗବାନ
ତୁମେ କାଳ ତୁମେ ଅକାଳ, ତୁମେ ହିଁ ଚେତନା–ଚିନ୍ତନ ।

ଓଁ ନମୋଃ ଶ୍ରୀ ଶ୍ରୀ ଦଧିବାମନ
ତୁମେ ମାୟା ତୁମେ ମହା, ତୁମେ ହିଁ ଯୋଗୀ ବିଶ୍ୱମୋହନ
ତୁମେ ଭବ ତୁମେ ଭାବ, ତୁମେ ହିଁ ଶ୍ରୀରାଧାମୋହନ ।

ଓଁ ନମୋଃ ଶ୍ରୀ ଶ୍ରୀ ବିଶ୍ୱ ବ୍ରହ୍ମଜ୍ଞାନ
ତୁମେ ରଜ, ତୁମେ ତମ, ତୁମେ ହିଁ ସତ୍ତ୍ୱଦର୍ଶନ
ତୁମେ ଭକ୍ତି ତୁମେ ମୁକ୍ତି, ତୁମେ ହିଁ ଜୀବଜ୍ଞାନ ବିଜ୍ଞାନ ।

ଓଁ ନମୋଃ ଶ୍ରୀ ଶ୍ରୀ ତ୍ରିଭୁବନ ମହାପ୍ରାଣ
ତୁମେ ମନ୍ତ୍ର, ତୁମେ ଯନ୍ତ୍ର, ତୁମେ ହିଁ ମୋକ୍ଷ ନିର୍ବାଣ
ତୁମେ ଧର୍ମ ତୁମେ କର୍ମ, ତୁମେ ହିଁ ମହାଲକ୍ଷ୍ମୀ ପ୍ରାଣ ।

ଓଁ ନମୋଃ ଶ୍ରୀ ଶ୍ରୀ ଅନନ୍ତ ନାରାୟଣ
ତୁମେ ଆଦି ତୁମେ ଅନାଦି, ତୁମେ ହିଁ ସତ୍ୟନାରାୟଣ
ତୁମେ ଓଁକାର ତୁମେ ନିରାକାର, ତୁମେ ହିଁ ବେଦ ପୁରାଣ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ନବବର୍ଷ ଅନୁଚିନ୍ତା

**ଇଂଜିନିୟର ରଘୁନାଥ ପାତ୍ର**

ଅନନ୍ତ ସ୍ୱପ୍ନାଭିଳାଷ ଭରିଛି ମାଟିରେ
ସଞ୍ଚରଣ କରେ ମନେ ପ୍ରେରଣା, ପ୍ରତ୍ୟୟ
ଖୋଜିବାକୁ ହେବ ତାକୁ ଅନ୍ତର୍ଦୃଷ୍ଟି ଦେଇ
ଆତ୍ମା ପୁରୁଷ ଦେବତ୍ୱ, ଆନନ୍ଦ ନିଳୟ ।

ଅନ୍ତର୍ନିହିତ ସକଳ ଅନ୍ୱେଷଣେ ପ୍ରିୟା !
ଅନୁଶୀଳନ ପ୍ରତିଟି ଜୀବନର ଯାତ୍ରା
ବିବେକର ବିକାଶରେ ସଞ୍ଚରେ ଆନନ୍ଦ
ସଂକୁଚିତ କରେ ସଦା ବିଷୟର ମାତ୍ରା ।

ପହଞ୍ଚିବା କୁହ କେବେ ପ୍ରିୟ ଲକ୍ଷ୍ୟସ୍ଥଳେ
ସକଳ ନଦୀ ଯେଉଁଠି ମିଶନ୍ତି ସାଗରେ
ସକଳ ବୈଚିତ୍ର୍ୟ ଲୁଚେ ବିଶାଳ ହୃଦୟେ
ବିଷୟର ମୋହ ତୁଟେ ଅନନ୍ତ ପ୍ରେମରେ ।

ସକଳ ତମିସ୍ରା ଭେଦି ଆଲୋକ ସଂଗମେ
ଶୁଭଙ୍କରୀ ସ୍ୱର କେତେ ହେବ ଉତ୍ତୋଳନ
ମାୟା ମରୀଚିକା ଦୂରେ ଯିବ ଅପସରି
ଅନ୍ତ ହେବ ଅସୂୟାର ଅନଳ ବର୍ଷଣ ।

ଶେଷ ହେଉ ବିଷୟର ଅନନ୍ତ ପିପାସା
ନିରସ ବିବର୍ଣ୍ଣ ଜୀବନର ଅଭିନୟ
ଦୂରନ୍ତ ଆଶା ପ୍ରତୀକ୍ଷା ମିଳନ ବିଚ୍ଛେଦ
ନବବର୍ଷ ପ୍ରଭାତରେ ହେଉ ପ୍ରିୟା ଲୟ ।

ପ୍ରତାରଣା ଅବିଶ୍ୱାସ ବିକଳ ପ୍ରୟାସ
ଦୁଃଖ ଦୈନ୍ୟ ଯାତନାର ହେଉ ଅବସାନ
ଶେଷ ହେଉ ଅବାଞ୍ଛିତ ମହାକାଳ ଲୀଳା
ମଙ୍ଗଳ ଆରତି ବାଦ୍ୟ ଶୁଭୁ ଘନ ଘନ ।

ଶାନ୍ତି ମୈତ୍ରୀ ବିଶ୍ୱାସରେ ହସିଉଠୁ ଧରା
ଆରତି ଓ ଅର୍ଚ୍ଚନାର ଶୁଭୁ ମହାମନ୍ତ୍ର
ଝଂକୃତ ହେଉ ଆନନ୍ଦ ପ୍ରଣବ ହୃଦୟେ
ନବ ରବି ଜାଗରଣେ ହେଉ ପୁଲକିତ ।

ପୁରାତନକୁ ଆନନ୍ଦେ ଦେଉଛୁ ବିଦାୟ
ନୂତନର ଆଗମନେ ଉତ୍‌ଫୁଲ୍ଲିତ ସର୍ବେ
ନୀଳାଦ୍ରିନାଥ ମଙ୍ଗଳ କରନ୍ତୁ ସବୁରି
ନବବର୍ଷ ଆଗମନେ କବି ରଘୁ ଭାବେ ।

ବୃନ୍ଦାବନ ଧାମ, ଲୋକନାଥ ରୋଡ୍
(ପାଟଣା ହାଟ ସାହି ଛକ)
ପୁରୀ–୭୫୨୦୦୧